
ଦୁର୍ଗେ ସ୍ମୃତା ହରସି ଭୀତିମଶେଷଜନ୍ତୋଃ
ସ୍ୱସ୍ଥୈଃ ସ୍ମୃତା ମତିମତୀବ ଶୁଭାଂ ଦଦାସି ।।
ଦାରିଦ୍ର୍ୟଦୁଃଖଭୟହାରିଣୀ କା ତ୍ୱଦନ୍ୟା
ସର୍ବୋପକାରକରଣାୟ ସଦାଦ୍ରଚିରା ।।
(ଦେବୀ ମହାତ୍ମ୍ୟ)

# ଉତ୍କଳ ପ୍ରସଙ୍ଗ

ଆଶ୍ୱିନ ୧୯୦୭ ଶକାବ୍ଦ ୪୨ ଶ ବର୍ଷ ୩ୟ ସଂଖ୍ୟା ଅକ୍ଟୋବର ୧୯୮୫




ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ୧୦.୦୦

ପ୍ରତି ଖଣ୍ଡ : ୧.୦୦

ମୁଦ୍ରଣ :
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ


**ଓଡ଼ିଶା ସରକାରଙ୍କ** ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେହିସବୁ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

**'ଉତ୍କଳ ପ୍ରସଙ୍ଗ'** ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ଉତ୍କଳପ୍ରସଙ୍ଗ

## ସୂଚୀପତ୍ର

# ମୋ ଦୃଷ୍ଟିରେ ....

ଶରତ ଆସିଛି । ଆକାଶ ନିର୍ମଳ । ପୃଥିବୀ ସବୁଜାଭରା । ଠାଏଁ ଠାଏଁ ପଡ଼ିଛି କାଶତଣ୍ଡୀର ଶୁଭ୍ରଛିଟ । ବନାନ୍ତୀ ସୌନ୍ଦର୍ଯ୍ୟମୟୀ । ତଟିନୀ ଶାନ୍ତିମୟୀ । ସରସୀ ଶୋଭମୟୀ । ଶରତ୍ ଜ୍ୟୋତ୍ସ୍ନାରେ ସତେ ଯେପରି ସ୍ନାତ, ଧୌତ ଓ ପ୍ଲାବିତ ।

ପ୍ରକୃତିର ଅପୂର୍ବ ପରିବେଶକୁ ସ୍ୱାଗତ ଜଣାଇବା ପାଇଁ ଓହ୍ଲେଇ ଆସିଛି ଦଶହରା, ମାଆ ଦୁର୍ଗାଙ୍କୁ ସାଥିରେ ନେଇ । ଆମକୁ ସେ ଆଶୀର୍ବାଦ କରିବେ । ଆମର ତମୋଗୁଣ ଓ ରଜୋଗୁଣକୁ ପ୍ରଶମିତ କରି ସତ୍ତ୍ୱଗୁଣକୁ ଅଭିବୃଦ୍ଧି କରାଇବାରେ ସାହାଯ୍ୟ କରିବେ । ମଙ୍ଗଳମୟୀ ମାଆ ପାଇଁ ପ୍ରତିଟି ସନ୍ତାନ କଲ୍ୟାଣୀୟ, ସ୍ନେହାସ୍ପଦ ।

ଏହି ଅବସରରେ "ଉତ୍କଳ ପ୍ରସଙ୍ଗ" ତାର ପ୍ରିୟ ପାଠକ ପାଠିକାଙ୍କୁ ଉପହାର ଦେଉଛି ତାର ଏଇ ପୂଜା ବିଶେଷାଙ୍କ ସଂଖ୍ୟାଟିକୁ । ଏଥିରେ ଦଶହରା ପର୍ବ ଓ ଶକ୍ତି ଉପାସନା ଉପରେ କେତୋଟି ନୈବେଦ୍ୟ ଦେଉଛି ସେଇ ଶକ୍ତିମୟୀ ମାଆଙ୍କର ଚରଣ କମଳରେ ।

ଆମ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଜନ୍ମଜୟନ୍ତୀ ଦେଶସାରା ପାଳିତ ହୋଇ ଯାଇଛି । ତାଙ୍କର ପୁଣ୍ୟ ସ୍ମୃତିକୁ ସାଇତି ରଖିବା ପାଇଁ 'ଉତ୍କଳ ପ୍ରସଙ୍ଗ" ତାର କ୍ଷୀଣ ଉଦ୍ୟମ କରିଛି ।

ବିଗତ ଶହେ ବର୍ଷ ଧରି ଜାତୀୟ ବିପ୍ଳବ ଜରିଆରେ ଦେଶକୁ ପରାଧୀନତାର କଠୋର ବେଡ଼ି ବନ୍ଧନରୁ ମୁକ୍ତ କରାଯାଇଛି । ଏଥିପାଇଁ କେତେ ଅମୂଲ୍ୟ ତ୍ୟାଗ ସ୍ୱୀକାର କରାଯାଇଛି । ଦେଶର ଶ୍ରେଷ୍ଠ ଜନନାୟକମାନେ ନିଜକୁ ଆତ୍ମବଳି ଦେଇଛନ୍ତି । ଦାରୁଣ, ଦୁଃଖ, ନିର୍ଯ୍ୟାତନା ଓ ପରାଧୀନତାର ଅନ୍ଧକାରମୟ ଯୁଗ ଭିତରୁ ଯେଉଁ ଜାତୀୟ ଅନୁଷ୍ଠାନ ଜନ୍ମ ନେଇ ଦେଶକୁ ମୁକ୍ତି ଓ ପ୍ରଗତି ପଥରେ ଆଗେଇ ନେଇଛି ସେହି କଂଗ୍ରେସର ଶତବାର୍ଷିକୀ ଆଜି ଦେଶସାରା ପାଳିତ ହେଉଛି । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କର 'ଶତାବ୍ଦୀର ସାଧନା' ନିବନ୍ଧରେ ତାହାର ସମ୍ୟକ ଚିତ୍ର ଫୁଟେଇଛନ୍ତି । ସେଇ ନିବନ୍ଧଟିକୁ "ଉତ୍କଳ ପ୍ରସଙ୍ଗ" ତାର ପାଠକ ପାଠିକାଙ୍କୁ ଅର୍ପଣ କରୁଛି ।

ରାଜ୍ୟ ସରକାରଙ୍କ ପ୍ରଗତିର କେତେକ ପର୍ଯ୍ୟାୟ ଏଇ ସଂଖ୍ୟାଟିରେ ସନ୍ନିବେଶିତ କରାଯାଇଅଛି ।



# ଶତାବ୍ଦୀର ସାଧନା

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଆମର ଏଇ ବିଶାଳ ଦେଶ ଭାରତବର୍ଷ । ଏହ ବିରାଟ ଜାତି ନିର୍ବୀର୍ଯ୍ୟ ହୋଇ ରହିଲା ଶହ ଶହ ବର୍ଷ ଧରି ପରାଧୀନତାର ଅନ୍ଧକାର ଭିତରେ । ଏ ବିଶାଳ ଭାରତବର୍ଷକୁ ଏକ କ୍ଷୁଦ୍ର ବ୍ରିଟିଶ ଜାତି ଯେ ଏତେକାଳ ଶାସନ କରୁଥିଲା, ତାହା ଆମ ଇତିହାସର ଏକ ଲଜ୍ୟାଜନକ ଅଧ୍ୟାୟ ହୋଇ ରହିବ । ସମଗ୍ର ଦେଶ ସୁପ୍ତ । ଅନ୍ଧକାରରେ ଘୋର; କେଉଁଠି କିଛି ଆଶାର ଆଲୋକ ଦେଖାଯାଉ ନ ଥିଲା ।

ଠିକ୍ ଏତିକିବେଳେ ୧୮୮୫ ମସିହାରେ ଏକାଠି ହେଲେ ଅଳ୍ପ କେତେ ଜଣ ସ୍ୱାଧୀନଚେତା ବ୍ୟକ୍ତି ମହାନଗରୀ ବମ୍ବେର ଏକ କ୍ଷୁଦ୍ର କୋଠରୀ ଭିତରେ । ସେତେବେଳେ ବ୍ରିଟିଶ୍ ଶାସନ ଭାରତର ଲୋକଙ୍କ ପ୍ରତି ଯେଉଁ ଅନ୍ୟାୟ ଅବିଚାର କରୁଥିଲା, ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଥିଲା ସେତେବେଳର ଘୋଷଣା । ଏଇଥିରୁହିଁ ହେଲା କଂଗ୍ରେସର ଉନ୍ମେଷ । କଂସର ବନ୍ଦୀଶାଳାରେ କୃଷ୍ଣଙ୍କର ଜନ୍ମ ପରି ପରାଧୀନତାର ଘୋର ଅନ୍ଧକାର ଭିତରୁ କଂଗ୍ରେସ ଜନ୍ମ ନେଲା । ସେତେବେଳେ ସ୍ୱାଧୀନତା ସେମାନଙ୍କର ଲକ୍ଷ୍ୟ ନଥିଲା । କେବଳ ଶାସନ କ୍ଷେତ୍ରରେ ହେଉଥିବା ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବା ଥିଲା, ସେମାନଙ୍କର ଲକ୍ଷ୍ୟ ।

ଭାରତର ସବୁଠାରୁ ପବିତ୍ର ଓ ପ୍ରସିଦ୍ଧ ନଦୀ ଗଙ୍ଗା । ଗୋଟିଏ କ୍ଷୁଦ୍ର ପରିସର ମଧ୍ୟରେ ତା'ର ଜନ୍ମ, ଯାହାର ନାମ ଗଙ୍ଗୋତ୍ରୀ । ପ୍ରଥମେ ଏକ କ୍ଷୁଦ୍ର ଧାର ହୋଇ ପରେ ଏହା ବିଶାଳ ସ୍ରୋତସ୍ୱିନୀରେ ପରିଣତ ହୋଇଛି । ସେହି ଗଙ୍ଗା ସମଗ୍ର ଉତ୍ତର ଭାରତକୁ ପବିତ୍ରିତ କରିଛି । ସୁଜଳା ସୁଫଳା ଶସ୍ୟ ଶ୍ୟାମଳା କରିଛି । ସେହିପରି ହେଉଛି କଂଗ୍ରେସର ଇତିହାସ । ଦିନେ ସେହି ଛୋଟିଆ କକ୍ଷ ଭିତରେ ଯେଉଁ ଉନ୍ମେଷର ସୃଷ୍ଟି ହୋଇଥିଲା, ତାହା ପରେ ପରିଣତ ହେଲା ଏକ ମହାନ ଜାତୀୟ ସ୍ରୋତରେ । ଆଜି ସମଗ୍ର ଭାରତବର୍ଷରେ ଏପରି କୌଣସି ଗାଁ ଗଣ୍ଡା ନାହିଁ ଯାହାକୁ କଂଗ୍ରେସ ଛୁଇଁ ନାହିଁ । ଯୁଗେ ଯୁଗେ କଂଗ୍ରେସ ହୋଇଛି ଭାରତବର୍ଷର ଜନସାଧାରଣଙ୍କ ଆତ୍ମ ନିୟନ୍ତ୍ରଣର ଅସ୍ତ୍ର । କଂଗ୍ରେସ ପଛରେ ଅଛି ଏକ ଶତାବ୍ଦୀର ସେବା, ଅଛି ପୁଣ୍ୟ, ଆତ୍ମତ୍ୟାଗ ଏବଂ ବଳିଦାନ । ତାହା ଭାରତବର୍ଷ କାହିଁକି ପୃଥିବୀର କୌଣସି ଅନୁଷ୍ଠାନର ନାହିଁ । ଯେଉଁଠି ତ୍ୟାଗ, ଆତ୍ମଦାନ, ବଳିଦାନ ଅଛି ସେଠି ମୃତ୍ୟୁ ନାହିଁ; ମୃତ୍ୟୁର ଭୟ ବି ନାହିଁ । କେବଳ ଆଜି ନୁହେଁ, ଆଗାମୀ ହଜାର ହଜାର ବର୍ଷ ଧରି କଂଗ୍ରେସ ଭାରତବର୍ଷରେ ରହିବ ।

କଂଗ୍ରେସ ବିଂଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ ଆସି ପହଞ୍ଚିବା ବେଳେ ଏକ ଆଗ୍ନେୟ ବିପ୍ଳବର ଧ୍ୱନି ଦେଇଛି । ମହାତ୍ମା ଗାନ୍ଧୀଙ୍କର ଆହ୍ୱାନର ବହୁ ପୂର୍ବରୁ ବଙ୍ଗଭଙ୍ଗ ଆନ୍ଦୋଳନ ହୋଇଛି ଏବଂ ବହୁ ଲୋକ ତହିଁରେ ଶହୀଦ ହୋଇ ଯାଇଛନ୍ତି । କଂଗ୍ରେସ ନରମ ପନ୍ଥା ତ୍ୟାଗ କରିଚି । କଂଗ୍ରେସର ନେତୃତ୍ୱ ନେଇ ବାଳଗଙ୍ଗାଧର ତିଳକ "ସ୍ୱରାଜ ଆମର ଜନ୍ମଗତ ଅଧିକାର" ବୋଲି କହିଛନ୍ତି । ଏହି ସ୍ୱରାଜ ଲାଭ ପାଇଁ ସେ ଚରମ ପନ୍ଥାର ଆଶ୍ରୟ ନେଇଥିଲେ । କଂଗ୍ରେସରେ ଥିବା ନରମ ପନ୍ଥୀମାନେ ଏହି ଆନ୍ଦୋଳନକୁ ଶାସନ ସଂସ୍କାର ଗଣ୍ଡିରେ ସୀମିତ ରଖି ଏହି ଶାସନରୁ କିଛି ଫାଇଦା ହାସଲ କରିବା ପାଇଁ ଚାହୁଁଥିଲେ । କିନ୍ତୁ ସେତେବେଳେ ସୋଭିଏତ୍ ୟୁନିଅନରେ ଯେଉଁ ଆଗ୍ନେୟ ବିପ୍ଳବ ହେଲା ତିଳକ ତାକୁ ସ୍ୱାଗତ କଲେ ଏବଂ ଦେଶରେ ସ୍ୱରାଜ ହାସଲ ପାଇଁ ଭାରତବାସୀଙ୍କୁ ବିପ୍ଳବ ପଥରେ ଆଗେଇ ଯିବା ଲାଗି ଆହ୍ୱାନ କଲେ । ବ୍ରିଟିଶ ରାଜଶକ୍ତି କିନ୍ତୁ ଅତିଶୟ ଦୁର୍ଦ୍ଧର୍ଷ ଥିଲା । ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟ ପ୍ରାଣବଳି ଦାନ କରି ଆମ ଦେଶର ବହୁଲୋକ ଶହୀଦ ହୋଇଗଲେ ବାଘାଯତୀନଙ୍କଠାରୁ ଭଗତ ସିଂଙ୍କ ପର୍ଯ୍ୟନ୍ତ । ମାତ୍ର ଦେଶରୁ ଗୋରା ଶାସକ ହଟିଯିବାର ସମ୍ଭାବନା ଦେଖାଗଲା ନାହିଁ । ବ୍ରିଟିଶ୍ ସାମ୍ରାଜ୍ୟବାଦ ଥିଲା ପୃଥିବୀର ସବୁଠାରୁ ସଶକ୍ତ, ଶକ୍ତିଶାଳୀ ସାମ୍ରାଜ୍ୟବାଦ ।

## ଗାନ୍ଧୀଜୀଙ୍କ ଅହିଂସା ଅସ୍ତ୍ର

ଠିକ୍ ଏତିକିବେଳେ ଆବିର୍ଭାବ ହେଲା ମହାତ୍ମାଗାନ୍ଧୀଙ୍କର । ଦକ୍ଷିଣ ଆଫ୍ରିକାରେ ପ୍ରଥମେ ସେ ସତ୍ୟାଗ୍ରହର ବ୍ୟାପକ ପରୀକ୍ଷା କରିଥିଲେ । ମନୁଷ୍ୟର ମନୁଷ୍ୟ ଉପରେ ଅତ୍ୟାଚାର ବା ବର୍ଣ୍ଣବିଦ୍ୱେଷ ସହିତ ଆପୋଷର ପ୍ରଶ୍ନ ନାହିଁ । ଏହା ଏକ ଆପୋଷହୀନ ସଂଗ୍ରାମ । ଏ ସଂଗ୍ରାମର ପନ୍ଥା ଭିନ୍ନ । ତାହା ହେଉଛି ଅହିଂସାର ପନ୍ଥା ।

ଦକ୍ଷିଣ ଆଫ୍ରିକାରୁ ଭାରତବର୍ଷକୁ ଫେରି ମହାତ୍ମା ଗାନ୍ଧୀ ଏହାର ପରୀକ୍ଷା କଲେ ବିହାରର ଚମ୍ପାରଣ ଜିଲ୍ଲାରେ । ତା'ପରେ ସମଗ୍ର ଭାରତକୁ ଅସହଯୋଗ ଆନ୍ଦୋଳନର ଡାକରା ଦେଲେ । କଂଗ୍ରେସକୁ ଏକ ନୂଆ ଜୀବନରେ ଉଦ୍‌ବନ୍ଧ କଲେ । ଶହ ଶହ, ହଜାର ହଜାର ଛାତ୍ର, ଯୁବକ ଓ ସାଧାରଣ ଲୋକ ସ୍କୁଲ କଲେଜ ଛାଡ଼ି, ଓକିଲାତି ଛାଡ଼ି, ଅନ୍ୟ ସରକାରୀ ଚାକିରି ତଥା ବୃତ୍ତି ବ୍ୟବସାୟ ଛାଡ଼ି ଏହି ମହାନ୍ ଯଜ୍ଞରେ ନିଜକୁ ଝାସ ଦେଲେ । ଭାରତବର୍ଷର କୋଣେ କୋଣେ ଗ୍ରାମ ଓ ସହରରେ, ପୁରପଲ୍ଲୀରେ ଗାନ୍ଧୀଜୀଙ୍କ ବାଣୀ ପ୍ରତିଧ୍ୱନିତ ହେଲା । ସେ ଦେଶର ଅବସ୍ଥାକୁ ଜନସାଧାରଣଙ୍କୁ ବୁଝାଇବା ପାଇଁ ଯେଉଁ ଭାଷା ସେତେବେଳେ ବ୍ୟବହାର କଲେ ତାହାକୁ କୌଣସି ଭାରତୀୟ ରାଜନୀତିଜ୍ଞ ଆଗରୁ ବ୍ୟବହାର କରିନଥିଲେ । ସେ କହିଲେ "ଇସ୍ ସୁଲ୍‌ତନତ ମେଁ ସଇତନିୟତ୍ ଛାୟୀ ହୈ" । ଏହି ଦେଶରେ ସଇତାନର ଶାସନ ଚାଲିଛି । ଏହି ସଇତାନି ଶାସନକୁ ନ ଡରିବା ପାଇଁ ଭାରତବାସୀଙ୍କୁ ସେ ଅଭୟର ମନ୍ତ୍ର ଦେଲେ । ବର୍ଷକ ଭିତରେ ବ୍ରିଟିଶ ରାଜଶକ୍ତିକୁ ହଟାଇ ଦେବା–ଏଭଳି ଭାଷା କେହି ବ୍ୟବହାର କରି ନଥିଲେ । ଅବଶ୍ୟ ବର୍ଷକ ଭିତରେ ବ୍ରିଟିଶ୍ ଶକ୍ତି ହଟିଲା ନାହିଁ ; କିନ୍ତୁ ମହାତ୍ମାଗାନ୍ଧୀ ଯେଉଁ ପନ୍ଥା ଦେଖାଇଲେ, ଭାରତବର୍ଷର ଜନସାଧାରଣ ତହିଁରେ ଉଦ୍‌ବୁଦ୍ଧ ହେଲେ । କଂଗ୍ରେସ ବିପ୍ଳବରେ ସାମିଲ ହେଲେ ଚାଷୀ, ଶ୍ରମିକ, ଯୁବକ, ଛାତ୍ର ଓ ଗାଁ ଗଣ୍ଡାର ସବୁଠାରୁ ଅତି ଗରିବ ଲୋକ । ଭାରତବର୍ଷର ଚତୁର୍ଦ୍ଦିଗରେ ଏ ବିପ୍ଳବର ବନ୍ୟା ମାଡ଼ିଗଲା ।

କାହିଁକି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ, ସ୍ୱାଧୀନତାର ମୂଲ୍ୟ କ'ଣ, ସ୍ୱାଧୀନତାର ଅର୍ଥ କ'ଣ, ଏହା ଭାରତବର୍ଷର ଅଜ୍ଞ, ମୂକ ଜନସାଧାରଣଙ୍କୁ ଦେଖି ମହାତ୍ମା ଗାନ୍ଧୀ ବୁଝାଇଲେ । ଯେଉଁମାନେ ଭୟରେ ଜଡ଼ସଡ଼ ହୋଇ ରହିଥିଲେ, ସେମାନଙ୍କୁ ସେ ବୁଝାଇଲେ ଯେ ଭୟ ଦୂର ନହେଲେ ସେମାନଙ୍କ ଅବସ୍ଥା ଆହୁରି ଖରାପ ହୋଇଯିବ ; ମାତ୍ର ଦେଶ ସ୍ୱାଧୀନ ହେଲେ ଏ ସ୍ଥିତି ବଦଳି ଯିବ । ଦେଶର ସବୁଠାରୁ ଯେ ଗରିବ ଲୋକ, ସେ ସ୍ୱାଧୀନତା ଉପଭୋଗ କରିବ । ସ୍ୱରାଜ୍ୟ ହେଉଛି ଗରିବ ଲୋକଙ୍କ ପାଇଁ ।

ଦ୍ୱିତୀୟ କଥା ସେ କହିଲେ ଏ ଭାରତବର୍ଷ ଏକ ମହାନ୍ ଦେଶ । ଏ ଦେଶର କୌଣସି କୋଣରେ ଲୋକଙ୍କ ଉପରେ ଯଦି ଅତ୍ୟାଚାର ହେଲା, ସାରା ଭାରତବର୍ଷ ତା'ର ପ୍ରତିବାଦ କରିବା ଦରକାର । ଜାଲିଓ୍ୱାନାବାଗ୍‌ରେ ବ୍ରିଟିଶ ଅତ୍ୟାଚାରୀ ଶାସନ ଶହ ଶହ ଲୋକଙ୍କୁ ଗୁଳିରେ ନିହତ କଲା । ଅତି ଅସହାୟ ଭାବରେ ଗୋଟିଏ ମେଳା ଭିତରେ ଏକ ନିରୀହ ଜନତା ଟଳି ପଡ଼ିଲା । ତା'ର ପ୍ରତିବାଦ କରି ଗାନ୍ଧୀଜୀ କହିଲେ, ଆଉ ବ୍ରିଟିଶ ରାଜଶକ୍ତି ସହିତ ସାଲିସ୍‌ର ପ୍ରଶ୍ନ ଉଠୁ ନାହିଁ । ତାକୁ କୌଣସିମତେ ଦେଶରୁ ହଟାଇବାକୁ ହେବ । ପଞ୍ଜାବର ଅତ୍ୟାଚାର କେବଳ ପଞ୍ଜାବର ପ୍ରଶ୍ନ ନୁହେଁ, ତାହା ସାରା ଭାରତବର୍ଷର ପ୍ରଶ୍ନ । ପଞ୍ଜାବର ଜନସାଧାରଣଙ୍କ ପ୍ରତି ଯେଉଁ ଅପମାନ କରାଗଲା ସେ ଅପମାନ ସାରା ଭାରତବର୍ଷର ଜନସାଧାରଣଙ୍କ ପ୍ରତି ଅପମାନ । ବ୍ରିଟିଶ ଶାସନ କାଳରେ ମହାତ୍ମା ଗାନ୍ଧୀ ପ୍ରଥମେ ଏକ ଜାତୀୟ ଏକତାର ମନ୍ତ୍ର ଦେଲେ । କେବଳ ଜାଲିଓ୍ୱାନ୍‌ବାଗ୍ ପାଇଁ ସାତ ଦିନ ଧରି ସାରା ଭାରତବର୍ଷରେ ଆରମ୍ଭ ହେଲା ଏକ ନୂତନ ସଂଗ୍ରାମ । ବ୍ରିଟିଶ୍ ଶକ୍ତିକୁ ଏ ଦେଶରୁ ହଟାଇବା ପାଇଁ ଏବଂ ଅପମାନର ପ୍ରତିଶୋଧ ନେବାକୁ ପଡ଼ିବ । ହେବ ବିହାରରେ ଯେତେବେଳେ ଅଭୂତପୂର୍ବ ଭୂମିକମ୍ପ ହେଲା । ସେହିଠାରେ ଗାନ୍ଧୀଜୀ ଦେଶକୁ ଆଉଥରେ ଆହ୍ୱାନ କଲେ । ଏ ଭୂମିକମ୍ପରେ ବିହାରର ଯେଉଁମାନେ କ୍ଷତିଗ୍ରସ୍ତ ହୋଇଛନ୍ତି, ସେମାନଙ୍କ ପ୍ରତି ସାରା ଭାରତବର୍ଷର ଅନୁକମ୍ପା ହେବା ଉଚିତ । ସେତେବେଳେ ଭାରତର କୌଣସି କୋଣରେ ଯଦି କୌଣସି ଘଟଣା ଘଟୁଥିଲା, ମହାତ୍ମା ଗାନ୍ଧୀ ସାରା ଭାରତବର୍ଷକୁ ଏକତ୍ରିତ କରି ତାର ମୁକାବିଲା କରିବାପାଇଁ ପ୍ରସ୍ତୁତ ହେଉଥିଲେ । ଏହାହିଁ ହେଉଛି ଭାରତବର୍ଷର ଜାତୀୟତା । ପୂର୍ବରୁ ଅବଶ୍ୟ ସଂସ୍କୃତି କ୍ଷେତ୍ରରେ ଆମର ଏକ ସଂହତି ଥିଲା ।

ଓଁ ଗଙ୍ଗେଚ ଯମୁନେଶ୍ଚୈବ ଗୋଦାବରୀ ସରସ୍ୱତୀ,
ନର୍ମଦେ ସିନ୍ଧୁକାବେରୀ ଜଲେଽସ୍ମିନ୍ ସନ୍ନିଧି କୁରୁ ।

ଏହି ଶ୍ଲୋକରେ ଭାରତବର୍ଷର ସମସ୍ତ ନଦୀର ଆବାହନ କରାଯାଇଛି । ଏ ସମସ୍ତ ନଦୀକୁ ନେଇ ଭାରତବର୍ଷ ଗଠିତ । ଏହାହିଁ ହେଉଛି ଆମ ଭାରତବର୍ଷର ସଂସ୍କୃତି କିନ୍ତୁ ରାଜନୈତିକ କ୍ଷେତ୍ରରେ କେବେହେଲେ ଜାତୀୟ ଏକତା ବା ଜାତୀୟତା ପ୍ରତିଷ୍ଠିତ ହୋଇ ନ ଥିଲା । ପ୍ରଥମେ ମହାତ୍ମା ଗାନ୍ଧୀ କଂଗ୍ରେସର ନେତୃତ୍ୱ ନେଇ ଭାରତବର୍ଷରେ ରାଜନୈତିକ ଜାତୀୟ ଏକତା ପ୍ରତିଷ୍ଠା କଲେ । ଧର୍ମ, ସଂପ୍ରଦାୟ, ଜାତି, ବର୍ଣ୍ଣ, ପ୍ରାଦେଶିକତାର ସଂକୀର୍ଣ୍ଣତାକୁ ଭୁଲି ନ୍ୟାୟୋଚିତ ଅଧିକାର ପାଇଁ ସମଗ୍ର ଦେଶରେ ଜନସାଧାରଣ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ । ଅବଶ୍ୟ ଭାଷା ସୂତ୍ରରେ ପ୍ରଦେଶ ଗଠନର ନ୍ୟାୟୋଚିତ ଦାବୀକୁ ଗାନ୍ଧୀଜୀ ଉପେକ୍ଷା କରିନଥିଲେ । ରାଜନୈତିକ କ୍ଷେତ୍ରରେ ବିହାର-ଓଡ଼ିଶା ଗୋଟିଏ ରାଜ୍ୟ ହୋଇପାରେ ବା ବଙ୍ଗଳା-ବିହାର-ଓଡ଼ିଶା ଗୋଟିଏ ପ୍ରଦେଶ ହୋଇପାରେ । କିନ୍ତୁ କଂଗ୍ରେସର ପ୍ରଦେଶ ଅଲଗା । ଯେପରିକି ଉତ୍କଳ ପ୍ରଦେଶ କଂଗ୍ରେସ କମିଟି । ସେହିପରି କର୍ଣ୍ଣାଟକ ଏବଂ ଆନ୍ଧ୍ରପ୍ରଦେଶ କମିଟି, ଯଦିଓ କର୍ଣ୍ଣାଟକ ଓ ଆନ୍ଧ୍ର ଅଲଗା ପ୍ରଦେଶ ନ ଥିଲା । ଭବିଷ୍ୟତରେ ଭାଷା ଭିତ୍ତିରେ ପ୍ରଦେଶ ଗଠନ କଂଗ୍ରେସର ଉଦ୍ଦେଶ୍ୟ ଥିଲା ।

ବର୍ଣ୍ଣଗତ, ଧର୍ମଗତ ଓ ଜାତିଗତ ବ୍ୟବଧାନର ପାଚେରୀ ଛିଡ଼ା କରାଇ, ଭାରତୀୟମାନଙ୍କୁ ପରସ୍ପର ବିରୁଦ୍ଧରେ ନିୟୋଜିତ କରାଇବା ବ୍ରିଟିଶ ଶାସନର ଲକ୍ଷ୍ୟଥିଲା । ବିଶେଷତଃ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ କନ୍ଦଳ ଲଗାଇ ରଖିବା ପାଇଁ ଇଂରେଜ ସରକାର ଆପ୍ରାଣ ଚେଷ୍ଟା କରୁଥିଲେ । ଏହି ହୀନ ଚକ୍ରାନ୍ତ ବିରୁଦ୍ଧରେ ଗାନ୍ଧୀଜୀ ଭାରତବାସୀଙ୍କୁ ବାରମ୍ବାର ସତର୍କ କରାଇଥିଲେ । ସେ କହିଥିଲେ ହିନ୍ଦୁ ହୁଅନ୍ତୁ, ମୁସଲମାନ ହୁଅନ୍ତୁ, ଶିଖ ହୁଅନ୍ତୁ ବା ପାର୍ଶୀ ହୁଅନ୍ତୁ ସମସ୍ତେ ହେଉଛନ୍ତି ଭାରତ ଜନନୀଙ୍କର ସନ୍ତାନ । ତେଣୁ ଗାନ୍ଧୀଜୀଙ୍କ ନେତୃତ୍ୱରେ ଯେଉଁ କଂଗ୍ରେସ ସଂଗଠନ କରାଗଲା, ସେଥିରେ ଜାତି, ଧର୍ମ, ବର୍ଣ୍ଣର ଭେଦ ରହିଲା ନାହିଁ ।

ଭାରତରେ ସର୍ବତ୍ର ତଥାକଥିତ ଅସବର୍ଣ୍ଣ ଲୋକଙ୍କୁ ଅସ୍ପୃଶ୍ୟ ବୋଲି ବିଚାର କରାଯାଉଥିଲା । ଏପରିକି କେତେକ ରାଜ୍ୟରେ

ଏମାନଙ୍କୁ ଅତ୍ୟନ୍ତ ଘୃଣିତ ଅବସ୍ଥାରେ ରଖାଯାଉଥିଲା । ମହାତ୍ମା ଗାନ୍ଧୀ ପ୍ରଥମେ ଏହାର ତୀବ୍ର ବିରୋଧ କଲେ । କେରଳରେ ସେ ଏକ କୁଟୀରରେ ରହୁଥିବା ସମୟରେ ବାହାରେ ଗୋଟିଏ ଛୋଟ ଘଣ୍ଟା ବହୁ ସମୟ ଧରି ବାଜୁଥିବାର ସେ ଶୁଣି ପାରିଲେ । ଜଣେ ସ୍ଥାନୀୟ ସହାୟକ କର୍ମୀଙ୍କୁ ପଚାରି ସେ ବୁଝିଲେ ଯେ ଜଣେ ଅସବର୍ଣ୍ଣ ଲୋକ ବେକରେ ଘଣ୍ଟି ଲଗାଇ ତାହା ବଜାଇ ଆସୁଛି । କୌଣସି ସବର୍ଣ୍ଣ ଉପରେ ତା'ର କାଳେ ଛାଇ ପଡ଼ିଯିବ ସେଥିପାଇଁ ସମସ୍ତଙ୍କୁ ସତର୍କ କରାଇବା ଉଦ୍ଦେଶ୍ୟରେ ସେ ବେକରେ ଘଣ୍ଟା ଝୁଲାଇ ଆସୁଛି । ମହାତ୍ମା ଗାନ୍ଧୀ ଏ କଥା ଶୁଣି ବିସ୍ମିତ ହେଲେ ଏବଂ ଆଉ ମୁହୂର୍ତ୍ତେ କେରଳରେ ରହିବେ ନାହିଁ ବୋଲି କହିଲେ । କେରଳର କର୍ମୀମାନେ ଏଥିରେ ବଡ଼ ବିବ୍ରତ ହୋଇପଡ଼ିଲେ । ଗାନ୍ଧୀଜୀ କହିଲେ, ଯଦି କେରଳର କର୍ମୀମାନେ କେରଳରୁ ଅସବର୍ଣ୍ଣ ଭେଦଭାବ ଦୂର କରିବା ପାଇଁ ରକ୍ତରେ ଶପଥ ନେବେ, ତା'ହେଲେ ସେ କେରଳରେ ରହିବେ । ଏଥିରେ କେରଳ କର୍ମୀମାନେ ବିଶେଷ ଲଜ୍ଜିତ ଏବଂ ଅନୁତପ୍ତ ହେଲେ । ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବକୁ କେରଳରୁ ଦୂର କରିବା ପାଇଁ ସେମାନେ ରକ୍ତର ଶପଥ ନେଲେ । ଖାଲି ସେତିକି ନୁହେଁ ପ୍ରସିଦ୍ଧ ଗୁରୁବାୟୁର କୃଷ୍ଣ ମନ୍ଦିରରେ ହରିଜନ ପ୍ରବେଶ କରିବା ପାଇଁ ମହାତ୍ମାଗାନ୍ଧୀ ଘୋଷଣା କଲେ । ଏଥିପାଇଁ ବୈପ୍ଳବିକ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନ ଭିତରୁ ଜନ୍ମ ହେଲା କେରଳ କଂଗ୍ରେସ ।

କେରଳ ପରି ମହାତ୍ମାଗାନ୍ଧୀ ଓଡ଼ିଶାକୁ ଆସି ଜଗନ୍ନାଥ ମନ୍ଦିରରେ ହରିଜନ ପ୍ରବେଶ କରାଇବା ପାଇଁ ଉଦ୍ୟମ କରିଥିଲେ । ଏଥିରେ ବିଫଳ ହେବାରୁ ସେ ନିଜେ ମନ୍ଦିର ଭିତରକୁ ଯାଇ ନ ଥିଲେ । ତାଙ୍କର ପତ୍ନୀ କସ୍ତୁରବା ମନ୍ଦିର ଭିତରକୁ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିବାରୁ ଡେଲାଙ୍ଗ ସର୍ବୋଦୟ ସମ୍ମିଳନୀରେ ଗାନ୍ଧୀଜୀ ଅନଶନ ଆରମ୍ଭ କରିଦେଲେ । କୌଣସି ସାଲିସ୍ ନ କରି ସେ ନିଜର ନୀତିରେ ଅଟଳ ରହୁଥିଲେ । ସେହିପରି ତାଙ୍କର ଚମ୍ପାରଣ ସତ୍ୟାଗ୍ରହ ; ରାଜେନ୍ଦ୍ର ପ୍ରସାଦ, ଜୟପ୍ରକାଶ ନାରାୟଣଙ୍କର ଶ୍ୱଶୁର ବ୍ରଜକିଶୋର ପ୍ରସାଦ ଏମାନେ ସମସ୍ତେ ସେତେବେଳର ନାମଜାଦା ଓକିଲ । ସେମାନେ ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ ; ମାତ୍ର ବର୍ବର ଜାତିଭେଦରେ ବିଶ୍ୱାସ କରୁଥିଲେ । ଏକଥା ମହାତ୍ମାଗାନ୍ଧୀ ଆଗରୁ ଜାଣିଥିଲେ । ଚଂପାରଣ ସତ୍ୟାଗ୍ରହ ସମୟରେ ଡକ୍ଟର ରାଜେନ୍ଦ୍ର ପ୍ରସାଦ, ବ୍ରଜ କିଶୋର ପ୍ରସାଦ ; ବିହାର କଲେଜର ଅଧ୍ୟାପକ ଆଚାର୍ଯ୍ୟ କୃପାଳିନୀ, ଏମାନେ ସମସ୍ତେ ଗାନ୍ଧୀଜୀଙ୍କ ଶିବିରରେ ଯୋଗ ଦେଇଥିଲେ । ମହାତ୍ମାଗାନ୍ଧୀ ସେମାନଙ୍କୁ କହିଲେ, ଏଠାରେ ଅଲଗା ରୋଷାଇ ଚଳିବ ନାହିଁ । ସାଧାରଣ ପଙ୍ଗତ ହେବ । ସେ ପଙ୍ଗତରେ ସମସ୍ତେ ବସିବେ । ସବର୍ଣ୍ଣ ଅସବର୍ଣ୍ଣ ସମସ୍ତେ ଏକାଠି ବସି ଖାଇବେ । ଏକଥା ବିଶେଷକରି ସେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓ ବ୍ରଜକିଶୋର ପ୍ରସାଦଙ୍କୁ ଲକ୍ଷ୍ୟ କରି କହିଲେ । ଯେଉଁମାନେ ଏ ପଙ୍ଗତରେ ନ ବସିବେ ସେମାନେ ସକାଳୁ ଶିବିର ଛାଡ଼ି ଚାଲିଯିବାକୁ ସେ ନିର୍ଦ୍ଦେଶ ଦେଲେ । ଏଥିରେ ବ୍ରଜ କିଶୋର ପ୍ରସାଦଙ୍କ ମନରେ ପରିବର୍ତ୍ତନ ଆସିଲା । ସେମାନେ ସିଦ୍ଧାନ୍ତ କରିନେଲେ— ହାଁ ଏ ହେଉଛି ମହାତ୍ମା ଗାନ୍ଧୀଙ୍କର ନିର୍ଦ୍ଦେଶ । ସେମାନଙ୍କୁ ପାଳନ କରିବାକୁ ହେବ । ଏହିପରି କଂଗ୍ରେସ ଜରିଆରେ ସବୁଠାରୁ ଉପରେ ଥିବା ଲୋକଙ୍କଠାରୁ ଆରମ୍ଭକରି ତଳେଥିବା ଲୋକଙ୍କ ପର୍ଯ୍ୟନ୍ତ କୋଟିକୋଟି ଲୋକଙ୍କର ଜୀବନ ଧାରା ପରିବର୍ତ୍ତନ କରି ଆସିଛନ୍ତି । ଇତିହାସରେ ଏପରି କୌଣସି ବ୍ୟକ୍ତିର ପଟାନ୍ତର ନାହିଁ, ଯେ ଏପରି ଭାବରେ ସମଗ୍ର ଦେଶରେ ଲୋକମାନଙ୍କର ଜୀବନଧାରାରେ ପରିବର୍ତ୍ତନ ଆଣିପାରିଛି ।

## ଭାରତ ଛାଡ଼ ଆନ୍ଦୋଳନର ପୃଷ୍ଠଭୂମି

ବିଭିନ୍ନ ସମୟରେ ଭାରତରେ ବିପ୍ଳବର ଡାକରା ଦିଆଯାଇଛି । ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ । ମଝିରେ ମଝିରେ ବିଭିନ୍ନ ପାର୍ଟିର ଉଦ୍ଭବ ହୋଇଛି । କମ୍ୟୁନିଷ୍ଟ ପାର୍ଟି, ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଭାରତୀୟ ସୋସାଲିଷ୍ଟ ପାର୍ଟିର କେତେକ ଭାବିଲେ ଯେ ଆଉ ଗାନ୍ଧୀଜୀଙ୍କ ଦ୍ୱାରା ସ୍ୱରାଜ ହେବ ନାହିଁ । ଆଉ କିଛି ନୂଆ ବିପ୍ଳବ କଥା ଚିନ୍ତା କରିବାକୁ ହେବ । କିନ୍ତୁ ୧୯୪୦ ମସିହାରେ ଗାନ୍ଧୀଜୀ ପୁଣି ଏକ ବିପ୍ଳବର ସୂତ୍ରପାତ କଲେ । ବ୍ୟକ୍ତିଗତ ସତ୍ୟାଗ୍ରହ ପରେ ସେ ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ କେବଳ କମ୍ୟୁନିଷ୍ଟ ପାର୍ଟି ଛଡ଼ା ଆଉ ସମସ୍ତେ ଗାନ୍ଧୀଜୀଙ୍କ ନେତୃତ୍ୱରେ ଏହି ଆନ୍ଦୋଳନରେ ଯୋଗ ଦେଲେ ଏବଂ ଏହା ଛଡ଼ା ଅନ୍ୟ କୌଣସି ପନ୍ଥା ନାହିଁ ବୋଲି ବୁଝି ପାରିଲେ ।

୧୯୪୨ ଆନ୍ଦୋଳନରେ ଯୁବପିଢ଼ୀ, ମୁଖ୍ୟ ଅଂଶ ଗ୍ରହଣ କରିଥିଲା । ଏକ ପ୍ରବହମାନ ନଦୀର ସ୍ରୋତପରି କଂଗ୍ରେସର ସ୍ରୋତ । କୌଣସି ସ୍ଥାନରେ ଆବଦ୍ଧ ହୋଇ ରହିନାହିଁ । ଏହା ଏକ ଆବଦ୍ଧ ପୁଷ୍କରିଣୀ ନୁହେଁ, ଏ ହେଉଛି ଏକ ଚିର ପ୍ରବାହମାନା ସ୍ରୋତସ୍ୱିନୀ ଜାହ୍ନବୀ ଭଳି ନିତ୍ୟ, ନୂତନ । ଯେତେବେଳେ ଉଦ୍ଦୀପନାର ଟିକିଏ ହ୍ରାସ ହୋଇଯାଉଛି, ସେତେବେଳେ ଗାନ୍ଧୀଜୀ ନୂଆ ଆନ୍ଦୋଳନର ଡାକରା ଦେଇଛନ୍ତି । ଯଦି ପୁରୁଣା ଲୋକେ କେତେବେଳେ ଏଥିରୁ ଅଲଗା ହୋଇ ଯାଉଛନ୍ତି, ସେତେବେଳେ ନୂଆ ଯୁବକମାନେ ଆସି ଯୋଗ ଦେଉଛନ୍ତି । ଏଇ ହେଉଛି କଂଗ୍ରେସର ଇତିହାସ । ୧୯୨୧, ୧୯୩୦, ୧୯୪୨ର ଯୁବପିଢ଼ୀକୁ ମହାତ୍ମାଗାନ୍ଧୀ ବିଶେଷ ଭାବରେ ଅନୁପ୍ରାଣିତ କରିଥିଲେ, । ସେ କହିଥିଲେ, ମୁଁ ମରିବା ପୂର୍ବରୁ ଏ ଦେଶ ସ୍ୱାଧୀନ ହେବ । ଦେଶ ସ୍ୱାଧୀନ ହେଲା । ସ୍ୱାଧୀନତା ପାଇ ମଧ୍ୟ ସେ ଶାନ୍ତିରେ ରହିପାରିଲେ ନାହିଁ କାରଣ ଭାରତ ବିଭାଜନ ହୋଇଗଲା । ଭାରତବର୍ଷର ବିଭାଜନ କେବେହେଲେ ମହାତ୍ମା ଗାନ୍ଧୀଙ୍କର ସ୍ୱପ୍ନରେ ନଥିଲା । ବିଭାଜନ ହେବା ପରେ ପରେ ଦେଶ ଭିତରେ ସାଂପ୍ରଦାୟିକତାର ବିଷବାଷ୍ପ ଉଠିଗଲା । ଏ ବିଷବାଷ୍ପ ଦୂର କରିବା ପାଇଁ ମହାତ୍ମା ଗାନ୍ଧୀ ପ୍ରତିଜ୍ଞାବଦ୍ଧ ହେଲେ ଏବଂ ଶେଷରେ ନିଜର ଅମୂଲ୍ୟ ଜୀବନକୁ ବଳିଦାନ କଲେ । ତଥାପି ଏବେ ମଧ୍ୟ ଏ ବିଷବାଷ୍ପ ଜାହାର ରହିଛି ଏବଂ ମଝିରେ ମଝିରେ ମୁଣ୍ଡଟେକି ଉଠୁଛି । ମହାତ୍ମା ଗାନ୍ଧୀଙ୍କର ଦାୟାଦ ରୂପେ ଜାତୀୟତା ପାଇଁ ଆମକୁ ଅବିରତ ସଂଗ୍ରାମ ଚାଲୁ ରଖିବାକୁ ହେବ । ତାଙ୍କର ସଂକଳ୍ପକୁ କାର୍ଯ୍ୟକାରୀ କରିବାକୁ ହେବ । ଭାରତବର୍ଷକୁ ରକ୍ଷା କରିବାକୁ ହେଲେ କଂଗ୍ରେସ ଛଡ଼ା ଅନ୍ୟ କୌଣସି ବିକଳ୍ପ ପନ୍ଥା ନାହିଁ ।

## ଗାନ୍ଧୀଜୀଙ୍କ ଦାୟାଦ

ଭାରତ ବର୍ଷ ସଭ୍ୟ, ସଂସ୍କୃତିସଂପନ୍ନ, ଐତିହ୍ୟଶାଳିନୀ

ଦେଶ ହୋଇଥିବାରୁ ଯେତେବେଳେ ଯେଉଁ ଆହ୍ୱାନ ଆସିଛି, ସେହିଭଳି ନେତୃତ୍ୱକୁ ସେ ଜନ୍ମ ଦେଇଛି । ଯେପରି ଏ ଦେଶ ମହାତ୍ମା ଗାନ୍ଧୀଙ୍କୁ ଜନ୍ମ ଦେଲା ଓ ମହାତ୍ମା ଗାନ୍ଧୀଙ୍କ ପୂର୍ବରୁ ବାଳ ଗଙ୍ଗାଧର ତିଳକଙ୍କ ପରି ଲୋକଙ୍କୁ ଜନ୍ମ ଦେଇଥିଲା, ସେହିପରି ଏ ଦେଶର ପଣ୍ଡିତ ଜବାହରଲାଲ ନେହରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ନେତାଜୀ ସୁବାସଚନ୍ଦ୍ର ବୋଷ, ମୌଲନା ଆଜାଦ ଓ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କୁ ଜନ୍ମ ଦେଇଥିଲା । ଏମାନେ ପୃଥିବୀର ଯେ କୌଣସି ଶ୍ରେଷ୍ଠ ରାଜନୀତିଜ୍ଞଙ୍କ ସହିତ ତୁଳନୀୟ । ସ୍ୱାଧୀନତାପରେ ପଣ୍ଡିତ ଜବାହରଲାଲ ନେହରୁ ମହାତ୍ମା ଗାନ୍ଧୀଙ୍କର ସ୍ୱପ୍ନକୁ ରୂପାୟିତ କରିବା ପାଇଁ ଚେଷ୍ଟା କଲେ । ଏ ଭାରତ ବର୍ଷ କିପରି ବିଭିନ୍ନ ସଂପ୍ରଦାୟର ଊର୍ଦ୍ଧ୍ୱରେ ରହିବ, ବିଭିନ୍ନ ଧର୍ମର ଊର୍ଦ୍ଧ୍ୱରେ ରହିବ ; ଏହାର ଜାତୀୟତା କିପରି ନିଷ୍କଳୁଷ ଭାବରେ ପୃଥିବୀରେ ପ୍ରତିଷ୍ଠିତ ହେବ—ଏସବୁ ଥିଲା ପଣ୍ଡିତ ଜବାହରଲାଲ ନେହରୁଙ୍କ ସ୍ୱପ୍ନ । ସେଥିପାଇଁ ପ୍ରଣୟନ କରାଗଲା ଭାରତବର୍ଷର ସଂବିଧାନ । ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନକୁ ଏଥିରେ ରୂପାୟିତ କରିବା ପାଇଁ ଉଦ୍ୟମ କରାଯାଇଛି । ଭାରତବର୍ଷ ହେବ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ଏହାର ଅର୍ଥ, ସବୁ ଧର୍ମକୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଦିଆଯିବ । ଏ ରାଷ୍ଟ୍ର ଏକ ସାଂପ୍ରଦାୟିକ ରାଷ୍ଟ୍ର ହେବନାହିଁ । ଯେପରି ପାକିସ୍ଥାନ, ଇରାନ ଆଦି ପୃଥିବୀର ବହୁ ରାଷ୍ଟ୍ର ହୋଇଛନ୍ତି । ଏ ହେଲା ଏ ଦେଶର ସଂବିଧାନର ପ୍ରଥମ କଥା । ଦ୍ୱିତୀୟ କଥା ହେଉଛି, ଏ ଭାରତବର୍ଷ ଏକ ଗଣତାନ୍ତ୍ରିକ ରାଜ୍ୟ ରୂପେ ପ୍ରତିଷ୍ଠିତ ହେବ । ଠିକ୍ ସେତିକିବେଳେ ଚୀନ ଦେଶରେ ବିପ୍ଳବ ହୋଇ ମାଓସେତୁଙ୍ଗ ଦ୍ୱାରା ସେଠାରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠିତ ହେଲା । ଭାରତବର୍ଷରେ କିନ୍ତୁ ସ୍ୱାଧୀନତା ପରେ ପରେ ଜନସାଧାରଣଙ୍କ ମନ ଭିତରେ ପ୍ରବଳ ଉତ୍ତେଜନା ସୃଷ୍ଟି ହେଲା । ଭାରତ ବର୍ଷର ଲୋକ ଭାବିଲେ ଏ ଦେଶରେ ରାତାରାତି ପରିବର୍ତ୍ତନ ହେବା ଦରକାର । ଆମେ ଯେତେବେଳେ ପ୍ରବଳ ପରାକ୍ରମଶାଳୀ ବ୍ରିଟିଶ ଶିକୁଳିକୁ ଛିଣ୍ଡାଇ ଫୋପାଡ଼ି ଦେଇଛୁ, ସେତେବେଳେ ଆଉ ଅନ୍ୟ ଶିକୁଳି ରଖିବୁ କାହିଁକି ? ରାଜାରାଜୁଡ଼ାଙ୍କ ଶିକୁଳି ଛିଡ଼ିଯାଉ । ଜମିଦାରୀ ଶିକୁଳି ଛିଡ଼ିଯିବା ଦରକାର । ପୁଞ୍ଜିପତି, ମହାଜନ ଓ ବଡ଼ବଡ଼ ଜମିଦାରଙ୍କର ସବୁ ଶିକୁଳି ଏକାବେଳେକେ ଛିଣ୍ଡିଯିବା ଦରକାର । ତା'ନହେଲେ ସ୍ୱାଧୀନତାର କୌଣସି ଅର୍ଥ ନାହିଁ ।

## ଧର୍ମନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ର

ଭାରତବର୍ଷର ଜନସାଧାରଣଙ୍କ ମନରେ ଏଭଳି ଏକ ଆଲୋଡ଼ନ ହେଉଥିବାବେଳେ ପଣ୍ଡିତ ଜବାହରଲାଲ ନେହରୁ ଗୋଟିଏ ସିଦ୍ଧାନ୍ତ ଗ୍ରହଣ କଲେ । ତା' ହେଉଛି ଭାରତବର୍ଷକୁ ଶାସନ କରିବାକୁ ହେଲେ କମ୍ୟୁନିଷ୍ଟ ପନ୍ଥା ଉପଯୁକ୍ତ ହେବନାହିଁ । ଏ ଦେଶ ପାଇଁ କେବଳ ଗଣତାନ୍ତ୍ରିକ ପନ୍ଥାହିଁ ଉପଯୁକ୍ତ । ଏ ଦେଶକୁ ଶାସନ କରିବା ପାଇଁ ଏ ଦେଶର ପ୍ରତ୍ୟେକ ବ୍ୟକ୍ତିର ସମାନ ଅଧିକାର ରହିବ । ଅନ୍ୟାନ୍ୟ ରାଜନୈତିକ ଦଳ ଓ କଂଗ୍ରେସ ଦଳ ଭିତରେ ଥିବା ବହୁ ସଭ୍ୟ ସେତେବେଳେ ଏ ସିଦ୍ଧାନ୍ତର ବିରୋଧ କଲେ ; କିନ୍ତୁ ଜବାହରଲାଲ ନେହରୁ କାହାରି କଥା ନଶୁଣି ନିଜ ସିଦ୍ଧାନ୍ତରେ ଅଟଳ ରହିଲେ । ଆଜି ଭାରତବର୍ଷରେ ଛଅ ଛଅଟା ସାଧାରଣ ନିର୍ବାଚନ

ହୋଇଗଲଣି । ଏ ଦେଶର ସଂଖ୍ୟାଧିକ ଲୋକ ... ହୋଇପାରନ୍ତି ବା ଅଶିକ୍ଷିତ ହୋଇପାରନ୍ତି କିନ୍ତୁ ବୁଦ୍ଧି... ବିଚାରରେ ଓ ବିଜ୍ଞତାରେ ପୃଥିବୀର ଯେ କୌଣସି ... ରାଷ୍ଟ୍ରର ଜନସାଧାରଣଙ୍କ ସହିତ ତୁଳନୀୟ ହୋଇ ପାରିବେ ... ଏକଥା ବହୁବାର ଏ ଦେଶରେ ପ୍ରମାଣିତ ହୋଇସାରି... ଏ ଦେଶରେ କଂଗ୍ରେସ ଯେ ସବୁଦିନ ଶାସନ କରି ଆସି... ତା'ନୁହେଁ । କଂଗ୍ରେସ ଶାସନ ବାହାରେ ମଧ୍ୟ ରହି... ୧୯୭୭ରେ ଭାରତର ଜନସାଧାରଣ ନିଷ୍ପତ୍ତି ନେ... କଂଗ୍ରେସକୁ ଭୋଟ ଦେବେ ନାହିଁ । ଅନ୍ୟ ଏକ ଦଳକୁ ଶାସ... ଗାଦିରେ ବସେଇବେ । ଫଳରେ ୧୯୭୭ରୁ ୧୯୮୦ ମସି... ପର୍ଯ୍ୟନ୍ତ ତିନିବର୍ଷ କାଳ କଂଗ୍ରେସ ଶାସନ ବାହାରେ ରହିଲା... ଲୋକଙ୍କର ଇଚ୍ଛା, ଲୋକମତ-ଗଣତନ୍ତ୍ରରେ ଏଇ ହେଉ... ସବୁଠାରୁ ପ୍ରଧାନ ସଫଳତା ।

## ଗଣତନ୍ତ୍ରର ସୁଫଳ

ଏବେ ଦେଖିବାର କଥା ଗଣତନ୍ତ୍ର ଜରିଆରେ ଆମ ଦେଶର କ'ଣ ଉନ୍ନତି ହୋଇଛି । ୧୯୪୭ ମସିହାରେ ଭିକ୍ଷାପାତ୍ର ଧରି 'ଭିକ୍ଷାଂଦେହି' କହି ଭାରତବର୍ଷ ପୃଥିବୀର ସ୍ୱଦ୍ୱାରେ ବୁଲୁଥିଲା । ଖାଦ୍ୟ କ୍ଷେତ୍ରରେ ଭାରତ ଆତ୍ମନିର୍ଭରଶୀଳ ନ ଥିଲା । ସ୍ୱାଧୀନତାର ପ୍ରାକ୍‌କାଳର କଥା । ଓଡ଼ିଶାରେ ଗଭର୍ଣ୍ଣର ଥାନ୍ତି ଚନ୍ଦୁଲାଲ ତ୍ରିବେଦୀ । ସେତେବେଳେ ସେ ତାଙ୍କ ରାଜଭବନରେ ରହି ପ୍ରାର୍ଥନା ସଭା କରିବା ପାଇଁ ମହାତ୍ମା ଗାନ୍ଧୀଙ୍କୁ ନିମନ୍ତ୍ରଣ କରିଥିଲେ । ଉତ୍ତରରେ ଗାନ୍ଧୀଜୀ କହିଲେ ତୁମ ରାଜଭବନରେ ପ୍ରାର୍ଥନା ସଭା କରିବା ପାଇଁ ଯଦି ଯାଗା ଥାଏ ସେ ଯାଗାକୁ ଭଲ ଭାବରେ ନିୟୋଜିତ କରି ସେଠି କିଛି ଫସଲ ଫଳାଅ । ଫସଲ ଫଳେଇ ଦେଖେଇ ଦିଅ' ଗଭର୍ଣ୍ଣର ଭାବରେ ମଧ୍ୟ ଏ ଦେଶକୁ ସ୍ୱାବଲମ୍ବୀ କରିବା ପାଇଁ ତୁମେ ସାହାଯ୍ୟ କରୁଛ । ଦେଶକୁ ସ୍ୱାବଲମ୍ବୀ କରିବା ଥିଲା ସେତେବେଳର ସ୍ୱପ୍ନ । ଇନ୍ଦିରାଗାନ୍ଧୀଙ୍କ ସମୟରେ ପ୍ରଥମଥର ପାଇଁ ଭାରତ ବର୍ଷ ଖାଦ୍ୟଶସ୍ୟ କ୍ଷେତ୍ରରେ ସ୍ୱାବଲମ୍ବୀ ହେଲା । କେବଳ ଯେ ସ୍ୱାବଲମ୍ବୀ ହେଲା ତା' ନୁହେଁ, ଭିଏତ୍‌ନାମ ଓ ଆଫ୍ରିକାପରି କେତେକ ଦେଶକୁ ଆମେ ସାହାଯ୍ୟ କରି ପାରିଲେ । ଆଜି ଆମର ଗହମ ନେବା ପାଇଁ ସୋଭିଏତ୍ ୟୁନିୟନ ଓ ପୃଥିବୀର ଅନ୍ୟାନ୍ୟ ଦେଶ ଉତ୍ସୁକ । ସେହିପରି ଶିଳ୍ପ କ୍ଷେତ୍ରରେ ସାମାନ୍ୟ ଛୁଞ୍ଚିଟିଏ ତିଆରି କରିବା ମଧ୍ୟ ଆମ ପକ୍ଷରେ ଅସଂଭବ ହେଉଥିଲା । ଅସ୍ତ୍ର ଶସ୍ତ୍ର କ୍ଷେତ୍ରରେ ଆମେ ସଂପୂର୍ଣ୍ଣ ଅସହାୟ ଥିଲେ । ୧୯୬୨ ମସିହାରେ ଚୀନ୍ ଯେତେବେଳେ ଆମକୁ ଆକ୍ରମଣ କଲା, ଆମେ ସେତେବେଳେ ତା'ର ସମ୍ମୁଖୀନ ହୋଇ ପାରିନଥିଲେ; କିନ୍ତୁ ଆଜି ଭାରତବର୍ଷ ସାମରିକ କ୍ଷେତ୍ରରେ, ଶିଳ୍ପ କ୍ଷେତ୍ରରେ ସଂପୂର୍ଣ୍ଣ ସ୍ୱାବଲମ୍ବୀ ହୋଇପାରିଛି । ଆଜି ଆମର ସମସ୍ତ ପ୍ରକାର ଖାଉଟୀ ଜିନିଷ ଏବଂ ଛୁଞ୍ଚିଠାରୁ ଆରମ୍ଭ କରି ଉଡ଼ାଜାହାଜ ପର୍ଯ୍ୟନ୍ତ ସକଳ ସରଞ୍ଜାମରେ ଆମେ ଉତ୍ପାଦନକ୍ଷମ ହୋଇ ପାରିଛୁ । ୧୯୭୧ ମସିହାରେ ପୁଣି ଚୀନ୍ ଆମ ସହିତ ହିମାଳୟର ଏକ ସୀମାନ୍ତରେ ବଳ ପରୀକ୍ଷା କରିଥିଲା । ସେମାନଙ୍କର ଏବେ ଧାରଣା ହେଲା ଯେ ସେ ବୁଝିଲା ଭାରତବର୍ଷ ସହିତ ଲଢ଼ିବା ଆଉ ସଂଭବ ନୁହେଁ । ପଣ୍ଡିତ ଜବାହରଲାଲ ନେହରୁ ଓ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ନୀତି ପାଇଁ ଭାରତବର୍ଷ ଆଜି ପୃଥିବୀରେ ଏକ ଅଜେୟ ଶକ୍ତି ଭାବରେ ଠିଆ ହୋଇ ପାରିଛି ।

## ଗୋଷ୍ଠୀ ନିରପେକ୍ଷ ନୀତି

ବର୍ତ୍ତମାନ ପୃଥିବୀର ସମସ୍ୟା ହେଉଛି ବିଶ୍ୱ ଯୁଦ୍ଧର ଆଶଙ୍କା । ଯଦି ଲଢେଇ ହୋଇଯାଏ ତେବେ ଏ ପୃଥିବୀ ଧ୍ୱଂସ ହୋଇଯିବ । ସୋଭିଏତ ୟୁନିୟନ୍‌ର ରାଷ୍ଟ୍ରନାୟକ ଗୋର୍ବାଚେଭ୍ "ଟାଇମ୍" ପତ୍ରିକାକୁ ଏକ ସାକ୍ଷାତକାରରେ କହିଛନ୍ତି, ସୋଭିଏତ ୟୁନିୟନର ଜନସାଧାରଣ ଅର୍ଥନୈତିକ କ୍ଷେତ୍ରରେ ବହୁତ ଆଗେଇବା ପାଇଁ ଚାହାନ୍ତି; କିନ୍ତୁ ଦୁଃଖର ବିଷୟ ସେମାନେ ଆଗେଇ ପାରୁ ନାହାନ୍ତି । କାରଣ ଆମେରିକା ଯେତେବେଳେ ଏକ ନୂଆ ଅସ୍ତ୍ର ଉଦ୍‌ଭାବନ କରୁଛି ସେତେବେଳେ ସେହିପରି ଆଉ ଏକ ଅସ୍ତ୍ର ତିଆରି ନ କଲେ ଏ ପ୍ରତିଯୋଗିତାରେ ଋଷିଆ ପଛରେ ପଡ଼ିଯିବ । ଆଗ୍ନେୟାସ୍ତ୍ର ପ୍ରୟୋଗ ହେଲେ ତାକୁ କିପରି ଭାବରେ ବାରୁଣାସ୍ତ୍ରରେ ପ୍ରତିହତ କରାଯାଏ, ସେସବୁ କଥା ଆମେ ରାମାୟଣ, ମହାଭାରତରେ ପଢ଼ିଥିଲେ । ବର୍ତ୍ତମାନ ଋଷିଆ ଆମେରିକା ଅନୁରୂପ ଚିନ୍ତା କରୁଛନ୍ତି । ଋଷିଆର ଆଣବିକ ଅସ୍ତ୍ରକୁ ଅନ୍ତରୀକ୍ଷରେ କିପରି କଟାଯାଇ ପାରିବ, ସେଥିପାଇଁ ସ୍ତରି ହଜାର କୋଟି ଡଲର ମୂଲ୍ୟରେ ସେ ବର୍ତ୍ତମାନ ଏକ ଅନ୍ତରୀକ୍ଷଗାମୀ ଅସ୍ତ୍ର ତିଆରି କରିବାକୁ ଚେଷ୍ଟା କରୁଛି । ଆମେରିକାର ଆଣବିକ ଅସ୍ତ୍ରକୁ ପ୍ରତିହତ କରିବା ପାଇଁ ସୋଭିଏତ ୟୁନିୟନ ସେହିପରି ଉଦ୍ୟମ କରୁଛି । ତେଣୁ ଅସ୍ତ୍ରଶସ୍ତ୍ରରେ ଏ ଯେଉଁ ତୀବ୍ର ପ୍ରତିଯୋଗିତା ଚାଲିଛି, ତଦ୍ୱାରା ପୃଥିବୀ ବର୍ତ୍ତମାନ ଏକ ବାରୁଦାଗାରରେ ପରିଣତ ହୋଇଛି । ଏ ବାରୁଦାଗାରରେ ସାମାନ୍ୟତମ ଅଗ୍ନିର ଝଲକ ବାଜିଲେ ସାଙ୍ଗେ ସାଙ୍ଗେ ଭୟଙ୍କର ବିସ୍ଫୋରଣ ଘଟିଯିବ । ସେଥିପାଇଁ ପଣ୍ଡିତ ଜବାହରଲାଲ ନେହରୁ ଆଗରୁ କହିଥିଲେ, ବିଶ୍ୱରେ ଶାନ୍ତିରକ୍ଷା ହେଉଛି ପୃଥିବୀର ପ୍ରଥମ ରାଜନୀତି । ଭାରତବର୍ଷ ଶାନ୍ତି ଚାହେଁ । ଜନ ସାଧାରଣ ଶାନ୍ତି ଚାହାନ୍ତି । ସେଥିପାଇଁ ସେ ପ୍ରଥମେ ଗୋଷ୍ଠୀନିରପେକ୍ଷ ନୀତି ଆରମ୍ଭ କରିଥିଲେ । ଆଜି ପୃଥିବୀର ଶତାଧିକ ଦେଶ ଗୋଷ୍ଠୀ ନିରପେକ୍ଷତାରେ ବିଶ୍ୱାସ କରନ୍ତି । ଇନ୍ଦିରା ଗାନ୍ଧୀଙ୍କ ସମୟରେ ଗୋଷ୍ଠୀ ନିରପେକ୍ଷ ନୀତିର ବିଶେଷ ବିଜୟ ଘଟିଥିଲା । ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରମାନଙ୍କର ନେତ୍ରୀ ଭାବରେ ଇନ୍ଦିରାଗାନ୍ଧୀ ପୃଥିବୀ ପାଇଁ ଏକ ଶାନ୍ତିର ସନନ୍ଦ ଘୋଷଣା କରିଥିଲେ ।

ଆଜି ଭାରତବର୍ଷ କୌଣସି ଦେଶର ଗୋଡ଼ାଣିଆ ନୁହେଁ । ଭାରତବର୍ଷକୁ ଅଡୁଆରେ ପକାଇବା ପାଇଁ ଆମେରିକା ବାରମ୍ବାର ଚେଷ୍ଟା କରିଛି; କିନ୍ତୁ ଭାରତବର୍ଷ ଆମେରିକାକୁ ମୁହେଁ ମୁହେଁ ଜବାବ ଦେଇଛି । ଜବାହରଲାଲ ନେହରୁଙ୍କଠାରୁ ଆରମ୍ଭ କରି ଆଜିର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ପର୍ଯ୍ୟନ୍ତ । ଭାରତବର୍ଷ କେବେହେଲେ କୌଣସି ଶିବିରର ଗୋଡ଼ାଣିଆ ହୋଇ ନାହିଁ । ଅତଏବ ବୈଦେଶିକ ନୀତି କ୍ଷେତ୍ରରେ କଂଗ୍ରେସର ନେତୃତ୍ୱ ଆମ ଦେଶ ପାଇଁ ଅନ୍ୟ ଏକ ପ୍ରଧାନ ସଫଳତା ।

୧୮୮୫ ମସିହାର ଭାରତବର୍ଷ ଏବଂ ୧୯୮୫ ମସିହାର ଭାରତବର୍ଷ ଭିତରେ ଆକାଶ ପାତାଳ ପ୍ରଭେଦ । ଯେଉଁ ଭାରତବର୍ଷକୁ ଆମେରିକାରେ ଓ ଅନ୍ୟତ୍ର ସାପୁଆ କେଳା ଙ୍କ ବାଘଭାଲୁଙ୍କର ଦେଶ ବୋଲି କଳ୍ପନା କରାଯାଉଥିଲା, ଆଜି ସେ ଭାରତବର୍ଷ ପୃଥିବୀର ଏକ ପ୍ରଧାନ ରାଷ୍ଟ୍ର ରୂପେ ମୁଣ୍ଡ ଟେକିଛି । ନିକଟରେ ଫ୍ରାନ୍‌ସ୍, ଇଂଲଣ୍ଡ ଓ ଆମେରିକାରେ ଭାରତ ପର୍ବକୁ

ଯେଉଁ ପ୍ରଦର୍ଶନୀ ହେଲା ତହିଁରେ ଭାରତର ହଜାର୍ ହଜାର ବର୍ଷର ମହାନ୍ ସଂସ୍କୃତି ପ୍ରଦର୍ଶିତ ହୋଇଛି । ନୂତନ ଭାରତବର୍ଷ ଆଜି ପୃଥିବୀର ଶ୍ରେଷ୍ଠ ପାଞ୍ଚ ଛଅଟି ରାଷ୍ଟ୍ର ଭିତରେ ସେ ଅନ୍ୟତମ ବୋଲି ପରିଗଣିତ ହେଉଛି; ଏହା କେବଳ କଂଗ୍ରେସ ଯୋଗୁଁ ସମ୍ଭବ ହୋଇ ପାରିଛି ।

## ଲୋକଙ୍କ ଭିତରେ କଂଗ୍ରେସ

କେବଳ ଉପର ପାହାଚରେ ଥିବା କେତେକ ମୁଷ୍ଟିମେୟ ଲୋକଙ୍କୁ କଂଗ୍ରେସ ବୁଝାଏ ନାହିଁ । କଂଗ୍ରେସ ହେଉଛି ଭାରତବର୍ଷର ଅଗଣିତ ଜନସାଧାରଣ । ଯେଉଁ ଦିନ କଂଗ୍ରେସ ଭାରତବର୍ଷର ଜନସାଧାରଣଙ୍କ ଠାରୁ ବିଚ୍ଛିନ୍ନ ହୋଇଯିବ, ସେଦିନ କଂଗ୍ରେସର ମୃତ୍ୟୁ ହେବ । ଭାରତର ଜନସାଧାରଣଙ୍କ ଭିତରୁ ଆସିଥିବା ଯୋଗୁଁ ଆଜି କଂଗ୍ରେସ ଏକ ନିତ୍ୟ, ନୂତନ ପ୍ରାଣବନ୍ତ ଅନୁଷ୍ଠାନ ଭାବରେ ରହି ପାରିଛି ।

କଂଗ୍ରେସର ଶତବାର୍ଷିକୀ ଉତ୍ସବ ଏବେ ରାଜ୍ୟ ସାରା ପାଳନ କରାଯାଉଛି । କଂଗ୍ରେସ ଲୋକମାନଙ୍କ ଆଗରେ ଆଜି ନୂତନ ସଂକଳ୍ପ ହେଉଛି ଦେଶରୁ ଦାରିଦ୍ର୍ୟ ଓ ବେକାରୀ ଦୂରୀଭୂତ କରିବା ।

ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ଆମ ପାଖରୁ ବିଦାୟ ନେଇ ଗଲେଣି ଓ ଯେଉଁମାନେ ଜୀବିତ ରହିଛନ୍ତି ସେମାନଙ୍କୁ ମୁଁ ମୋର ହୃଦୟରୁ ଗଭୀର ସମ୍ମାନ ଜଣାଉଛି । ସେମାନଙ୍କର ତ୍ୟାଗର କୌଣସି ତୁଳନା ନାହିଁ । ସେମାନେ ଯେଉଁ ଦାନ କରିଛନ୍ତି, ଦେଶ କେବେ ହେଲେ ତାକୁ ଶୁଝି ପାରିବ ନାହିଁ । କେବଳ ଭବିଷ୍ୟତ ବଂଶଧରମାନେ ତାକୁ ସ୍ମରଣ କରିବେ । ପିତା, ପିତାମହ, ପ୍ରପିତାମହମାନେ ଦେଶର ଆହ୍ୱାନରେ ସଂଗ୍ରାମର ଯଜ୍ଞ ବେଦୀରେ ନିଜକୁ ଆହୁତି ଦେଇଛନ୍ତି ଜାଣି ସେମାନଙ୍କ ବଂଶଧରମାନେ ଅଶେଷ ପ୍ରେରଣା ଲାଭକରିବେ । ସେମାନଙ୍କ ପାଇଁ ଓ ଜାତିର ସମସ୍ତଙ୍କ ପାଇଁ ଏ ହେଉଛି ଗର୍ବ ଏବଂ ଗୌରବର ବିଷୟ । ଆମର ପୂର୍ବ ବଂଶଧରମାନେ ତାଙ୍କର କର୍ତ୍ତବ୍ୟ ସଂପାଦନ କରି ଯାଇଛନ୍ତି । ଆଜି ଆମମାନଙ୍କ ଆଗରେ ଆସିଛି ନୂତନ କର୍ତ୍ତବ୍ୟ । ଏ ନୂତନ କାର୍ଯ୍ୟକ୍ରମ ପାଇଁ ଆମ ସମସ୍ତଙ୍କୁ ସଂକଳ୍ପବଦ୍ଧ ହେବାକୁ ପଡ଼ିବ । ଦରକାର ପଡ଼ିଲେ ଆତ୍ମ ବଳିଦାନ ଦେବା ପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ପଡ଼ିବ । ବେକାରୀ ଓ ଦାରିଦ୍ର୍ୟ ଦୂର କରି ଭାରତବର୍ଷକୁ ଆଗେଇ ନେବାପାଇଁ । ଏହି କାର୍ଯ୍ୟକ୍ରମକୁ ବିଭିନ୍ନ ଯୋଜନା ଜରିଆରେ ଇନ୍ଦିରାଗାନ୍ଧୀ ୧୯୬୯ ମସିହାରେ ଆରମ୍ଭ କଲେ । ଏଥିପାଇଁ ତାଙ୍କୁ ବହୁ ବାଧାର ସମ୍ମୁଖୀନ ହେବାକୁ ପଡ଼ିଲା । ଏପରିକି ୧୯୭୭ ମସିହାରେ ତାଙ୍କୁ ଶାସନ ଦାୟିତ୍ୱରୁ ହଟିଯିବା ପାଇଁ ହେଲା ; କିନ୍ତୁ ଅନମନୀୟ ମନୋବଳ ଜରିଆରେ ସେ ୧୯୮୦ ମସିହାରେ ପୁଣି ଶାସନକୁ ଫେରିଲେ । ଭାରତର ଗରିବ ଲୋକେ କହିଲେ "ଆଧାରୋଟି ଖାଏଙ୍ଗେ, ଇନ୍ଦିରାକୋ ଲାଏଙ୍ଗେ" । ଶାସନ ଦାୟିତ୍ୱ ନେଇ ଇନ୍ଦିରାଗାନ୍ଧୀ କହିଲେ, ଯେଉଁମାନେ ଅଧାରୁଟି ଖାଇ ମୋତେ କ୍ଷମତାକୁ ଫେରାଇ ଆଣିଛନ୍ତି, ସେମାନଙ୍କ ପାଇଁ ସବୁ କିଛି କରିବାକୁ ହେବ । ଦେଶର କୋଟି କୋଟି ଦୀନ ଦୁଃଖୀଙ୍କ

ପାଇଁ ଓ ଦେଶର ସଂହତି ରକ୍ଷା କରିବା ସକାଶେ ଜୀବନସାରା ସେ ଯେଉଁ ସଂଗ୍ରାମ ଚଳାଇ ଥିଲେ, ସେହି ସଂଗ୍ରାମ କରି କରି ସେ ଟଳି ପଡ଼ିଲେ ।

## ଏକବିଂଶ ଶତାବ୍ଦୀର ଭାରତ ଅଭିଯାନ

ଆଜି କଂଗ୍ରେସ ସମ୍ମୁଖରେ ଆସିଛି ନୂତନ ଆହ୍ୱାନ । ସେ ଆହ୍ୱାନ ଦେଉଛନ୍ତି ଆମର ତରୁଣ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ । ସେ କହିଛନ୍ତି, ଆମକୁ ଏକବିଂଶ ଶତାବ୍ଦୀ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । କଣ ଏ ଏକବିଂଶ ଶତାବ୍ଦୀ ? ଆଉ ମାତ୍ର ପନ୍ଦରଟି ବର୍ଷ ପରେ ବିଂଶ ଶତାବ୍ଦୀ ବିଦାୟ ନେବ ଓ ଏକବିଂଶ ଶତାବ୍ଦୀ ଆସିଯିବ । ଏଇ ପନ୍ଦରବର୍ଷ ଭିତରେ ବିଜ୍ଞାନ ବଳରେ, ବୈଷୟିକ ଜ୍ଞାନ ବଳରେ ଭାରତବର୍ଷକୁ ପୃଥିବୀର ଏକ ମହାନ୍ ଶକ୍ତି ରୂପେ ଯେପରି ପ୍ରତିଷ୍ଠା କରାଯାଇ ପାରିବ । ଏକବିଂଶ ଶତାବ୍ଦୀରେ ଯେପରି ଦେଶରେ ଦାରିଦ୍ର୍ୟର ସ୍ୱର ଶୁଣାଯିବ ନାହିଁ । ଭାରତବର୍ଷ ସୋଭିଏତ୍ ଋଷିଆ ଓ ଆମେରିକା ସହିତ କାନ୍ଧକୁ କାନ୍ଧ ମିଳେଇ ଠିଆ ହୋଇପାରିବ । ମହାନ ଭାରତବର୍ଷ ପୃଥିବୀକୁ ନେତୃତ୍ୱ ଦେଇ ପାରିବ । ସେହି ହେଉଛି ଏକବିଂଶ ଶତାବ୍ଦୀର ଭାରତ ।

ଏକବିଂଶ ଶତାବ୍ଦୀର ଭାରତ ପାଇଁ ଆଜଠୁଁ ଆମକୁ କଠୋର ପରିଶ୍ରମ କରିବାକୁ ପଡ଼ିବ । ଭାରତବର୍ଷର ଜନସାଧାରଣ ହିଁ କଂଗ୍ରେସର ସ୍ରଷ୍ଟା । ପାଣି ବିନା ଯେପରି ମାଛ କ୍ଷଣେ ବଞ୍ଚି ପାରେ ନାହିଁ, ସେହିପରି ଭାରତବର୍ଷର ଜନସାଧାରଣଙ୍କୁ ଛାଡ଼ି କଂଗ୍ରେସ କେବେ ହେଲେ ତିଷ୍ଠି ରହି ପାରିବ ନାହିଁ । ଭାରତର ସଂକଳ୍ପରେ ଓଡ଼ିଶାର ମହାନ ଦାୟିତ୍ୱ ରହିଛି ।

ଓଡ଼ିଶାରୁ ଦାରିଦ୍ର୍ୟ ଦୂର କରିବା ହେଉଛି ଆମର ପରମ କର୍ତ୍ତବ୍ୟ । ଓଡ଼ିଶା ପ୍ରାକୃତିକ ସମ୍ପଦରେ ଭରପୂର । ଭାରତବର୍ଷରେ ଏପରି କିଛି ପଦାର୍ଥ ନାହିଁ, ଯାହା ଓଡ଼ିଶାରେ ନାହିଁ । ପ୍ରାକୃତିକ ବିଭବ ଦୃଷ୍ଟିରୁ ଭାରତର କମ୍ ରାଜ୍ୟ ଓଡ଼ିଶା ସହ ତୁଳନୀୟ ହୋଇ ପାରିବେ । ଏକମାତ୍ର ଦାରିଦ୍ର୍ୟ ଦୋଷ ଆମର ସମସ୍ତ ବିଭବକୁ ଘୋଡ଼େଇ ପକାଉଛି । କବି ଲେଖିଛନ୍ତି...."ଏକୋହି ଦୋଷୋ ଗୁଣ ସନ୍ନିପାତେ" ନିମଜ୍ଜତୀ ନ୍ଦୋଃ କିରଣେଷ୍ୱିବାଙ୍କଃ ।।" ବହୁ ଗୁଣ ଭିତରେ ଯଦି ଗୋଟିଏ ଦୋଷ ରହିଯାଏ, ତା'ହେଲେ ତାହା ଲୁଚିଯିବ । ଯେପରିକି ଚନ୍ଦ୍ରରେ କଳଙ୍କ । ମାତ୍ର ଏ ଶ୍ଳୋକ ଉପରେ ଅନ୍ୟ ଜଣେ କବି କହିଛନ୍ତି—" ନୂନଂ କବିତା ଏତମପି ଦୃଷ୍ଟଂ ଦାରିଦ୍ର୍ୟ ଦୋଷ ଗୁଣ ରାଶି ନାଶି" । ମାତ୍ର ଦାରିଦ୍ର୍ୟ ଦୋଷ ସବୁ ଗୁଣକୁ ନାଶ କରି ପକାଏ । ଓଡ଼ିଶା ପକ୍ଷରେ ଦାରିଦ୍ର୍ୟ ଦୋଷ ଏକ ଐତିହାସିକ ବିଡମ୍ବନା ମାତ୍ର । ବ୍ରହ୍ମପୁର ସହରଠାରୁ ଅନତିଦୂରରେ ପାଲୁରଠାରେ ପ୍ରାଚୀନ ଦନ୍ତପୁର ଅବସ୍ଥିତ ଥିଲା । ଦନ୍ତପୁରର ଗୌରବପୂର୍ଣ୍ଣ ସମୟରେ ଏ ରାଜ୍ୟ କଳିଙ୍ଗ ନାମରେ ଖ୍ୟାତି ଅର୍ଜନ କରିଥିଲା । ପ୍ରଥମ ଭାରତୀୟ ଭାବରେ କଳିଙ୍ଗର ସାଧବମାନେ ଜାଭା ସୁମାତ୍ରାରେ ଉପନିବେଶ ସ୍ଥାପନ କରିଥିଲେ ଓ ସେଠାରେ ସଭ୍ୟତାର ପ୍ରସାର କରିଥିଲେ । କେବଳ ଐତିହାସିକ କାଗଜରେ ସେତେବେଳର କଳିଙ୍ଗ ଯେ କି, ଆଜିର ଓଡ଼ିଶା ସେ ଗରିବ ହୋଇ ଯାଇଚି । ଆଜି ଆମ ଭିତରେ କେତେକ ଲୋକ ଅଛନ୍ତି, ଯେଉଁମାନେ କି କେବଳ ଦାରିଦ୍ର୍ୟକୁ ବର୍ଣ୍ଣନା କରି ସନ୍ତୋଷ ଲାଭ କରନ୍ତି । କଳାହାଣ୍ଡିର ଦାରିଦ୍ର୍ୟକୁ ଉପହାସ କରି ସେମାନେ ଆତ୍ମସନ୍ତୋଷ ଲାଭ କଲେ । କିନ୍ତୁ ମଧ୍ୟ ପ୍ରଦେଶର ବସ୍ତର ପରି କଳାହାଣ୍ଡିଠାରୁ ଅଧିକ ଗରିବ ଅଞ୍ଚଳ ଯେ ଏ ଦେଶରେ ରହିଛି ସେସବୁ କଥା ଲେଖା ଯାଉନାହିଁ । କଂଗ୍ରେସ ଜରିଆରେ ଓଡ଼ିଶାର ଜନସାଧାରଣ ବିଗତ ପାଞ୍ଚବର୍ଷ ହେଲା ଦାରିଦ୍ର୍ୟ ଦୋଷକୁ ଦୂର କରିବା ପାଇଁ ଯେଉଁ ଅଭିଯାନ ଆରମ୍ଭ କରିଛନ୍ତି, ତାହା ନିଶ୍ଚିତ ଭାବରେ ଅବ୍ୟାହତ ରହିବ ଏବଂ ଆଗାମୀ ଦଶବର୍ଷ ଭିତରେ ଓଡ଼ିଶା ଭାରତବର୍ଷରେ ଏକ ଶ୍ରେଷ୍ଠ ରାଜ୍ୟରୂପେ ପ୍ରତିଷ୍ଠିତ ହେବ । ଏହାହିଁ ଓଡ଼ିଶାର ଜନସାଧାରଣଙ୍କର ସଂକଳ୍ପ ।

ଓଡ଼ିଶା ଉଚ୍ଚକୁ ଉଠିବ, ଓଡ଼ିଶା ବଡ଼ ହେବ, ଓଡ଼ିଶାରୁ ଦୁଃଖ ଦାରିଦ୍ର୍ୟ ଘୁଞ୍ଚିଯିବ—ଏଥିପାଇଁ ଓଡ଼ିଶାବାସୀ ୧୯୮୦ରେ ସଂକଳ୍ପବଦ୍ଧ ହୋଇଥିଲେ । ଇନ୍ଦିରାଗାନ୍ଧୀଙ୍କର ଆଶୀର୍ବାଦ ମଧ୍ୟ ଆମେ ଲାଭ କରିଥିଲେ । ୧୯୮୪ ମସିହା ଅପ୍ରେଲ ପହିଲା ଦିନ ଆମର ଉତ୍କଳ ଦିବସ ପାଇଁ ଏକ ବାର୍ତ୍ତା ପଠେଇ ସେ ଲେଖିଥିଲେ—"ଏ ଓଡ଼ିଶା ପୂର୍ବର ଓଡ଼ିଶା ନୁହେଁ । ଶିଳ୍ପ କ୍ଷେତ୍ରରେ, କୃଷି କ୍ଷେତ୍ରରେ ଓଡିଶା ଯଥେଷ୍ଟ ଅଗ୍ରଗତି କରିଛି । ଏ ଏ ଅଗ୍ରଗତି ଚାଲୁ ରହିବ ।" ମରିବାର ତିନିଦିନ [illegible] ସେ ଓଡ଼ିଶା ଆସିଥିଲେ । ଓଡ଼ିଶାର ସଂସ୍କୃତି, ଐତିହ୍ୟ ଓ ପରଂପରାରେ ବି ମୁଗ୍ଧ ହୋଇ ସେ ଆଉ ଥରେ ଓଡ଼ିଶାକୁ ଜଣେ ପର୍ଯ୍ୟଟକ ଭାବରେ ବୁଲି ଆସିବାକୁ ଇଚ୍ଛା ପ୍ରକାଶ କରିଥିଲେ ।

ଓଡ଼ିଶାର ଦ୍ରୁତ ପ୍ରଗତି ପାଇଁ ସେହିପରି ବର୍ତ୍ତମାନର ତରୁଣ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କର ହୃଦୟଭରା ସାହାଯ୍ୟ ଓ ଆଶୀର୍ବାଦ ରହିଛି । ଦେଶର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାକୁ ସେ ବହୁବାର ଆସିଛନ୍ତି । ଓଡ଼ିଶାର ଦ୍ରୁତ ବିକାଶ ଦିଗରେ ସେ ସବୁ ପ୍ରକାର ସାହାଯ୍ୟ ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

ଏବେ ଦେଶ ସାରା କଂଗ୍ରେସର ଶତବାର୍ଷିକୀ ପାଳନ କରାଯାଉଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ହୃତ ଗୌରବ ଫେରେଇ ଆଣି ତାକୁ ଦେଶରେ ଏକ ଶ୍ରେଷ୍ଠ ରାଜ୍ୟ ରୂପେ ଗଢ଼ି ତୋଳିବାକୁ ମୁଁ ଆମ ରାଜ୍ୟର ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କୁ, କଂଗ୍ରେସ ଲୋକଙ୍କୁ, ନବ ଯୁବକମାନଙ୍କୁ ତଥା ଜନସାଧାରଣଙ୍କୁ ସଂକଳ୍ପବଦ୍ଧ ହେବା ପାଇଁ ଆହ୍ୱାନ କରୁଚି । ରାଜୀବ ଗାନ୍ଧୀଙ୍କର ଏକବିଂଶ ଶତାବ୍ଦୀର ଅଭିଯାନରେ ଆମକୁ ସାମିଲ ହେବା ପାଇଁ ପଡ଼ିବ । ଏକ ଶ୍ରେଷ୍ଠ ଦେଶର ଶ୍ରେଷ୍ଠ ନାଗରିକ ହେବାର ଗୌରବ ଅର୍ଜନ କରିବା ହେଉଚି ଆଜିର ଆହ୍ୱାନ ।

(ବ୍ରହ୍ମପୁରଠାରେ ପ୍ରଦତ୍ତ ଏକ ଭାଷଣରୁ ସଂଗୃହୀତ)

"କଥାଟା ଭଲକରି ନ ବୁଝି ମୁଁ ରାଗୁଛି, ହସୁଛି, ଅନୁକଂପା କରୁଛି । କିନ୍ତୁ କାହିଁକି ? ଧୀର ସ୍ଥିର ରହି ବୁଝିବାରେ ଭଲ କେଉଁଠି ରହିଲା ଅନୁସନ୍ଧାନ କରିବା କି ମୋର କର୍ତ୍ତବ୍ୟ ନୁହେଁ ?"

(୮।୪।୧୯୪୫) ଗାନ୍ଧୀଜୀ




**ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ**

ପାରଂପରିକ ରୀତିରେ ପ୍ରଚଳିତ ଉତ୍କଳର ବହୁ ପର୍ବ-ପର୍ବାଣି ତା'ର ସାମାଜିକ ତଥା ସାଂସ୍କୃତିକ ଜୀବନକୁ ଯୁଗେ ଯୁଗେ ଭୂଷିମନ୍ତ କରି ଆସିଅଛି । ଏହି ପରିପ୍ରେକ୍ଷୀରେ ଶାରଦୀୟ ଦଶହରା ପର୍ବର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ପର୍ବର ମହାନ ଉଦ୍ଦେଶ୍ୟ ହେଉଛି ଦେବୀ ଉପାସନା ; କାରଣ ଦଶହରାର ସିଂହବାହିନୀ ଆଦ୍ୟାଶକ୍ତି ଦେବୀ ଦୁର୍ଗା ପ୍ରବଳ ପ୍ରତାପୀ ମହିଷାସୁରକୁ ନିଧନ କରି ଜଗତର ମଙ୍ଗଳବିଧାନ କରିଥିଲେ । ଦେବୀଙ୍କ ସହ ମହିଷାର ଯୁଦ୍ଧ କନ୍ୟା ବା ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରୁ ଆରମ୍ଭ ହୋଇ ଷୋଳଦିନ ବ୍ୟାପୀ ଅର୍ଥାତ୍ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଚାଲିଥିଲା । ଆଶ୍ୱିନର ଶୁକ୍ଳପକ୍ଷ ଅଷ୍ଟମୀ ଓ ନବମୀ ତିଥିରେ ମହାମାରୀ ହେଲା । ମହିଷାସୁର ସମେତ ଅସୁର ବଂଶ ନିପାତ ହେଲେ । ଶୁକ୍ଳଦଶମୀର ପବିତ୍ର ତିଥିରେ ସ୍ୱର୍ଗ, ମର୍ତ୍ତ୍ୟ ପାତାଳ ତ୍ରିଭୁବନରୁ ଅମଙ୍ଗଳର ଛାୟା ଅପସରି ଯାଇ ଦୁଃଖ ଦୂରହୋଇଥିବାରୁ ଏହାକୁ ଦୁଃଖହା ଦଶମୀ ନାମରେ ନାମିତ କରାଯାଏ । ଏହି ପ୍ରସଙ୍ଗ ଉତ୍କଳର ଆଦି କବି ଶୂଦ୍ରମୁନି ସାରଳା ଦାସଙ୍କ ଚଣ୍ଡୀପୁରାଣରେ ଉଲ୍ଲେଖ ଅଛି ସେ ଲେଖିଛନ୍ତି—

ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଦିନ ହେଲା ମହାମାରୀ
ଅସୁର ଅସୁରୀ ନ ଉବୁରିଲେ ତହିଁରୁ
ନବମୀ ରାତ୍ରରେ ମହାମାରୀ ଯେ ହୋଇଲା
ତେଣୁ ମହାମାରୀ ନବମୀ ତା ନାମ ହେଲା
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଗୁରୁବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ
ତୈତିଳ ନାମେ କରଣ ଯୋଗନାମଧୃତି
ସର୍ବସିଦ୍ଧି ହୋଇଲା ସେ ଦଶମୀର ତିଥି
ସମସ୍ତ ଶୁଭ ମଙ୍ଗଳ ହେଲା ଉତ୍ପତ୍ତି
ତେଣୁ ଦୁଃଖହା ଦଶମୀ ନାମେ ଭବେ ଖ୍ୟାତି ।

ଦଶମୀ ଦିନ ମହାମାରୀରୁ ଉଦ୍ଧାର ପାଇ ଦେବଗଣ ମହାଶକ୍ତି ମହାତେଜୋମୟୀ ଦୁର୍ଗତି ନାଶିନୀ ଦେବୀ ଦୁର୍ଗାଙ୍କର ସ୍ତୁତି ବନ୍ଦନା କରିଥିଲେ । ଏଣୁ ଦେବୀ ଉପାସନା ହିଁ ଏହି ପର୍ବର ପ୍ରକୃତ ମହତ୍ତ୍ୱ । ଦେବୀ ଭାଗବତ ଓ ଚଣ୍ଡୀ ଉଭୟ ଶାସ୍ତ୍ରରେ କୁହାଯାଇଛି ରାମଚନ୍ଦ୍ର ଶରତ କାଳରେ ପ୍ରବଳ ପ୍ରତାପୀ ରାକ୍ଷସ ରାବଣର ନିଧନ ନିମିତ୍ତ ଏହି ତ୍ରିଗୁଣମୟୀ ଦେବୀ ଦୁର୍ଗାଙ୍କର ଆରାଧନା କରିଥିଲେ । କାରଣ ଶରତର ଶେଷ ଶୁକ୍ଳ ପକ୍ଷରେ ଯଦି ଦେବଗଣ ଓ ରାମଚନ୍ଦ୍ର ଏହି ବାସନ୍ତୀ ବନ ଦୁର୍ଗାଙ୍କର ଅକାଳ ବୋଧନ କରାଇ ନଥାନ୍ତେ ତେବେ ରାମ ରାବଣର ଯୁଦ୍ଧ ଭିନ୍ନ ରୂପ ନେଇଥାନ୍ତା ।

"ରାବଣସ୍ୟ ବଧାର୍ଥାୟ ରାମସ୍ୟାନୁଗ୍ରହାୟଚ
ଅକାଳେ ବ୍ରହ୍ମଣା ବୋଧେ ଦେବ୍ୟାସ୍ତୟ କୃତପୁରା" ।

ଦେବୀ; ରାମଚନ୍ଦ୍ର ଓ ଦେବଗଣଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ସପ୍ତମୀ ତିଥିରେ ରାମଚନ୍ଦ୍ରଙ୍କ ଧନୁର୍ବାଣରେ ପ୍ରବେଶ କରିଥିଲେ ଓ ଅଷ୍ଟମୀ ତିଥିରେ ରାମ, ରାବଣ ମଧ୍ୟରେ ମହାଯୁଦ୍ଧ ସଂଘଟିତ ହୋଇଥିଲା । ଏହି ଯୁଦ୍ଧରେ ରାବଣ, ଅଷ୍ଟମୀ ଓ ନବମୀର ମହାସନ୍ଧିକ୍ଷଣରେ ନିହତ ହୋଇଥିବାରୁ ଦଶମୀ ଦିନ ରାମଚନ୍ଦ୍ର ବିଜୟା ଦଶମୀ ପାଳନ କରିଥିଲେ । କେହି କେହି ଏହି ଦଶମୀ ଦିନ ପ୍ରଭୁ ରାମଚନ୍ଦ୍ର ରାବଣର ନିଧନ ନିମିତ୍ତ ଲଙ୍କାପୁରକୁ ଜୈତ୍ର ଯାତ୍ରା କରିଥିବାରୁ ଏହାକୁ ବିଜୟା ଦଶମୀ ନାମରେ ଅଭିହିତ କରନ୍ତି ।

ଏହି ଦଶହରା ପର୍ବ ବର୍ଷର ଆଉ ଗୋଟିଏ ଦିନ ଅର୍ଥାତ୍ ଜ୍ୟେଷ୍ଠ ମାସ ଶୁକ୍ଳ ଦଶମୀ ତିଥିରେ ମଧ୍ୟ ପାଳିତ ହୁଏ । ଏହାକୁ ଗଙ୍ଗା ଦଶହରା ବୋଲି କୁହାଯାଏ । କାରଣ ଏହି ତିଥିରେ ଦେବୀ ଗଙ୍ଗା ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରି ଜଗତର ତ୍ରିତାପ ନାଶ କରିଥିଲେ । ତେଣୁ ଏହି ଜ୍ୟେଷ୍ଠ ମାସ ଦଶମୀ ତିଥିରେ ଗଙ୍ଗା ନଦୀରେ ସ୍ନାନକରି ଦେବୀ ଗଙ୍ଗାଙ୍କୁ ଆରାଧନା କଲେ ମନୁଷ୍ୟର ଦଶବିଧ ପାପ ଖଣ୍ଡିତ ହୋଇଥାଏ । ଏଥିପାଇଁ ଏହି ତିଥିକୁ ଗଙ୍ଗାଦଶହରା ବା ଦଶବିଧ ପାପ ହରଣ ଦିବସ ନାମରେ ନାମିତ କରାଯାଏ କିନ୍ତୁ ଦଶହରା କହିଲେ ମୁଖ୍ୟତଃ ସମସ୍ତେ ଆଶ୍ୱିନ ମାସ ଶୁକ୍ଳପକ୍ଷ ପବିତ୍ର ଦଶମୀ ତିଥିକୁ ହିଁ ବୁଝନ୍ତି, କାରଣ ଏହା ଭାରତର ସର୍ବଜନ ବିଦିତ ।

ଏହି ପବିତ୍ର ଶାରଦୀୟ ଦଶହରା ଉତ୍ସବ ପର୍ଯ୍ୟାୟକ୍ରମେ ମୁଖ୍ୟତଃ ଆଶ୍ୱିନ ମାସ କୃଷ୍ଣପକ୍ଷ ମୂଳାଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ

ପର୍ଯ୍ୟନ୍ତ ଷୋଳଦିନ ବ୍ୟାପୀ ପାଳିତ ହୋଇଥାଏ । ଆଶ୍ୱିନର ଏହି କୃଷ୍ଣପକ୍ଷ ମୂଳାଷ୍ଟମୀ ତିଥିରେ ସହସ୍ରକୁମ୍ଭାଭିଷେକ ଏବଂ ଉତ୍କଳର ପ୍ରଧାନ ଦେବୀ ପୀଠମାନଙ୍କରେ ଘଟସ୍ଥାପନପୂର୍ବକ ଦେବୀ ଆବାହନ କରାଯାଏ । ଏହା ଷୋଳ ପୂଜା ନାମରେ ନାମିତ କିନ୍ତୁ ମହାସପ୍ତମୀଠାରୁ ମହାନବମୀ ପର୍ଯ୍ୟନ୍ତ ପୂଜାକୁ ତ୍ରିଦିନାତ୍ମକ ପୂଜା କୁହାଯାଏ । ମହାସପ୍ତମୀ ଦିନ ମୃଣ୍ମୟୀ ପ୍ରତିମା ଓ ଘଟସ୍ଥାପନ କରାଯାଇ ପୂଜା ଆରମ୍ଭ ହୁଏ । ମହାଷ୍ଟମୀ ଦିନ ଜଗତଜନନୀ ଦେବୀ ଦୁର୍ଗାଙ୍କ ତୁଷ୍ଟି ସାଧନ ପାଇଁ ବଳିଦାନ କରାଯାଉଥାଏ ଏବଂ ମହାନବମୀରେ ରକ୍ତମୁଖା ଦେବୀଙ୍କୁ ଶାନ୍ତ କରିବା ପାଇଁ ଶାନ୍ତି ବୋଦା ପଡ଼େ । ଦଶମୀ-ଦିନ ମହାସମାରୋହରେ ମୃଣ୍ମୟୀ ଦେବୀ ପ୍ରତିମା ଓ ଘଟ ବିସର୍ଜନ କରାଯାଏ । ଦଶମୀ ଦିନ ଗୁରୁବାର ପଡ଼ିଲେ ଗୃହିଣୀମାନେ ପରିବାରର ମଙ୍ଗଳକାମନା କରି ସୁଦଶାବ୍ରତ ପାଳନ କରନ୍ତି । ଭାଦ୍ରବ ମାସ ଶୁକ୍ଳ ପକ୍ଷ ଷଷ୍ଠୀଠାରୁ ଆରମ୍ଭ ହୋଇଥିବା ସୋମନାଥ ବ୍ରତର ଉଦ୍ୟାପନ ମଧ୍ୟ ଏହି ଦଶହରା ତିଥିରେ କରାଯାଇଥାଏ ।

ପୁରୀ ଶ୍ରୀମନ୍ଦିରରେ ଶାକ୍ତ ପଦ୍ଧତିରେ ଦୁର୍ଗାମାଧବ ଉପାସନାର ପରଂପରାକୁ ଭିତ୍ତି କରି ଶରତ ଗୁଣ୍ଡିଚ୍ଚ ବିଧି ଯଥା ରୀତି ପାଳନ କରାଯାଏ । ଦଶମୀ ଦିନ କ୍ଷେତ୍ରାଧିଶ୍ୱରୀ ବିମଳାଦେବୀଙ୍କ ଷୋଳଦିନ ପୂଜା ସମାପ୍ତ ହୁଏ । ଶ୍ରୀଜଗନ୍ନାଥଙ୍କ ଚଳନ୍ତି ବିଗ୍ରହ ମଦନମୋହନ ଜଗନ୍ନାଥବଲ୍ଲଭ ମଠ ଦଶହରା ପ୍ରାଙ୍ଗଣକୁ ଯାତ୍ରା କରନ୍ତି ଓ ଏହାର ପରଦିନ ଅର୍ଥାତ୍ ଏକାଦଶୀ ତିଥିରେ ଦେବୀ ଦୁର୍ଗାଙ୍କର ଢୋଧାଚ୍ଛିତା ମୃଣ୍ମୟୀ ପ୍ରତିମାମାନଙ୍କର ସିଂହଦ୍ୱାର ନିକଟରେ ମେଲଣ ହୁଏ । ଏହାକୁ ଗୋସାଣିଯାତ ଏବଂ ଏହି ତିଥିକୁ ଗୋସାଣୀ ଏକାଦଶୀ କୁହାଯାଏ ।

ଦେବୀ ଉପାସନାର ଭିତ୍ତିଭୂମି ଉପରେ ଏହି ପୂଜା ପର୍ବଟି ବର୍ଷକୁ ଦୁଇଥର ଧର୍ମପ୍ରାଣ ହିନ୍ଦୁ ପାଳନ କରେ । ଶରତ ଋତୁର ଆଶ୍ୱିନ ମାସ ଶୁକ୍ଳପକ୍ଷର ପୂଜାକୁ ଦେବୀ ପୂଜା ଏବଂ ବସନ୍ତ ଋତୁ ଚୈତ୍ର ମାସ ପୂଜାକୁ ବାସନ୍ତୀ ପୂଜା କୁହାଯାଏ । ବସନ୍ତ କାଳରେ ଉତ୍ଫୁଲ୍ଲିତା ଧରଣୀ ମାତାର ବନ୍ଦନା ଗାଇବାକୁ ଯାଇ ମାନବ ଜାତି ଭକ୍ତି ଆନନ୍ଦ ଚିତ୍ତରେ ବାସନ୍ତୀ ଦୁର୍ଗାଙ୍କ ପୂଜାର ଆୟୋଜନ କରେ ମାତ୍ର ଶାରଦୀୟ ପୂଜାହିଁ ଦେବୀଙ୍କର ସାର୍ବଜନୀନ ପୂଜାର ଲୋକପ୍ରିୟତା ଅର୍ଜନ କରିଛି ।

ଏହି ଶାରଦୀୟ ଦୁର୍ଗୋତ୍ସବକୁ କେହି କେହି କୃଷି ମହୋତ୍ସବର ପ୍ରକୃଷ୍ଟ ସମୟ ବୋଲି କହିଥାନ୍ତି । କାରଣ ଶରତ ଋତୁ ହେଉଛି ଶସ୍ୟ ସମୃଦ୍ଧିର ଋତୁ । ଶାରଦୀୟ ଶସ୍ୟ ସମ୍ଭାରର ଶୋଭା-ଶ୍ରୀରେ ଧରଣୀରାଣୀ ପରିପୂର୍ଣ୍ଣା ହୋଇଥାଏ ।

ପୁନରାୟ ଏହି ଋତୁରେ ଦେବୀ ନବପଲ୍ଲବିତ କଦଳୀ ପତ୍ର, ବେଲପତ୍ର, ହଳଦୀ ପତ୍ର ଆଦି ନବ ପତ୍ରିକାରେ ପୂଜା ପାଉଥିବାରୁ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଦେବୀ ଦୁର୍ଗା ମହିଷାସୁରମର୍ଦ୍ଦିନୀ ରୂପେ ପୂଜା ପାଇବାର ବହୁ ପୂର୍ବରୁ ଶସ୍ୟର ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜା ପାଉଥିଲେ କାରଣ ବୈଦିକ ତଥା ତନ୍ତ୍ରଯୁଗର ଏ ମାଟିର ଆର୍ଯ୍ୟପୁତ୍ର ଶସ୍ୟର ସଂବୃଦ୍ଧି ପାଇଁ ଏହି ସଂସ୍ଥାପି... ଶକ୍ତି ଦେବୀ ଦୁର୍ଗାଙ୍କର ତୁଷ୍ଟି ସାଧନ ପାଇଁ ଆରାଧ... କରିଆସିଛି । ପଶ୍ଚିମ ଓଡ଼ିଶାରେ ଆଦିବାସୀମାନଙ୍କ ପ୍ରଚଳିତ କରମସାନୀ ପୂଜା ଏହାର ପ୍ରତୀକ । ସେହିମାନଙ୍କର ପ୍ରା... ପୂଜା କୃଷି ପର୍ବରୂପେ ଆଶ୍ୱିନ ଶୁକ୍ଳପକ୍ଷ ସପ୍ତମୀଠାରୁ ଏକାଦ... ପର୍ଯ୍ୟନ୍ତ ନୃତ୍ୟଗୀତ, ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳିତ ହୋ... ଥାଏ ।

ବିବିଧ କାରଣରୁ ଏହି ଦଶହରା ପର୍ବ ଭାରତର ଦୂରପଲ୍ଲୀରେ... ସର୍ବତ୍ର ମହାସମାରୋହରେ ପାଳନ କରାଯାଏ । ଏହି ପର୍ବର ମହତ୍ୱ ବିଷୟରେ ଦେବୀ ପୁରାଣରେ କୁହାଯାଇଛି ଯେ ଏହା ଏକ ମହାନ ପବିତ୍ର ବ୍ରତ ଏବଂ ଏହି ବ୍ରତ ପାଳନ କଲେ ସିଦ୍ଧି... ଲାଭ ହୁଏ ଓ ଶତ୍ରୁମାନେ ପରାଜିତ ହୁଅନ୍ତି । କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭର ପ୍ରାକ୍‌କାଳରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ବନଦୁର୍ଗାଙ୍କର ଆରାଧନା କରିବା ପାଇଁ ଉପଦେଶ ଦେଇଥିଲେ । ଇତିହାସ ପ୍ରସିଦ୍ଧ ଛତ୍ରପତି ଶିବାଜୀ ମଧ୍ୟ ମୋଗଲମାନଙ୍କ ସହ ଯୁଦ୍ଧ କରିବା ପାଇଁ ଦେବୀ ଦୁର୍ଗାଙ୍କର କରୁଣା ଭିକ୍ଷା କରିଥିଲେ । ଉତ୍କଳରେ ପ୍ରଚଳିତ ଏହି ଶରତକାଳୀନ ଦଶହରା ଉତ୍ସବ ସମସ୍ତ ପର୍ବପର୍ବାଣି ମଧ୍ୟରେ ତାହାର ଉତ୍କର୍ଷତା ବଜାୟ ରଖିଛି । କେହି କେହି ଏହି ପର୍ବକୁ ପଡ଼ୋଶୀ ସଂସ୍କୃତିର ପ୍ରଭାବ ବୋଲି କୁହନ୍ତି କିନ୍ତୁ ଓଡ଼ିଶାର ଏହା ସଂପୂର୍ଣ୍ଣ ନିଜସ୍ୱ ଏବଂ କୌଣସି ପ୍ରଭାବରେ ପ୍ରଭାବିତ ନୁହଁ ବରଂ ଏହା ଓଡ଼ିଶାର ଏକ କୌଳିକ ଅନୁଷ୍ଠାନ । ଘଟ ପୂଜା ମାଧ୍ୟମରେ ଏହି ପର୍ବ ଓଡ଼ିଶାରେ ବହୁ କାଳରୁ ପ୍ରଚଳିତ ହୋଇ ଉତ୍କଳୀୟ ସଂସ୍କୃତି ଓ ପରଂମ୍ପରା ମଧ୍ୟରେ ସାମିଲ ହୋଇଯାଇଛି, ଯାହାର ନିଦର୍ଶନ ସ୍ୱରୂପ ଆଜି ବି ବିଜୟା ଦଶମୀର ପବିତ୍ର ତିଥିରେ ଖଣ୍ଡାୟତର ଖଣ୍ଡା, ନାପିତର କ୍ଷୁର ନହୁରୁଣୀ, ରଜକର ଚୂଡ଼ାଟୀ ଏବଂ ବୃତ୍ତିକାରମାନଙ୍କର ସାଜ ସରଂଜାମ ମାତୃଘଟ ସମୀପରେ ପୂଜିତ ହୋଇଥାଏ ।

ଦଶହରା ଏକ ସାର୍ବଜନୀନ ପୂଜା । ଏହି ମହାପୂଜା, ମହାପାର୍ବଣ । ଓଡ଼ିଶାର ସୁଦୃଢ଼ ପରଂପରା ତଥା ସଂସ୍କୃତି ମଧ୍ୟରେ ସୁଶୃଙ୍ଖଳିତ ରୂପେ ସମସ୍ତ ରକ୍ଷଣଶୀଳତା ଓ ସଂକୀର୍ଣ୍ଣତାକୁ ଠେଲିଦେଇ ଯୁଗଯୁଗ ଧରି ପାଳିତ ହୋଇ ଆସୁଅଛି–ସମଗ୍ର ମାନବ ଜାତିକୁ ପ୍ରୀତି, ମୈତ୍ରୀ, ମମତ୍ୱ ବୋଧରେ ଚିର ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଐକ୍ୟ ସଂହତି ମହାମିଳନର ମହାନ ପ୍ରତୀକ ରୂପେ ଆଜି ଦଶହରା ପର୍ବ ଦଣ୍ଡାୟମାନ । ଜଗତବାସୀ ଆଜି ବିଜୟା ଦଶମୀର ଏହି ଶୁଭ ଅବସରରେ ସେହି ପରମେଶ୍ୱରୀ ମହାବିଦ୍ୟା ମହାମାୟା ଦୁର୍ଗତିନାଶିନୀ ଦେବୀ ଦୁର୍ଗାଙ୍କ ନିକଟରେ ଅନ୍ତରରେ ଭକ୍ତିପୂତ ନିବେଦନ ଜଣାଇ ବିନତି ପ୍ରଣତି ଜାଣି କହିଥାଏ–

"ସର୍ବ ମଙ୍ଗଲ୍ୟ ମାଂଗଲ୍ୟେଶିବେ ସର୍ବାର୍ଥ ସାଧିକେ ।
ଶରଣ୍ୟେ ତ୍ର୍ୟମ୍ବିକେ ଗୌରୀ ନାରାୟଣୀ ନମୋସ୍ତୁତେ ॥"

---

ଭାରତୀ ମଠ ଲେନ୍
ପୁରୀ



# ଓଡ଼ିଶାରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା

ଶ୍ରୀ ନୀଳାମ୍ବର ଦାସ

ତଥାକଥିତ ଅସ୍ପୃଶ୍ୟ ହିନ୍ଦୁ ଜାତିମାନଙ୍କୁ ହିନ୍ଦୁ ସମାଜରୁ ପୃଥକ କରି ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର ନିର୍ବାଚକ ମଣ୍ଡଳ ( Electorate ) ସୃଷ୍ଟିର ନିଷ୍ପତ୍ତି ବହନ କରୁଥିବା ୧୯୩୨ ମସିହାର ଆଦ୍ୟ ଭାଗରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ବିଲାତ ପାର୍ଲିଆମେଣ୍ଟରେ ଘୋଷିତ ସାଂପ୍ରଦାୟିକ ଅଧିନିର୍ଣ୍ଣୟ ( Communal Award ) ରେ ନିହିତ ବ୍ରିଟିଶ ବିଭାଜନ "ବିଭାଜନ ଓ ଶାସନ" ନୀତିର ଗଠନମୂଳକ ପ୍ରତିକ୍ରିୟା ସ୍ୱରୂପ ଜନ୍ମନେଲା ମହାତ୍ମା ଗାନ୍ଧୀଙ୍କ "ହରିଜନ ଆନ୍ଦୋଳନ" । ଏହି ଆନ୍ଦୋଳନକୁ ସଫଳ କରିବା ପାଇଁ ଶକ୍ତି ଯୋଗାଇବା ଉଦ୍ଦେଶ୍ୟରେ ଗାନ୍ଧୀଜୀ ସାରା ଭାରତରେ ଗସ୍ତ କରିବା ଆରମ୍ଭ କରିଦେଲେ ଓ ତାଙ୍କର ଏହି ଗସ୍ତକୁ "ହରିଜନ ଗସ୍ତ" କୁହାଗଲା ।

ମଧ୍ୟପ୍ରଦେଶ ଗସ୍ତ ଶେଷ ପରେ ଗାନ୍ଧୀଜୀଙ୍କର ଓଡ଼ିଶା ଗସ୍ତ ଆରମ୍ଭ ହେଲା । ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀ ଏହାର ମୁଖ୍ୟ ଆୟୋଜକ ଥିଲେ । ଗାନ୍ଧୀଜୀ ୧୯୩୪ ମସିହା ମଇମାସ ୫ ତାରିଖ ଦିନ ଝାରସୁଗୁଡ଼ା ଦେଇ ସମ୍ବଲପୁରରେ ପହଞ୍ଚିଲେ ଓ ସେଠାରୁ ଅନୁକୂଳ ଭାବେ ୭ ତାରିଖ ରାତିରେ ତାଳଚେର ପୁରୀ ରେଲ ଯୋଗେ ପୁରୀରେ ପହଞ୍ଚିଲେ । ପୁରୀ ରେଳ ଷ୍ଟେସନଠାରେ ସ୍ୱର୍ଗତଃ ପଣ୍ଡିତ ନୀଳକଣ୍ଠ ଦାସ ସମ୍ବର୍ଦ୍ଧନାର ଆୟୋଜନରେ ଲାଗିଥାଆନ୍ତି । ଗାଡ଼ି ପୁରୀ ଷ୍ଟେସନରେ ଲାଗିବା ମାତ୍ରେ ବିଶାଳ ଜନସମୁଦ୍ର ଗାନ୍ଧୀଜୀଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ । ୮ ତାରିଖ ଦିନ ମୌନ ଦିବସର ଉଦ୍‌ଯାପନ ପରେ ଗାନ୍ଧୀଜୀ ଘୋଷଣା କଲେ ଯେ, ସେ ତାଙ୍କର ସମଗ୍ର ଓଡ଼ିଶା ଗସ୍ତ ଚାଲି ଚାଲି ଶେଷ କରିବେ । ତାଙ୍କର ପୂର୍ବ ଗସ୍ତକ୍ରମର ପରିବର୍ତ୍ତନ ହେଲା । ଘୋଷିତ ହେଲା ଯେ ସେ ପୁରୀ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଦେଇ ୧୬ ତାରିଖ ଦିନ କଟକ ପହଞ୍ଚି ସେହି ରାତିରେ ପାଟନା ଅଭିମୁଖେ ରେଳଗାଡ଼ି ଧରିବେ । ପୁରୀ ଜିଲ୍ଲାର କର୍ମୀ ମହଲରେ ଆନନ୍ଦ ଉଲ୍ଲାସ ଖେଳିଯିବା ବେଳକୁ କଟକ ଓ ବାଲେଶ୍ୱର ଜିଲ୍ଲାର କର୍ମୀ ମହଲରେ ହତାଶାର ଛାୟା ଖେଳିଗଲା । କାରଣ ପୂର୍ବରୁ ଗାନ୍ଧୀଜୀଙ୍କର ପୁରୀରୁ କଟକ ଆସି କଟକ ଜିଲ୍ଲାର ସ୍ଥିର ହୋଇଥିବା କେତେକ ଅଞ୍ଚଳକୁ ଯାଇ ଭଦ୍ରକ, ସୋରୋ, ବାଲେଶ୍ୱର ଦେଇ ପାଟନା ଯିବାର ଓ ପାଟନାରୁ କଲିକତା ଯାଇ ବଙ୍ଗଳା ଗସ୍ତ କରିବାର ଗସ୍ତକ୍ରମ ସ୍ଥିର ହୋଇଥିଲା ।

୯ ତାରିଖ ସକାଳ ପ୍ରାର୍ଥନା ପରେ ଗାନ୍ଧୀଜୀ ପଦଯାତ୍ରା ଆରମ୍ଭ କରିଦେଲେ । ପୁରୀ ସହରଠାରୁ ପାଞ୍ଚମାଇଲ ଦୂରରେ ଅବସ୍ଥିତ ବୀରହରେକୃଷ୍ଣପୁରରେ ତାଙ୍କର ପ୍ରଥମ ରହଣୀ ହେଲା । କଟକ ଓ ବାଲେଶ୍ୱର ଜିଲ୍ଲାରୁ ବହୁ କର୍ମୀ ସେଠାରେ ଗାନ୍ଧୀଜୀଙ୍କୁ ଭେଟି ପୂର୍ବନିର୍ଦ୍ଧାରିତ ଗସ୍ତକ୍ରମରେ ଥିବା ସ୍ଥାନମାନଙ୍କୁ ସେ ନ ଗଲେ କର୍ମୀମାନେ ଅପଦସ୍ଥ ହେବେ ଓ ହରିଜନ ଆନ୍ଦୋଳନ ସେସବୁ ଅଞ୍ଚଳରେ ବାଧାପ୍ରାପ୍ତ ହେବ ବୋଲି ଦର୍ଶାଇଲେ । ଗାନ୍ଧୀଜୀ ଧୈର୍ଯ୍ୟ ଓ ସହାନୁଭୂତିର ସହ ସବୁ ଶୁଣିଲେ ମଧ୍ୟ ତାଙ୍କର ନିଷ୍ପତ୍ତିରେ ଅଟଳ ରହିଲେ । ବଙ୍ଗଳାର କର୍ମୀମାନଙ୍କୁ ସେ ବୁଝାଇ ପାରିଲେ ବଙ୍ଗଳା ଗସ୍ତ ବନ୍ଦ ରଖି ପାଟନାରୁ ପୁଣି ଓଡ଼ିଶା ଫେରି ପାରନ୍ତି ବୋଲି ଗାନ୍ଧୀଜୀ ସୂଚନା ଦେଲେ ।

ଗାନ୍ଧୀଜୀଙ୍କ ଦାଣ୍ଡମୁକୁନ୍ଦପୁରରେ ବଙ୍ଗଳାର ହରିଜନ ସେବକ ସଂଘର ସଂପାଦକ ଶ୍ରୀଯୁକ୍ତ ସତୀଶ ଚନ୍ଦ୍ର ଦାସଗୁପ୍ତ ଆସି ଭେଟିଲେ ଏବଂ ଗାନ୍ଧୀଜୀ ଓଡ଼ିଶାରେ ତାଙ୍କର ଗସ୍ତ ସମୟ ବୃଦ୍ଧି କରିବାକୁ ଇଚ୍ଛା ପ୍ରକାଶ କରିବାରୁ ବଙ୍ଗଳାର ହରିଜନ ସେବକସଂଘ ତରଫରୁ ସେ ଗାନ୍ଧୀଜୀଙ୍କ ବଙ୍ଗଳାଗସ୍ତ ବନ୍ଦ କରିବା ପ୍ରସ୍ତାବରେ ସମ୍ମତି ଜଣାଇଲେ । ତେଣୁ ଗାନ୍ଧୀଜୀ ପାଟନାରୁ ଫେରି ଆସିବେ ବୋଲି ଜାଣି କଟକ ଓ ବାଲେଶ୍ୱର ଜିଲ୍ଲାର କର୍ମୀ ମହଲରେ ଅପୂର୍ବ ଉତ୍ସାହ ଫେରି ଆସିଲା ।

ଗାନ୍ଧୀଜୀ ବୀରହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳର ବାଦୁଆ ଆଶ୍ରମ, ବୀରପୁରୁଷୋତ୍ତମପୁର, ଦାଣ୍ଡମୁକୁନ୍ଦପୁର, ପିପିଲି, ବାଲିଅନ୍ତା ପ୍ରଭୃତି ଅଞ୍ଚଳମାନ ଦେଇ ୧୫ ତାରିଖ ଦିନ କଟକ ଜିଲ୍ଲାର ସୀମାରେ ପ୍ରବେଶ କଲେ । ପ୍ରତି ରହଣୀ କ୍ଷେତ୍ରରେ ସେ ପ୍ରାର୍ଥନାସଭା, ସୂତାକଟା ଓ ହରିଜନ ପାଇଁ ଅର୍ଥ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଅସ୍ପୃଶ୍ୟତା ନିବାରଣ ସମ୍ପର୍କରେ ଆବେଗପୂର୍ଣ୍ଣ ଭାଷଣ ଦେଉଥାନ୍ତି । ତାଙ୍କର ଏହି ଗସ୍ତ ସୃଷ୍ଟିଥିଲା ଚହଳ ପକାଇ ଦେଲା ।

ପୁରୀ ଜିଲ୍ଲା ଗସ୍ତ ସମୟରେ ସ୍ୱର୍ଗତଃ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଅଭ୍ୟର୍ଥନା ଆୟୋଜନରେ ସ୍ୱର୍ଗତଃ ପଣ୍ଡିତ ଲିଙ୍ଗରାଜ ମିଶ୍ର, ସ୍ୱର୍ଗତଃ ଅନନ୍ତ ମିଶ୍ର, ସ୍ୱର୍ଗତଃ ଜଗନ୍ନାଥ ରଥ, ଶ୍ରୀ ସତ୍ୟବାଦୀ ନନ୍ଦ ପ୍ରଭୃତି ପୁରୀ ଜିଲ୍ଲାର ବିଶିଷ୍ଟ କର୍ମୀମାନେ ସାହାଯ୍ୟ କରିଥିଲେ ।

୧୬ ତାରିଖ ଦିନ ସନ୍ଧ୍ୟାବେଳେ ପୁରୀଘାଟଠାରେ ଏକ ବିରାଟ ସାଧାରଣ ସଭାରେ ବକ୍ତୃତା ଦେଲେ ଓ ସ୍ୱର୍ଗତଃ ସରଳା ଦେବୀଙ୍କ ଦ୍ୱାରା କଟକ ରାମଚନ୍ଦ୍ର ଭବନରେ ଆୟୋଜିତ ଏକ ମହିଳା ସଭାରେ ଯୋଗଦେଇ ସେହିଦିନ ରାତରେ କଟକ ରେଳ ଷ୍ଟେସନରୁ ରେଳ ଯୋଗେ ପାଟନା ଅଭିମୁଖେ ଯାତ୍ରା କଲେ ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଗାନ୍ଧୀଜୀ ପଦଯାତ୍ରା ଉଦ୍ଦେଶ୍ୟରେ ପାଟନାରୁ ପୁଣି ଓଡ଼ିଶା ଫେରି ଆସିଲେ । ବୈରୀ ଷ୍ଟେସନଠାରେ ରେଳରୁ ଓହ୍ଲାଇ ଗାନ୍ଧୀଜୀ କଟକ ଓ ବାଲେଶ୍ୱର ଜିଲ୍ଲାରେ ତାଙ୍କର ପଦଯାତ୍ରା ଆରମ୍ଭ କଲେ ।

କଟକ ଜିଲ୍ଲାରେ କୋଡ଼ିଏଟି ସ୍ଥାନରେ ଗାନ୍ଧୀଜୀଙ୍କ ରହଣୀ ବ୍ୟବସ୍ଥା ହୋଇଥିଲା । ପୂର୍ବ ଗସ୍ତ ଅପେକ୍ଷା ଏଥର ଜନଗହଳି ବହୁଗୁଣରେ ବୃଦ୍ଧି ପାଇଥିଲା । ସାଙ୍ଗରେ ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀ, ସ୍ୱର୍ଗତଃ ଆଚାର୍ଯ୍ୟ ହରିହର ଦାସ, ସ୍ୱର୍ଗତଃ ପଣ୍ଡିତ ନୀଳକଣ୍ଠ ଦାସ, ସ୍ୱର୍ଗତଃ ରମା ଦେବୀ ଓ ଶ୍ରୀମତୀ ମାଳତୀ ଦେବୀ ପ୍ରଭୃତି ଚାଲିଥାଆନ୍ତି । ମଝିରେ ମଝିରେ ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ବିଶିଷ୍ଟ ଜାତୀୟ ନେତା, ବିଶିଷ୍ଟ ବ୍ୟକ୍ତି-ବିଶେଷମାନେ ଯଥା :— ସ୍ୱର୍ଗତଃ ବିଧାନ ଚନ୍ଦ୍ର ରାୟ, ସ୍ୱର୍ଗତଃ ଏମ୍. ଆର. ମାସାନି, କୋଟିପତି ସ୍ୱର୍ଗତଃ ଘନଶ୍ୟାମ ଦାସ ବିରଳା ପ୍ରଭୃତି ଆସି ଗାନ୍ଧୀଜୀଙ୍କୁ ଭେଟୁଥାଆନ୍ତି, ଗୁରୁତ୍ୱପୂର୍ଣ୍ଣ ବିଷୟରେ ପରାମର୍ଶ କରୁଥାଆନ୍ତି ଓ ଗାନ୍ଧୀଜୀଙ୍କ ସଂସ୍ପର୍ଶ ଲାଭକରି କିଛି ରାସ୍ତା ପଦଯାତ୍ରାରେ ନିଜକୁ ସାମିଲ କରିଦେଇ ତୀର୍ଥଯାତ୍ରାର ଆନନ୍ଦ ଅନୁଭବ କରୁଥାଆନ୍ତି ।

କଟକ ଜିଲ୍ଲାରେ ପଦଯାତ୍ରାର ସକଳ ପ୍ରକାର ଆୟୋଜନର ବ୍ୟବସ୍ଥା କରିବା ପାଇଁ ସ୍ୱର୍ଗତଃ ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀଙ୍କ ନେତୃତ୍ୱରେ ଗୋଟିଏ ଆଗୁଆ ଦଳ ଚାଲିଥାଆନ୍ତି ।

ବାଲେଶ୍ୱର ଜିଲ୍ଲାରେ ମହତାବ ବାବୁ, ସର୍ଦ୍ଦାରଜୀ (ସ୍ୱର୍ଗତଃ ସୁରେନ୍ଦ୍ର ନାଥ ଦାସ), ଗୋକଳି ବାବୁ (ସ୍ୱର୍ଗତଃ ଗୋକୁଳାନନ୍ଦ ମହାନ୍ତି) ପ୍ରଭୃତି ଓ ମୁଁ ଗାଁ ଗାଁ ବୁଲି ଅର୍ଥ ସଂଗ୍ରହ ଓ ଗାନ୍ଧୀଜୀଙ୍କର ରହଣୀ ସ୍ଥଳମାନ ସ୍ଥିରକରି ସମସ୍ତ ପ୍ରକାର ଆୟୋଜନ କରୁଥିଲୁ । ସେତେବେଳକୁ ମୋର ଘର ସଂପୂର୍ଣ୍ଣ ପୋଡ଼ି ଯାଇଥାଏ, ମୋ ସ୍ତ୍ରୀ ପେଟରେ ଏପେଣ୍ଡି-ସାଇଟିସ ରୋଗରେ ଅଚେତନ ପ୍ରାୟ ରହୁଥାଆନ୍ତି ଓ ଶିଶୁପୁତ୍ର ବଟକୃଷ୍ଣ କାନରେ ମେଷ୍ଟୋଏଡେସିସ୍ ରୋଗ ଯୋଗୁ ଭୀଷଣ କଷ୍ଟ ପାଉଥାଏ । ସେମାନଙ୍କ ପ୍ରତି ମୋର କର୍ତ୍ତବ୍ୟ ଓ ବ୍ୟକ୍ତିଗତ ଦୁଃଖ ଦୈନ୍ୟ ପ୍ରତି ଭ୍ରୂକ୍ଷେପ ନ କରି ଏକ ଅଦ୍ଭୁତ ଅଜଣା ଅନ୍ତର୍ନିହିତ ଆକର୍ଷଣରେ ଆକର୍ଷିତ ହୋଇ ଗାନ୍ଧୀଜୀଙ୍କ ଗସ୍ତ ଆୟୋଜନରେ ମାତି ଯାଇଥାଏ ।

ଯାଜପୁରଠାରେ କଟକ ଜିଲ୍ଲା ଗସ୍ତ ଶେଷକରି ସାତ... ମଞ୍ଜୁରୀଠାରେ ବାଲେଶ୍ୱର ଜିଲ୍ଲାରେ ପଦାର୍ପଣ କଲେ... କିନ୍ତୁ ଆମର ଆନନ୍ଦ ଉଲ୍ଲାସ ଦୀର୍ଘସ୍ଥାୟୀ ହେଇନାହିଁ । ଦ... ଦିନର ଅନାବୃଷ୍ଟି ପରେ ବର୍ଷା ଆରମ୍ଭ ହୋଇ ଲଗାତାର ଲ... ରହିଲା । ଚାତକ ପରି ବର୍ଷାକୁ ଚାହିଁ ରହିଥିବା ଚାଷୀଙ୍କ... ପ୍ରତୀକ୍ଷା ଶେଷ ହୋଇ ଅଟକି ରହିଥିବା ଚାଷକାର୍ଯ୍ୟ ଆର... କରିବାର ସୁଯୋଗ ଆସିଗଲା । ଗାନ୍ଧୀଜୀ ଓଡ଼ିଶାର ଦୈନ୍ୟ ଅନ୍ତରରେ ଅନୁଭବ କରିପାରି ପଦଯାତ୍ରା ସମୟରେ କୌଣସି ଏକ ସଭାରେ କହିଥିଲେ — "ଓଡ଼ିଶା ହେଉଛି ଭାରତୀୟ ଦାରିଦ୍ର୍ୟର ପ୍ରତିଫଳନ" । ତୋଡ଼ଙ୍ଗାଠାରେ ଗାନ୍ଧୀଜୀ ମୌନ ଦିବସର ଉଦ୍‌ଯାପନ ପରେ ପ୍ରାର୍ଥନା ସଭାରେ ଘୋଷଣା କଲେ ଯେ ଏଣିକି ଚାଷକାମ ବିଧିବଦ୍ଧ ଭାବେ ଚାଲିବା ଆବଶ୍ୟକ । ତାଙ୍କର ପଦଯାତ୍ରା ଚାଲୁ ରହିଲେ ଚାଷକାମ ବାଧାପ୍ରାପ୍ତ ହେବ । ତେଣୁ ସେ ସିଧା ଭଦ୍ରଖ ପର୍ଯ୍ୟନ୍ତ ଏକଦମରେ ଚାଲିଯିବେ ଓ ସେଠାରୁ ରେଳ ଧରିବେ । ସେହି ନିଷ୍ପତ୍ତି ଫଳରେ ସେ ପୂର୍ବ ନିର୍ଦ୍ଧାରିତ ରହଣୀ ସ୍ଥଳ ନଳାଙ୍ଗଠାରେ ନ ରହି ଏକାଦମରେ ଚାଲି ଚାଲି ଆସି ସ୍ୱର୍ଗତଃ ଜୀବରାମଜୀ କଲ୍ୟାଣଜୀଙ୍କ ଭଦ୍ରଖସ୍ଥିତ ଗରଦପୁର ଆଶ୍ରମରେ ପହଞ୍ଚିଗଲେ । ଗାନ୍ଧୀଜୀଙ୍କ ପଦଯାତ୍ରା ବନ୍ଦ ହେବାରୁ କର୍ମୀ ମହଲରେ ନୈରାଶ୍ୟ ଖେଳିଗଲା । ଦଳ ଦଳ ହୋଇ ସମସ୍ତେ ଗାନ୍ଧୀଜୀଙ୍କ ସହ ଜୀବରାମଜୀଙ୍କ ଆଶ୍ରମରେ ସାକ୍ଷାତ କରି ପଦଯାତ୍ରାର ଅବଶିଷ୍ଟାଂଶ ପୂରଣ କରିବା ପାଇଁ ଦାବି ଅନୁରୋଧ କଲେ । ସମସ୍ତଙ୍କ କଥା ସେ ଗଭୀର ମନଯୋଗ ଓ ସହାନୁଭୂତିର ସହ ଶୁଣିଲେ । ଆମେ ତାଙ୍କୁ କହିଲୁ ଯେ ଲୋକମାନେ ଆମକୁ ଅପମାନିତ କରିବେ । ମହାତ୍ମାଙ୍କ କଥାରେ ସତ୍ୟତା ନାହିଁ ବୋଲି କହିବେ । ଗାନ୍ଧୀଜୀ ହସି ହସି କହିଲେ "ମୋ କଥାରେ ସତ୍ୟତା ଥିଲେ ମୁଁ ମହାତ୍ମା ହୋଇଥାନ୍ତି କିପରି ?" ଗାନ୍ଧୀଜୀ ତାଙ୍କ ସିଦ୍ଧାନ୍ତ ବଦଳାଇଲେ ନାହିଁ । ତଥାପି ଆଶ୍ୱାସନା ଦେଇ କହିଲେ ଯେ ସେ ପ୍ରତ୍ୟେକ ରେଳ ଷ୍ଟେସନରେ ସମବେତ ଜନତାଙ୍କୁ ଭାଷଣ ଦେବେ ଓ ହରିଜନ ପାଣ୍ଠି ପାଇଁ ଯିଏ ଯାହା ଦେବେ ସେ ତାହା ଗ୍ରହଣ କରିବେ । ମନ ଭିତରେ ମଉଳି ଯାଇଥିବା ଉତ୍ସାହ କିଞ୍ଚିତ୍ କଅଁଳି ଉଠିଲା ।

ଭଦ୍ରଖ ସହରରେ ସଭା କରାଇ ନ ଦେବାପାଇଁ ଏସ୍. ଡି. ଓ. ୧୪୪ ଧାରା ଜାରି କଲେ । ଗାନ୍ଧୀଜୀ ଜୀବରାମଜୀଙ୍କ ଆଶ୍ରମ ହତାରେ ସଭା କଲେ । ଗାନ୍ଧୀଜୀ ଭଦ୍ରଖରେ ଦୁଇଦିନ ରହି ତୃତୀୟ ଦିନ ସକାଳ ଲୋକାଲ ରେଳ ଗାଡ଼ିରେ ଚଢ଼ିଲେ । ବାଟରେ ପ୍ରତ୍ୟେକ ଷ୍ଟେସନରେ ତାଙ୍କର ଦର୍ଶନ ପାଇଁ ପ୍ରବଳ ଜନସମାଗମ ହେଉଥିଲା । ସମବେତ ଜନତା ତାଙ୍କଠାରୁ ଅସ୍ପୃଶ୍ୟତା ଦୂରୀକରଣ ସମ୍ବନ୍ଧରେ ଆବେଗପୂର୍ଣ୍ଣ ବାଣୀ ଶୁଣୁଥିଲେ ଓ ହରିଜନ ପାଣ୍ଠିକୁ ଦାନ କରୁଥିଲେ ।

ମୁଁ ଓ ନନ୍ଦବାବୁ (ଶ୍ରୀ ନନ୍ଦ କିଶୋର ଦାସ) ସୋର ଅଞ୍ଚଳରୁ ସଂଗୃହୀତ ଅଢ଼େଇଶହ ଟଙ୍କା ସୋର ରେଳ ଷ୍ଟେସନ ପ୍ଲାଟଫର୍ମରେ ହୋଇଥିବା ଅଭ୍ୟର୍ଥନା ସଭାରେ ଗାନ୍ଧୀଜୀଙ୍କ ହସ୍ତରେ ଅର୍ପଣ କଲୁ ଓ ତାଙ୍କ ସଙ୍ଗରେ ବାଲେଶ୍ୱର ଗଲୁ । ବାଲେଶ୍ୱର ଷ୍ଟେସନ ପଡ଼ିଆରେ ଗାନ୍ଧୀଜୀଙ୍କ ଅଭ୍ୟର୍ଥନା ସଭା

ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ହୋଇଥିଲା ଓ ସେଠାରେ ପ୍ରାୟ ୧୨ ଶହ ଟଙ୍କାର ହରିଜନ ପାଣ୍ଠି ସଂଗୃହୀତ ହୋଇଥିଲା ।

ମୁଁ ଗାନ୍ଧୀଜୀଙ୍କ ସହିତ ଜଳେଶ୍ୱର ପର୍ଯ୍ୟନ୍ତ ଯିବାର ସୁଯୋଗ ପାଇ ମହାର୍ଘ ସୌଭାଗ୍ୟର ଅଧିକାରୀ ହେଲି । ତାଙ୍କର ଅମୂଲ୍ୟ ସଂସ୍ପର୍ଶ ସ୍ୱଳ୍ପ ସମୟ ପାଇଁ ଲାଭକରି ନିଜକୁ ଧନ୍ୟ ମନେ କରୁଥାଏ । ଗାନ୍ଧୀଜୀ ମୋତେ ମୋର ନାଁ, ଗାଁ ପଚାରିଲେ । ମୁଁ ଯଥାଯଥ ଉତ୍ତର ଦେଲି । ତା'ପରେ ସେ ଦିବ୍ୟଦର୍ଶୀ ମହାପୁରୁଷ ଅତୁଳ ବାତ୍ସଲ୍ୟ ମମତା ଭରା କଣ୍ଠରେ ପଚାରିଲେ– "ମୁହଁ କାହିଁକି ଶୁଖାଉଛ ?" ଗତ୍ୟନ୍ତର ନ ଥାଇ ମୁଁ ନିରୁପାୟ ହୋଇ କହିଲି– "ମୁଁ କିଛି ଖାଇନାହିଁ" । ସଙ୍ଗେ ସଙ୍ଗେ ସେ ତାଙ୍କ ସାଙ୍ଗରେ ଥିବା ଆହାର୍ଯ୍ୟରେ ମୋତେ ଅତ୍ୟନ୍ତ ସ୍ନେହ ମମତାରେ ଖାଇବାକୁ ଦେଲେ । ପରମ ତୃପ୍ତିର ସହ ମୋର କ୍ଷୁଧା ମେଣ୍ଟାଇଲି । ଗଭୀର ସ୍ନେହ ମମତାଭରା ଚକ୍ଷୁରେ ଲକ୍ଷ୍ୟ କରି ମଧ୍ୟ ସେହି ଅନ୍ତର୍ଯ୍ୟାମୀ ମହାପୁରୁଷ ମୋର ଦେଇଥିବା କୈଫିୟତରେ ଆଦୌ ସନ୍ତୁଷ୍ଟ ହେଲେ ନାହିଁ । ତାଙ୍କର ମନ ବୁଝିଲା ନାହିଁ । ମୋ ହୃଦୟ ଅନୁକୋଣ ଅର୍ଣ୍ଣ—ପାଷାଣ ତଳେ ଲୁକ୍କାୟିତ ଦୁଃଖ ତାଙ୍କ ଭଳି ମହାନ୍ ମାନବିକତାର ଅବତାରଙ୍କ ଦିବ୍ୟ ଦୃଷ୍ଟିକୁ ଏଡ଼ି ଯାଇ ପାରିଲା ନାହିଁ । ବାରମ୍ବାର ସ୍ନେହ ସହାନୁଭୂତି ବୋଳା କଣ୍ଠରେ ପଚାରି ଲାଗିଲେ– "ନା, ନା, ଅନ୍ୟ କିଛି କାରଣ ଅଛି କୁହ ।" ତାଙ୍କର ସେହି ଅନାବିଳ ସ୍ନେହବୋଳା ପ୍ରଶ୍ନରେ ମୋର କର୍ତ୍ତବ୍ୟ କଠୋର ମନ ଦ୍ରବୀଭୂତ ହେଲା । ଅଗତ୍ୟା ବାଧ୍ୟ ହୋଇ ସେହି ସତ୍ୟଓ ମହାନ ପୂଜାରୀଙ୍କ ନିକଟରେ ସଙ୍କୋଚ ଏଡ଼ାଇ ସତକଥା ମାନିବାକୁ ହେଲା । ଘରପୋଡ଼ି, ସ୍ତ୍ରୀଙ୍କ ଆପେଣ୍ଡିସାଇଟିସ୍ ଓ ଶିଶୁପୁତ୍ରର କାନଯନ୍ତ୍ରଣା ସବୁ ଗୋଟି ଗୋଟିକରି କହିଲି ।

ଗାନ୍ଧୀଜୀ ଗମ୍ଭୀର ସ୍ୱରରେ ପଚାରିଲେ "ଏପରି ଅବସ୍ଥାରେ ତୁମର ତ କିଛି କର୍ତ୍ତବ୍ୟ ରହିଛି । ତୁମେ ସେମାନଙ୍କ ପାଖରେ ନ ରହି ଏଠାକୁ କିପରି ଆସିଛ ?" ମୁଁ ବିନମ୍ର କଣ୍ଠରେ ଉତ୍ତର ଦେଲି "ମୁଁ ତ ରହିଲେ ସେମାନେ ସୁସ୍ଥ ହୋଇ ଯିବେ ନାହିଁ, ସେମାନଙ୍କ ଚିକିତ୍ସା ଡାକ୍ତର କରିବେ । ତା' ଛଡ଼ା ଆପଣ ଏତେବଡ଼ ଲୋକ ହୋଇ ପଦଯାତ୍ରା କରୁଛନ୍ତି କେବଳ ଦେଶର ସ୍ୱାର୍ଥ ତଥା ମଙ୍ଗଳ ପାଇଁ, ସେପରି ସ୍ଥଳେ ମୁଁ କିପରି ମୋର ବ୍ୟକ୍ତିଗତ ସ୍ୱାର୍ଥକୁ ତ୍ୟାଗକରି ଆସି ନ ଥାନ୍ତି, ଏ ସୁଯୋଗ ତ ମୋତେ ଆଉ ମିଳି ନ ଥାଆନ୍ତା ।" ମୋତେ ଗାନ୍ଧୀଜୀ ସେ ବିଷୟରେ ଆଉ କିଛି ପଚାରିଲେ ନାହିଁ କି ଘରକୁ ଫେରି ଯିବାକୁ ନିର୍ଦ୍ଦେଶ ଦେଲେ ନାହିଁ । ଏତିକି ଅଳ୍ପ କଥା-ବାର୍ତ୍ତାରେ ସେ ମୋତେ ଓ ମୋର ଅବସ୍ଥା ଭଲଭାବେ ବୁଝିନେଲେ । ସେ ଅନ୍ତର୍ଯ୍ୟାମୀ ମହାପୁରୁଷ ବୋଲି ମୋର ବିଶ୍ୱାସ ଦୃଢ଼ୀଭୂତ ହେଲା । ଧନ୍ୟ ମହାତ୍ମା, ଧନ୍ୟ ତାଙ୍କର ମହାନୁଭବତା । ତାଙ୍କ ସହ କିଛି ସମୟ ବିତାଇ ଓ ତାଙ୍କ ସହ ମନ ଓ ହୃଦୟ ଖୋଲି କଥାବାର୍ତ୍ତା ହୋଇ ମୁଁ ଖୁବ ରୋମାଞ୍ଚିତ ହୋଇ ଉଠୁଥାଏ । ମୋର ପ୍ରତ୍ୟେକ ତନ୍ତ୍ରୀରେ ଏକ ଅଦ୍ଭୁତ ଅନୁଭୂତି ; ଖୁବ୍ ହାଲୁକା ଲାଗୁଥାଏ ଦେହ ଓ ମନ । ଯେପରି ତୁଳା ପରି ଉଡ଼ି ଉଡ଼ି ଯାଇ ଲାଗିଯିବି ଦେଶ କାମରେ ଏଠି, ସେଠି, ସେଠୁ ଆଉ କେଉଁଠି, ମୋର ହୃଦୟର ଅବରୁଦ୍ଧ ଖୋଲି ଯାଉଥାଏ । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ କଲାଭଳି ମୁଁ ଗାନ୍ଧୀଜୀଙ୍କ ଅପାର୍ଥିବ ମହାନ ରୂପ ଦର୍ଶନ କରି ଅଭିଭୂତ ହୋଇ ପଡ଼ିଲି । ଏତେବର୍ଷ ଧରି ଗାନ୍ଧୀଜୀଙ୍କୁ ଓ ତାଙ୍କର କାର୍ଯ୍ୟକ୍ରମକୁ ସ୍ୱାଧୀନତା ଆନ୍ଦୋଳନର ସାଧନା ପୀଠରେ ଯେତେ ହୃଦୟଙ୍ଗମ କରି ପାରି ନ ଥିଲି ତାଙ୍କ ସଙ୍ଗେ ଏ କେତେ କ୍ଷଣ ଅପୂର୍ବ ସାନିଧ୍ୟ ଲାଭକରି ତାଙ୍କର ଜାଜ୍ୱଲ୍ୟ ସ୍ପର୍ଶରେ ଅତି ସହଜ ସାବଲୀଳ ଭାବେ ସମସ୍ତ ସ୍ପଷ୍ଟଭାବେ ହୃଦୟଙ୍ଗମ କରି ଅପାର ଆନନ୍ଦ ଅନୁଭବ କଲି । ମୋର ଏ ଅଲୌକିକ ଅନୁଭବକୁ ଘନୀଭୂତ କରିବା ପାଇଁ ଗାନ୍ଧୀଜୀ ମୋତେ ଏହି ଅଭିନବ ହରିଜନ ଆନ୍ଦୋଳନର ଗୂଢ଼ତତ୍ତ୍ୱର ଅମୂଲ୍ୟ ବାଣୀ ଶୁଣାଇଲେ । ମୁଁ ଧ୍ୟାନମଗ୍ନ ପ୍ରାୟ ତାଙ୍କର ସେହି ଅମୃତ-ବାଣୀ ଶ୍ରବଣ କରି ଚାଲିଥାଏ । ଏହା ମଧ୍ୟରେ କେତେ-ବେଳେ ଯେ ଜଳେଶ୍ୱର ଷ୍ଟେସନ ଆସିଗଲା ମୋର ଚେତନା ନ ଥାଏ । ସହସ୍ରାଧିକ ସମବେତ ଜନତାଙ୍କ "ଗାନ୍ଧୀଜୀ କି ଜୟ" ଧ୍ୱନି ମୋତେ ପ୍ରକୃତିସ୍ଥ କଲା । ଜଳେଶ୍ୱର ଷ୍ଟେସନରେ ଗାନ୍ଧୀଜୀ ଆମ୍ଭମାନଙ୍କଠୁଁ ବିଦାୟ ନେବା ପୂର୍ବରୁ ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀଙ୍କୁ ଡାକି ମୋତେ ଦେଖାଇ ପଚାରିଲେ "ଏହାଙ୍କୁ ଚିହ୍ନିଛ, ଜାଣିଛ ?" ଗୋପବାବୁ ହଁ ଭରିଲେ । "ଯାଙ୍କର ପରିସ୍ଥିତି ଜାଣିଛ ?" ସେଥିରେ ମଧ୍ୟ ଗୋପବାବୁ ହଁ ଭରିଲେ । ସେଠୁ ଗାନ୍ଧୀଜୀ ଏପରି ଜଣେ ବିପଦଗ୍ରସ୍ତ କର୍ମୀ ସମ୍ବନ୍ଧରେ ସମସ୍ତ ଜାଣି ମଧ୍ୟ କିପରି ପ୍ରତିକାର ପାଇଁ ବ୍ୟବସ୍ଥା କରିନାହଁ ବୋଲି କହି ସମସ୍ତ ପ୍ରକାର ସାହାଯ୍ୟ କରିବାକୁ କହିଗଲେ ।

ଗାନ୍ଧୀଜୀଙ୍କ ସହ ସେହି ଅବିସ୍ମରଣୀୟ ସାକ୍ଷାତ ପରେ ଅଧୀନ ଦୃଢ଼ବ୍ରତୀ ହୋଇ ଦେଶର ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ତଥା ସମଗ୍ର ପରିବାରକୁ ସଂପୂର୍ଣ୍ଣ ଭାବେ ନିୟୋଜିତ କରିବା ଅବସରରେ ସ୍ୱାଧୀନତା ଆନ୍ଦୋଳନକୁ ସଫଳ କରିବା ପାଇଁ ଗାନ୍ଧୀଜୀଙ୍କର ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟକ୍ରମ ସହ ହରିଜନ ସେବା କାର୍ଯ୍ୟକ୍ରମକୁ ଅଗ୍ରପ୍ରାଧାନ୍ୟ ଦେଇ ଆସିଛି। "ମରିଯିବି ପଛେ ହରିଜନମାନଙ୍କୁ ହିନ୍ଦୁମାନଙ୍କଠାରୁ ପୃଥକ୍ କରିବାକୁ ଦେବନାହିଁ" ବୋଲି ଗାନ୍ଧୀଜୀଙ୍କର ଯେରଓ୍ୱାଡ଼ା ଜେଲରେ ଭୀଷ୍ମ ପ୍ରତିଜ୍ଞା ମୋ କର୍ଣ୍ଣ କୁହରରେ ପ୍ରତି ମୁହୂର୍ତ୍ତରେ ଅନୁରଣିତ ହୋଇଛି । ସ୍ୱାଧୀନତା ଆନ୍ଦୋଳନ ସମୟରେ ବାଲେଶ୍ୱର ଜିଲ୍ଲାର ଖଇରା ଥାନା ଅନ୍ତର୍ଗତ "ବାରଭାଗିଆ" ନାମକ ହରିଜନ ଅଧ୍ୟୁଷିତ ଗ୍ରାମକୁ ହରିଜନ ସେବାପାଇଁ ମୋର ସାଧନାପୀଠ ରୂପେ ବାଛିନେଇ ଦୀର୍ଘଦିନ ଧରି ସେମାନଙ୍କ ସେବାରେ ନିଜକୁ ନିୟୋଜିତ କରି ସେମାନଙ୍କର ଅର୍ଥନୈତିକ ଉନ୍ନତି ନିମନ୍ତେ ଖଦୀ ଓ ଗ୍ରାମୋଦ୍ୟୋଗର ପ୍ରସାର କରାଇଥିଲି । ସେ ସବୁର ବିଶଦ ବିବରଣୀ ପ୍ରଦାନ କରିବା ଏ କ୍ଷୁଦ୍ର ରଚନାରେ ସମ୍ଭବପର ନୁହେଁ । ଲେଖି ବସିଲେ ପୋଥିଟିଏ ହେବ । ସମୟ ସୁଯୋଗ ଜୁଟିଲେ ବାରାନ୍ତରେ ଲେଖିବାର ପ୍ରୟାସ କରିବି ।

ଗାନ୍ଧୀଜୀଙ୍କ ସହ ସେହି ଅତୁଳ ସାକ୍ଷାତର ସ୍ମୃତିକୁ ପାଥେୟ କରି ଜୀବନର ଅବଶିଷ୍ଟ ସମୟ ଦେଶ ଓ ଦଶର କଲ୍ୟାଣ ମନାସବାରେ ଅତିବାହିତ ହେଉ–ଏତିକି ମୋର ଈଶ୍ୱରଙ୍କଠାରେ ପ୍ରାର୍ଥନା ।

ଭୂତପୂର୍ବ ବିଧାନସଭା ସଦସ୍ୟ, ସୋର, ବାଲେଶ୍ୱର



ଆସିଗଲା
ଗ୍ଲୁକନ-ଡି ®
ସୁପରହୀରୋ
ସବୁ ମାଆଙ୍କର
ସ୍ନେହର
ସୁପରହୀରୋ !
Glaxo
Glucon-D
Glucose-D
High grade, finely powdered glucose enriched with vitamin D and calcium phosphates
700 GRAMS NET
GLAXO LABORATORIES INDIA LTD
Dr. Annie Besant Road
Bombay 400 025, INDIA
ଗ୍ଲୁକନ-ଡି ସୁପରହୀରୋରେ ଯେତକ ଗୁଣ ଅଛି, ଯାହା ଆପଣ ନିଜ ସ୍ନେହର ସନ୍ତାନଠାରେ ଦେଖିବାକୁ ସଦା ଆଗ୍ରହୀ, ଯେମିତିକି, ସିଏ ଅନ୍ୟ ପିଲାଙ୍କ ତୁଳନାରେ ତେଜ, ଫୁର୍ତ୍ତିଲା ଆଉ ଉତ୍ସାହୀ ରହିବ ।
ନିଜର ପ୍ରିୟ କୁନମୁନିଙ୍କୁ ଦିଅନ୍ତୁ ସୁପରହୀରୋଙ୍କୁ ବିଶେଷ ପସନ୍ଦ ଆସୁଥିବା ପେୟ — ଗ୍ଲୁକନ-ଡି ।
ଗ୍ଲୁକନ-ଡିରେ ଅଛି ଗ୍ଲୁକୋଜ, ଭିଟାମିନ ଡି ଓ କାଲସିଅମ ଫସଫେଟ, ଯାହା ଆପଣଙ୍କ ସନ୍ତାନକୁ ଦିଏ ତୁରନ୍ତ ଶକ୍ତି — ଭଲ ପଢ଼ାଶୁଣା କରିପାରିବା ଲାଗି, ଆଉ ଭଲ ଖେଳକୁଦ କରିପାରିବା ଲାଗି ।
ଏବେ ନିଜ ଘରେ ପାଇପାରିବେ ଆପଣଙ୍କ ସ୍ୱପ୍ନର ସୁପରହୀରୋ — ଗ୍ଲାକ୍ସୋ'ର ଗ୍ଲୁକନ-ଡି ସାହାଯ୍ୟରେ ।
ଏହି ଅସଲି ନୂଆ ପ୍ୟାକ ଦେଖି କିଣନ୍ତୁ !
ଗ୍ଲୁକନ-ଡି ®
ତୁରନ୍ତ ଶକ୍ତି ଦେଉଥିବା ପେୟ ସୁପରହୀରୋ'ର ବିଶେଷ ପସନ୍ଦ !

# ଓଡ଼ିଶାରେ ସପ୍ତମାତୃକା

ଶ୍ରୀ ଗଣେଶ ପ୍ରସାଦ ପରିଜା

ଅଷ୍ଟମ ଶତାବ୍ଦୀ ବା ତା'ପୂର୍ବରୁ ଓଡ଼ିଶା ଶିକ୍ଷା ଓ ସଂସ୍କୃତିରେ ସମୃଦ୍ଧି ଲାଭ କରିଥିଲା । ଯୁଗେ ଯୁଗେ ଓଡ଼ିଶା ଧର୍ମର ଏକ ପ୍ରଧାନ ପୀଠରୂପେ ପରିଚିତ । ରାଜାମାନେ ସିଂହାସନ ତ୍ୟାଗକରି ଧର୍ମପ୍ରଚାରରେ ଅଧିକ ଆନନ୍ଦ ପାଉଥିବାର ବହୁ ଦୃଷ୍ଟାନ୍ତ ରହିଛି । ଜୈନ, ବୌଦ୍ଧ, ହିନ୍ଦୁଧର୍ମର ଅଭିବୃଦ୍ଧି ପାଇଁ ଓଡ଼ିଶାର ରାଜାମାନଙ୍କର ଦାନ ଅତୁଳନୀୟ । ସେଥିପାଇଁ ସ୍ଥାନେ ସ୍ଥାନେ ମଠ, ବିହାର ଓ ମନ୍ଦିରମାନ ଗଢ଼ି ଉଠିଥିଲା । କାଳଗର୍ଭରେ ବହୁ ମଠ, ବିହାର, ମନ୍ଦିର ଧ୍ୱଂସ ହୋଇ ଗଲଣି । ମନ୍ଦିର ମାଳିନୀ ଓଡ଼ିଶାକୁ ଦେଖିଲେ ଏବେ ବି ବିଦେଶୀ ପର୍ଯ୍ୟଟକ ବିସ୍ମିତ ହୁଅନ୍ତି ।

ବୌଦ୍ଧ ଧର୍ମର ମହାଜନପନ୍ଥୀ ଯେତେବେଳେ ବଜ୍ରଯାନ ବା ତନ୍ତ୍ରଯାନରେ ପ୍ରବେଶ କଲେ ସେତେବେଳେ ପ୍ରଥମ ସ୍ତର ଓଡ଼ିଶାରୁ ଆରମ୍ଭ ହୋଇଥିଲା । ସେହି ସମୟରୁ ଗଢ଼ିଉଠିଲା ତନ୍ତ୍ରସାଧନା, ତନ୍ତ୍ର ଦେବତାର ଆରାଧନା । ସେହି ଆରାଧନା ମଧ୍ୟରେ ମାତୃକା ଆରାଧନା ଅନ୍ୟତମ । ପୁଷ୍ପଗିରି ବୌଦ୍ଧବିହାରର ଲଳିତଗିରିରେ ହାରିତିଙ୍କ ମୂର୍ତ୍ତି ଦେଖିଲେ ସ୍ୱତଃ ଧାରଣା ଆସିଥାଏ ମାତୃକା ଆରାଧନା ବୌଦ୍ଧ ସଂସ୍କୃତିରୁ ଆରମ୍ଭ ହୋଇଛି । ହାରିତି ମାତୃକାମାନଙ୍କ ମଧ୍ୟରେ ଅନ୍ୟତମା ଥିଲେ, ତାହା ବହୁ ଗବେଷକ ସେମାନଙ୍କ ନିବନ୍ଧରେ ଉଲ୍ଲେଖ କରିଛନ୍ତି । ବୌଦ୍ଧର ପ୍ରାୟ ସମସ୍ତ ବିଭବ ହିନ୍ଦୁମାନଙ୍କ ଦ୍ୱାରା ଗୃହୀତ । ଏପରି ବୁଦ୍ଧ ନବମ ଅବତାରରୂପେ ହିନ୍ଦୁମାନଙ୍କଦ୍ୱାରା ଆରାଧିତହୋଇ ଆସିଛନ୍ତି । ସେହି ବୁଦ୍ଧ ଶ୍ରୀ ଜଗନ୍ନାଥ ରୂପେ ଶ୍ରୀମନ୍ଦିରରେ ଅବସ୍ଥାନ କରିଛନ୍ତି ବୋଲି ଓଡ଼ିଆର କବି ଯେଉଁଭଳି ଲେଖିଛନ୍ତି ସେହିଭଳି ଓଡ଼ିଆ ଚିତ୍ରଶିଳ୍ପୀ ନିହାଣ ମୁନରେ ଆଙ୍କି ଯାଇଛନ୍ତି । ତେଣୁ ବୌଦ୍ଧର ସମସ୍ତ ବିଭବ ହିନ୍ଦୁମାନଙ୍କଦ୍ୱାରା ଆଦରିତହୋଇ ଅଭିବୃଦ୍ଧି ଘଟିଛି ।

ଓଡ଼ିଶାର ପ୍ରତି ଅଞ୍ଚଳରେ ତନ୍ତ୍ରପୀଠ ଗଢ଼ି ଉଠିଥିଲା । ବୈଦିକ ଉପାସନାର ବିଫଳତା ଲକ୍ଷ୍ୟ କରି ଶିବ ପାର୍ବତୀଙ୍କୁ ମହାନିର୍ବାଣ ତନ୍ତ୍ରରେ କହିଲେ–

> ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ସତ୍ୟଂସତ୍ୟଂ ମୟୋଚ୍ୟତେ ।
> ବିନା ହ୍ୟାଗମମାର୍ଗେଣ କଲୌ ନାସ୍ତି ଗତିଃ ପ୍ରିୟେ ॥
> ଶ୍ରୁତି ସ୍ମୃତି ପୁରାଣାଦୌ ମୟୈବୋକ୍ତଂ ପୁରା ଶିବେ ।
> ଆଗମୋକ୍ତ-ବିଧାନେନ କଲୌ ଦେବାନ୍ ଯଜେତ୍ସୁଧୀଃ ॥"

–ପ୍ରିୟେ ! ମୁଁ ସତ୍ୟ ସତ୍ୟ–ସଂପୂର୍ଣ୍ଣ ସତ୍ୟକଥା କହୁଛି, କଳିଯୁଗରେ ଆଗମପଥ ବ୍ୟତୀତ ମାନବର ଆଉ ଅନ୍ୟଗତି ନାହିଁ । ଭଗବତି ! ମୁଁ ବେଦ, ସ୍ମୃତି, ପୁରାଣ ଆଦିରେ କହିଛି, କଳିଯୁଗରେ ସୁଧୀମାନେ ତନ୍ତ୍ରୋକ୍ତ ବିଧାନଦ୍ୱାରା ଅଭିଷ୍ଟ ଦେବଗଣଙ୍କ ପୂଜାକରି ସନ୍ତୋଷ ବିଧାନ କରିବେ ।

ଓଡ଼ିଶାର ପ୍ରତି ତନ୍ତ୍ରପୀଠରେ ମାତୃକା ଉପାସନାର ବିଧି ଥିଲା । କିନ୍ତୁ ପରେ ପୀଠ ଦେବତାଙ୍କ ପ୍ରାଧାନ୍ୟ ଦୃଷ୍ଟିରୁ ମାତୃକା ଉପାସନା ଅବହେଳିତ ହେଲା । ତଥାପି ମାତୃକା ଉପାସନାର ପୀଠରୂପେ ପୁରୀ, ଯାଜପୁର, ବେଲଖଣ୍ଡି, ଚିଟିଲ୍ଲାଗଡ଼ ଖିଚିଙ୍ଗ, ଧର୍ମଶାଳା, ଭୁବନେଶ୍ୱର ଓ ସୋରଗଡ଼ ଆଦି ପ୍ରାଧାନ୍ୟ ଲାଭକରିଥିଲା । ଏବେ ମଧ୍ୟ ପୁରୁଷୋତ୍ତମ କ୍ଷେତ୍ରର ଚୁଡ଼ଙ୍ଗ ସାହିରେ ଧର୍ମାନ୍ଧଙ୍କଦ୍ୱାରା ବିକୃତ ହୋଇଥିବା ସପ୍ତମାତୃକାଙ୍କ ମୂର୍ତ୍ତି ଆରାଧିତା ହେଉଛନ୍ତି । ଏହି ସପ୍ତମାତୃକା ହେଉଛନ୍ତି ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା । ପୁରୀ ସପ୍ତମାତୃକା ପୀଠରେ ସପ୍ତମାତୃକାଙ୍କ ପୂର୍ବରୁ ବୀଣାଧାରୀ ବୀରଭଦ୍ର ଓ ଶେଷରେ ଗଣେଶ ରହିଛନ୍ତି । ଯାଜପୁର ସପ୍ତମାତୃକା କ୍ଷେତ୍ରରେ କ୍ରମରେ ଯେଉଁଭଳି ବ୍ୟତିକ୍ରମ ରହିଛି ସେହିଭଳି ଆଦ୍ୟରେ ବୀରଭଦ୍ର ବା ଗଣେଶ ନାହାନ୍ତି । "ଅମରକୋଷ"ରେ କୁହାହୋଇଛି–

> "ବ୍ରାହ୍ମୀ ଚ ବୈଷ୍ଣବୀ ଚୈନ୍ଦ୍ରୀ ରୌଦ୍ରୀ ବାରାହୀ ତଥା
> କୌବେରୀ ଚୈବ କୌମାରୀ ମାତରଃ ସପ୍ତକୀର୍ତ୍ତିତାଃ"

ଅମରକୋଷ ମୁତାବକ ଦେଖିବାକୁଗଲେ ବ୍ରାହ୍ମୀ, ବୈଷ୍ଣବୀ, ଐନ୍ଦ୍ରୀ, ରୌଦ୍ରୀ, ବରାହୀ, କୌବେରୀ ଓ କୌମାରୀଙ୍କୁ ମିଶାଇ ସପ୍ତମାତୃକା । ମାତ୍ର ଓଡ଼ିଶାର କୌଣସିଠାରେ ସପ୍ତମାତୃକାଙ୍କ ମଧ୍ୟରେ କୁବେରୀ ନାହାନ୍ତି । ତାଙ୍କ ସ୍ଥାନରେ ଅବସ୍ଥାନ କରିଥାନ୍ତି ଚାମୁଣ୍ଡା । ଏହି ଚାମୁଣ୍ଡାଙ୍କ କୋଳରେ ସନ୍ତାନ ନାହିଁ । ଅନ୍ୟ ମାତୃକାଙ୍କ କୋଳରେ କିନ୍ତୁ ସନ୍ତାନ ରହିଛି ।

ବରାହପୁରାଣରେ ଉଲ୍ଲେଖ ଅଛି ପୂର୍ବେ ଶିବଙ୍କ ସହିତ ଅନ୍ଧକାସୁରର ଯୁଦ୍ଧ ହେଲା । ସେହି ଯୁଦ୍ଧରେ ଶିବ ଅନ୍ଧକକୁ ସହଜରେ ମାରିପାରିଲେ ନାହିଁ । ତେଣୁ ଶିବ ଭୟଙ୍କର

ରାଗିଯାଇ ଅନ୍ଧକାସୁର ବକ୍ଷରେ ତ୍ରିଶୂଳ ବିଦ୍ଧ କଲେ । ମାତ୍ର ତ୍ରିଶୂଳ ଆଘାତରେ ଅନ୍ଧକର ମୃତ୍ୟୁ ହେଲ ନାହିଁ । ତା' ବକ୍ଷରୁ ରକ୍ତ ନିର୍ଗତ ହୋଇ ସେହି ରକ୍ତ ବିନ୍ଦୁରୁ ଅସଂଖ୍ୟ ଅନ୍ଧକଭଳି ଦାନବ ସୃଷ୍ଟି ହେବାକୁ ଲାଗିଲେ । ସେହିସବୁ ରାକ୍ଷସଙ୍କୁ ବଧ କରିବାପାଇଁ ବ୍ରହ୍ମା, ବିଷ୍ଣୁ, କାର୍ତ୍ତିକ, ଇନ୍ଦ୍ରାଦି ଦେବତାମାନେ ଆବିର୍ଭୂତ ହେଲେ ଓ ସେହିସବୁ ଦାନବଙ୍କୁ ବଧ କରିବାକୁ ଲାଗିଲେ । ମାତ୍ର ସେମାନେ ଅନ୍ଧକାସୁରର ବଂଶକୁ ନିପାତକରି ପାରିଲେ ନାହିଁ । ତେଣୁ ମହାଦେବ ରୁଦ୍ରମୂର୍ତ୍ତି ଧାରଣ କଲେ । ତାଙ୍କ ଶରୀରରୁ ଅଗ୍ନିଶିଖା ନିର୍ଗତହେଲା । ସେହି ଅଗ୍ନିଶିଖା ମଧ୍ୟରୁ ତେଜଦୀପ୍ତା ଦେବୀ ଆବିର୍ଭୂତା ହେଲେ । ସେହି ଦେବୀ ନାମିତା ହେଲେ ଯୋଗେଶ୍ୱରୀ ନାମରେ । ତାପରେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ରା, କାର୍ତ୍ତିକ, ଯମ, ବରାହରୂପୀ ବିଷ୍ଣୁଙ୍କ ଦେହରୁ ଗୋଟିଏ ଗୋଟିଏ ମାତୃକା ସୃଷ୍ଟି ହୋଇ ରାକ୍ଷସମାନଙ୍କୁ ବଧ କରିବାକୁ ଲାଗିଲେ । ସେହିମାନଙ୍କୁ ମାତୃକା କୁହାଗଲା ।

ସପ୍ତଶତୀ ଚଣ୍ଡୀରେ ଉଲ୍ଲେଖ ଅଛି ଶୁମ୍ଭଦୈତ୍ୟ ସହିତ ଯେତେବେଳେ ଦେବୀ ଯୁଦ୍ଧ କରୁଥିଲେ ସେହି ସମୟରେ ବ୍ରହ୍ମା, ବିଷ୍ଣୁ, କାର୍ତ୍ତିକ ଓ ଇନ୍ଦ୍ରାଦିଙ୍କଠାରୁ ତାଙ୍କର ଶକ୍ତି ବହିର୍ଗତ ହୋଇ ଦେବୀଙ୍କୁ ସାହାଯ୍ୟ କରିବାକୁ ଆସିଥିଲେ । ଚଣ୍ଡିକାଙ୍କ ଲଲାଟ ପଟରୁ ଆବିର୍ଭୂତା ହେଲେ କରାଳୀ ଚାମୁଣ୍ଡା । ତତ୍‌ପରେ ବ୍ରହ୍ମା, ବିଷ୍ଣୁ, ବରାହ, ନୃସିଂହ, ଶିବ, ଇନ୍ଦ୍ର ଓ କାର୍ତ୍ତିକେୟଙ୍କ ଶକ୍ତି ବ୍ରାହ୍ମୀ, ବୈଷ୍ଣବୀ, ବରାହୀ, ନାରସିଂହୀ, ମାହେଶ୍ୱରୀ, ଐନ୍ଦ୍ରୀ ଓ କୌମାରୀ ମିଳିତ ହେଲେ । ଏହିସବୁ ଦେବୀଙ୍କୁ ଗଣନା କଲେ ନଅ ସଂଖ୍ୟା ହେଉଛନ୍ତି । ଚଣ୍ଡିକାଙ୍କୁ ବାଦ୍‌ଦେଲେ ସେମାନଙ୍କର ସଂଖ୍ୟା ଆଠ ହେବ । ସପ୍ତମାତୃକାଙ୍କ ମଧ୍ୟରେ ନାରସିଂହୀ ଥିବା ଦେଖାଯାଏ ନାହିଁ ।

କର୍ମକାଣ୍ଡ-ପ୍ରକ୍ରିୟାରେ ଷୋଡ଼ଶ ଓ ଅଷ୍ଟାଦଶ ମାତୃକାଗଣଙ୍କ ପୂଜାର ବ୍ୟବସ୍ଥା ରହିଛି । ଏହି ଅଷ୍ଟାଦଶ ମାତୃକାମାନେ ହେଉଛନ୍ତି-ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସ୍ୱାହା, ସ୍ୱଧା, ମାତର, ଲୋକମାତର, ଶାନ୍ତି, ତୁଷ୍ଟି, ଧୃତି, ପୁଷ୍ଟି, ଆତ୍ମଦେବତା, କୁଳଦେବତା । ଏହି ଅଷ୍ଟାଦଶ ମାତୃକାମାନଙ୍କ ମଧ୍ୟରୁ ମାତର ଓ ଲୋକମାତରଙ୍କୁ ବାଦ୍ ଦେଲେ ହେବେ ଷୋଡ଼ଶ ମାତୃକା । ବିବାହ, ବ୍ରତାଦି, ମାଙ୍ଗଳିକ କର୍ମରେ ଏହି ମାତୃକାମାନଙ୍କୁ ଆରାଧନା କରାଯାଏ ।

ତନ୍ତ୍ରରେ ବିଭିନ୍ନ ତନ୍ତ୍ରମତାବଲମ୍ବୀ ଥିବା ଦେଖାଯାଏ । ଯେଉଁଭଳି ଶୈବତନ୍ତ୍ର ରହିଛି ସେହିଭଳି ବୈଷ୍ଣବୀୟ ତନ୍ତ୍ରଥିବା ଦେଖାଯାଏ । ଏହି ବୈଷ୍ଣବୀୟ ତନ୍ତ୍ରରେ ସପ୍ତମାତୃକା, ଅଷ୍ଟମାତୃକା ନବମାତୃକା, ଷୋଡ଼ଶ ଓ ଅଷ୍ଟାଦଶ ମାତୃକାଙ୍କ ନାମ ରହିଛି । ସେହିମାନଙ୍କ ନାମ ହେଉଛି-ଭାଗବତୀ, ପୌର୍ଣ୍ଣମାସୀ, ପଦ୍ମା, ତରଙ୍ଗିକା, ଗଙ୍ଗା,କଳିନ୍ଦନନ୍ଦିନୀୟା, ଗୋପୀ, ବୃନ୍ଦାବତୀ, ଗାୟତ୍ରୀ, ତୁଳସୀ, ପୃଥିବୀ, ଗୋ, ବୈଷ୍ଣବୀ, ଯଶୋଦା, ଦେବହୂତୀ, ରୋହିଣୀ, ଶ୍ରୀସତୀ, ଦ୍ରୌପଦୀ, କୁନ୍ତୀ ଓ ରୁକ୍ମିଣୀ । ଏହି ସଂଖ୍ୟାରୁ ଜଣାଯାଏ ବୈଷ୍ଣବ ମତରେ ବିଂଶ ମାତୃକାଙ୍କ ନାମ ରହିଛି ।

ବ୍ରାହ୍ମୀ--Elements of Hindu Iconography ରେ ବ୍ରାହ୍ମୀଙ୍କ ସ୍ୱରୂପ ବର୍ଣ୍ଣିତ ହୋଇଛି । ସେଥିରୁ ଜଣାଯାଏ ବ୍ରାହ୍ମୀଙ୍କର ଚାରୋଟି ମସ୍ତକ, ସେ ଚତୁଃହସ୍ତା ଓ ରକ୍ତ ପଦ୍ମ ... ଉପବେଶନ କରିଛନ୍ତି । ତାଙ୍କର ବାହନ ହଂସ । ସେ ପୀତ... ପରିହିତା ଓ ଜଟା ମୁକୁଟ ସଂଯୁକ୍ତା । ତାଙ୍କ ଦକ୍ଷ... ଦୁଇଭୁଜରେ ଶୂଳ ଓ ଅଭୟମୁଦ୍ରା ଏବଂ ବାମ ଭାଗର ଦୁଇଭୁଜ... ଅକ୍ଷମୁଦ୍ରା ଓ ବରମୁଦ୍ରା ରହିଛି । ଅଂଶୁମଦ୍‌ଭେଦାଗମ ନା... ତନ୍ତ୍ରରେ ଉଲ୍ଲେଖ ଅଛି–

ଚତୁର୍ବକ୍ତ୍ରା ଚତୁର୍ବାହୁ ସଂଯୁକ୍ତା ହେମସନ୍ନିଭ...
ଦକ୍ଷିଣେ ଽଭୟଶୂଳଂ ଚ ବରଦଂ ଚାକ୍ଷମାଳିକା ।
ରକ୍ତପଦ୍ମାସମାସୀନା ହଂସବାହନ କେତୁକାମ୍ ।
ଜଟାମୁକୁଟସଂଯୁକ୍ତାଂ ପୀତାମ୍ବର ଧରାଂ ବରାମ୍ ।
ବ୍ରହ୍ମାଣୀଂ ହୈବ ମାଖ୍ୟାତାଂ ବ୍ରହ୍ମବୃକ୍ଷସମାଶ୍ରିତାମ୍ ।

ବିଷ୍ଣୁ ଧର୍ମୋତ୍ତର ନାମରେ ଅନ୍ୟ ଏକ ତନ୍ତ୍ରରେ କୁହାହୋଇ... ବ୍ରାହ୍ମୀଙ୍କର ଚାରିଟି ମସ୍ତକ, ଛ'ଟି ହାତ । ଦକ୍ଷିଣ ହସ୍ତ ତ୍ରୟରେ... ଯଥାକ୍ରମେ ଅକ୍ଷ ସୂତ୍ର, ସ୍ରୁବ ଓ ବରମୁଦ୍ରା ଏବଂ ବାମ ହସ୍ତ... ତ୍ରୟରେ ପୁସ୍ତକ, ପାତ୍ରୀ, ଅଭୟମୁଦ୍ରା ରହିଛି ।

ପୁରୁଷୋତ୍ତମ କ୍ଷେତ୍ରରେ ଥିବା ସପ୍ତମାତୃକାଙ୍କ ମଧ୍ୟରେ ବ୍ରାହ୍ମୀ ମରାଳବାହନା । ତାଙ୍କର ତିନୋଟି ମସ୍ତକ । ତାଙ୍କ କୋଳରେ ସନ୍ତାନ ରହିଛି । ଯାଜପୁର ସପ୍ତମାତୃକାଙ୍କ ମଧ୍ୟରେ ବ୍ରାହ୍ମୀ ନାହାନ୍ତି ।

ମାହେଶ୍ୱରୀ–ଦ୍ୱିତୀୟ ମାତୃକା ହେଉଛନ୍ତି ମାହେଶ୍ୱରୀ । ପୁରୁଷୋତ୍ତମକ୍ଷେତ୍ରରେ ମାହେଶ୍ୱରୀ ବୃଷବାହନା । ଯାଜପୁରର ଦଶାଶ୍ୱମେଧର ଘାଟରେଥିବା ସପ୍ତମାତୃକାଙ୍କ ମଧ୍ୟରେ ମାହେଶ୍ୱରୀ ପ୍ରଥମମାତୃକା । ସେ ଚତୁର୍ଭୁଜା ଓ ତାଙ୍କ ଦକ୍ଷିଣକର ଦ୍ୱୟରେ ଜପାମାଳା, ଅଭୟମୁଦ୍ରା ଥିଲାବେଳେ ବାମକର ଦ୍ୱୟରେ ତ୍ରିଶୂଳ ରହିଛି । ତାଙ୍କ ବାମଜଂଘରେ ସନ୍ତାନଟିଏ ବସିଛି ଓ ବାମଭାଗର ଏକ ହସ୍ତ ସନ୍ତାନ ଉପରେ ନିବଦ୍ଧ । ଅଂଶୁମଦ୍‌ଭେଦାଗମ୍ ତନ୍ତ୍ର ମତରେ ମାହେଶ୍ୱରୀ ତ୍ରିନେତ୍ରା, ଚତୁର୍ଭୁଜା ଓ ତାଙ୍କ ହସ୍ତ ଚତୁଷ୍ଟୟରେ ଶୂଳ, ଜପାମାଳା, ବରଦ, ଅଭୟମୁଦ୍ରା ରହିଛି ।

ଚତୁର୍ଭୁଜା ତ୍ରିନେତ୍ରା ଚ ଅତିରିକ୍ତ ସମପ୍ରଭା ।
ଶୂଳାଭୟଂକର ସବ୍ୟେ ବାମେ ବରଦ ସଂଯୁତା ॥
ଜପମାଳା ସମାଯୁକ୍ତା ଜଟାମୁକୁଟ ସଂଯୁତା ।
ଈଶ୍ୱରେଣୋପମା ହ୍ୟେଷା ଶିବାମାହେଶ୍ୱରୀ ସ୍ମୃତା ॥

ଅନ୍ୟତମ ତନ୍ତ୍ର ବିଷ୍ଣୁଧର୍ମୋତ୍ତର ମତାନୁଯାୟୀ ମାହେଶ୍ୱରୀ ବୃଷାରୂଢ଼ା ଓ ତାଙ୍କର ପାଞ୍ଚଟି ମସ୍ତକ ଅଛି । ସେ ତ୍ରିଲୋଚନା, ଶୁକ୍ଳବର୍ଣ୍ଣା ଏବଂ ଷଡ଼ଭୁଜା । ତାଙ୍କ ଛଅଟି ହସ୍ତରେ ବରଦ, ଅକ୍ଷମାଳା, ଡ଼ମ୍ବରୁ, ତ୍ରିଶୂଳ, ଘଣ୍ଟା ଓ ଅଭୟମୁଦ୍ରା ଶୋଭିତ ।

ମାହେଶ୍ୱରୀ ବୃଷାରୂଢ଼ା ପଞ୍ଚବକ୍ତ୍ରା ତ୍ରିଲୋଚନା ।
ଶୁକ୍ଳେନ୍ଦୁ ଭ୍ରୁ ଛଟାଜୁଟା ଶୁକ୍ଳାସର୍ବ ସୁଖପ୍ରଦା ॥
ଷଡ଼ଭୁଜା ବରଦା ଦକ୍ଷେ ସୂତ୍ରଂ ଡ଼ମ୍ବରୁକଂ ତଥା ।
ଶୂଳଘଣ୍ଟାଭୟଂ ବାମେ ସୈବ ଧରେ ମହାଭୁଜା ॥

କୌମାରୀ–ତୃତୀୟ ମହାବିଦ୍ୟା ହେଉଛନ୍ତି କୁମାରଙ୍କ ଶକ୍ତି କୌମାରୀ । ପୁରୁଷୋତ୍ତମ କ୍ଷେତ୍ର ବା ଶ୍ରୀକ୍ଷେତ୍ରରେ କୌମାରୀ

ତୀୟ ମହାବିଦ୍ୟା ଓ ସେ ମୟୁର ବାହନା । ଯାଜପୁର ଦଶାଶ୍ୱମେଧ ଘାଟରେଥିବା ସପ୍ତମାତୃକାଙ୍କ ମଧ୍ୟରେ କୌମାରୀ ଦ୍ୱିତୀୟ ମାତୃକା । ସେ ଚତୁର୍ହସ୍ତା—ତାଙ୍କ ଦକ୍ଷିଣ କରମାନଙ୍କରେ ଶୂଳ, ଅଭୟମୁଦ୍ରା ଥିବାବେଳେ ବାମ ହସ୍ତ ଦ୍ୱୟରେ ତ୍ରିଶୂଳ ଓ ସନ୍ତାନ ଥିବା ଦେଖାଯାଏ । ଶାସ୍ତ୍ରୀୟ ଧ୍ୟାନମୁତାବକ ଅଂଶୁମଦ୍ ଭେଦାଗମରେ ଲେଖାଅଛି ; କୌମାରୀ ଚତୁର୍ହସ୍ତା ଓ ତ୍ରିନେତ୍ରା । ତାଙ୍କ ହସ୍ତ ଚତୁଷ୍ଟୟରେ ଶକ୍ତି, କୁକୁଟ, ଅଭୟ ଓ ବରଦମୁଦ୍ରା ରହିଛି । ଦେବୀ ଉଦୁମ୍ବର ବୃକ୍ଷକୁ ଆଶ୍ରେକରି ରହିଥାନ୍ତି । ତାଙ୍କର ବାହନ ମୟୁର ।

ବିଷ୍ଣୁଧର୍ମୋତ୍ତର ତନ୍ତ୍ରମତରେ କୌମାରୀଦେବୀ ରକ୍ତବର୍ଣ୍ଣା । ତାଙ୍କର ଛଅଟି ମସ୍ତକ, ବାରଟି ଆଖି ଓ ବାରଟି ହସ୍ତ । ସେ ମୟୁର ବାହନା ଓ ତାଙ୍କ ହସ୍ତଗୁଡ଼ିକରେ ଶକ୍ତି, ପତାକା, ଦଣ୍ଡ, ପାତ୍ର, ବାଣ, ବରଦ, ଧୂପ, ଘଣ୍ଟା, କମଳ, କୁକୁଟ, ପରଶୁ ଓ ଅଭୟ ରହିଛି ।

କୌମାରୀ ରକ୍ତବର୍ଣ୍ଣାସ୍ୟାତ୍ ଷଡ଼୍‌ବକ୍ତ୍ରା ସାର୍କଲୋଚନା ।
ରବିର୍ବାହୁ ମୟୂରସ୍ଥା ବରଦା ଶକ୍ତି ଧାରିଣୀ ॥
ପତାକାଂ ବିଭ୍ରତି ଦଣ୍ଡଂ ପାତ୍ରଂ ବାଣଂ ଚ ଦକ୍ଷିଣେ ।
ବାମେ ଧୂପମଥୋ ଘଣ୍ଟାଂ କମଳଂ କୁକ୍‌କୁଟଦ୍ୱୟଃ ॥
ପରଶଂ ବିଭ୍ରତୀ ତୀକ୍ଷଣଂ ତଦଧଭସ୍ତ୍ୟାନ୍ୱିତା ॥

ଅନ୍ୟାନ୍ୟ ଶାସ୍ତ୍ର ଯଥା ଦେବୀ ପୁରାଣ, ପୂର୍ବ କାରଣାଗମ ଆଦିରେ କୌମାରୀଙ୍କ ଧ୍ୟାନ ଭିନ୍ନ ପ୍ରକାର ହୋଇଛି; କିନ୍ତୁ ଏହି ଶାସ୍ତ୍ରୀୟ ଧ୍ୟାନ ମୁତାବକ ଓଡ଼ିଶାର କୌଣସି ମାତୃକା ପୀଠରେ କୌମାରୀଙ୍କ ସ୍ୱରୂପ ମିଶେ ନାହିଁ । କାହିଁକିନା ପ୍ରତ୍ୟେକ ତନ୍ତ୍ରାଗ୍ରହୀ ସେମାନଙ୍କ ଅନୁଭବ ଅନୁଯାୟୀ ଧ୍ୟାନ ରଚନା କରିଥାନ୍ତି । ଜଣଙ୍କ ଅନୁଭବ ସହିତ ଅନ୍ୟର ଅନୁଭବ ମିଶେ ନାହିଁ ।

ବୈଷ୍ଣବୀ—ଚତୁର୍ଥ ମାତୃକା ବୈଷ୍ଣବୀ ନାମରେ ନାମିତା । ବିଷ୍ଣୁଙ୍କର ବାହନ ଗରୁଡ଼ ଯୋଗୁ ବୈଷ୍ଣବୀ ଗରୁଡ଼ାସନୀ । ପୁରୁଷୋତ୍ତମ କ୍ଷେତ୍ରର ସପ୍ତମାତୃକାଙ୍କ ମଧ୍ୟରେ ବୈଷ୍ଣବୀ, ଚତୁର୍ଥ ମାତୃକା । ଯାଜପୁରର ସପ୍ତମ ମାତୃକାଙ୍କ ମଧ୍ୟରେ ବୈଷ୍ଣବୀ ଶିବ ଦୂତୀଙ୍କ ପରେ ଚତୁର୍ଥୀ ହୋଇ ବସିଛନ୍ତି । ତାଙ୍କ ଦକ୍ଷିଣ ଭୁଜରେ ଚକ୍ର ଓ ଅଭୟମୁଦ୍ରା, ବାମ ଭୁଜ ଦ୍ୱୟରେ ଶଙ୍ଖ ଓ ସନ୍ତାନ ରହିଛି । ଅଂଶୁମଦ୍‌ଭେଦାଗମ ଶାସ୍ତ୍ର ମତରେ ବୈଷ୍ଣବୀ ଚତୁର୍ଭୁଜା, ସୁରୁବଦନା, ସୁଲୋଚନା, ପୀତାମ୍ବରା, କିରୀଟମୁକୁଟଯୁକ୍ତା, ଗରୁଡ଼ାସନା । ତାଙ୍କ ଦୁଇ ହସ୍ତରେ ଶଙ୍ଖ ଚକ୍ର ଆୟୁଧ ରୂପେ ରହିଛି ଓ ବର ଅଭୟ ମୁଦ୍ରା ଶୋଭାପାଉଛି ।

ଶଂଖ ଚକ୍ରଧର ଦେବୀ ବରଦାଭୟ ପାଣିନୀ
ସୁସ୍ତନା ସୁରୁବଦନା ଶ୍ୟାମାଭା ଚ ସୁଲୋଚନା ॥
ପୀତାମ୍ବର ଧରାଦେବୀ କିରୀଟ ମୁକୁଟାନ୍ୱିତା ।
ରାଜ ବୃକ୍ଷସମାଶ୍ରିତ୍ୟ ଗରୁଡ଼ ଧ୍ୱଜ ବାହିନୀ ।
ବୈଷ୍ଣବୀ ପୀଠଗା ଦେବୀଂ ବିଷ୍ଣୁ ଭୂଷଣ ଭୂଷିତା ॥

ବିଷ୍ଣୁଧର୍ମୋତ୍ତର ମତ ଅନୁସାରେ ବୈଷ୍ଣବୀ ଷଡ଼୍‌ଭୁଜା । ତାଙ୍କ ଗ୍ରୀବା ବନମାଳାରେ ଭୂଷିତା ଓ ସେ ତାଙ୍କ ଭୁଜମାନଙ୍କରେ ଶଂଖ, ଚକ୍ର, ଗଦା ଓ ପଦ୍ମମାଳା ଧାରଣ କରିଛନ୍ତି । ତାଙ୍କର ଅନ୍ୟ ଦୁଇଟି ହସ୍ତରେ ବରଦ ଓ ଅଭୟମୁଦ୍ରା ଶୋଭାପାଉଛି । ବୈଷ୍ଣବୀ ଗରୁଡ଼ାସନା ।

ବୈଷ୍ଣବୀ ତାର୍ଯ୍ୟଗା ଶ୍ୟାମା ଷଡ଼୍‌ଭୁଜା ବନମାଳିନୀ
ବରଦା ଗଦିନୀଦକ୍ଷେ ବିଭ୍ରତୀ ସମ୍ବୁଜସ୍ରଜମ୍ ।
ଶଙ୍ଖଚକ୍ରାଭୟାନ୍ ବାମେ ତେୟଂ ବିଲସଦ୍‌ଭୁଜା ॥

ଇନ୍ଦ୍ରାଣୀ—ଯାଜପୁରର ସପ୍ତମାତୃକା ମଧ୍ୟରେ ପଞ୍ଚମ ମାତୃକା ହେଉଛନ୍ତି ଇନ୍ଦ୍ରାଣୀ । ସେ ତାଙ୍କ ଦକ୍ଷିଣ ଓ ବାମ ଭାଗର ଊର୍ଦ୍ଧ୍ୱ ହସ୍ତ ଦ୍ୱୟରେ ବଜ୍ର ଧାରଣ କରିଛନ୍ତି । ନିମ୍ନ ହସ୍ତରେ ସନ୍ତାନ ଶୋଭା ପାଉଛି । ପୁରୁଷୋତ୍ତମ କ୍ଷେତ୍ରରେ ଇନ୍ଦ୍ରାଣୀ ହେଉଛନ୍ତି ପଞ୍ଚମ ମାତୃକା । ଇନ୍ଦ୍ରାଣୀଙ୍କ ନିମ୍ନରେ ଗଜ ଅଛି । ଦେବରାଜ ଇନ୍ଦ୍ରଙ୍କ ଶକ୍ତି ରୂପେ ଇନ୍ଦ୍ରାଣୀ ପ୍ରସିଦ୍ଧ । ହେତୁ ସେ ଇନ୍ଦ୍ରଙ୍କ ଆୟୁଧରେ ଭୂଷିତା ।

ଅଂଶୁମଦ୍‌ଭେଦାଗମ୍ ଶାସ୍ତ୍ର ଅନୁଯାୟୀ ଇନ୍ଦ୍ରାଣୀ ଗଜାରୂଢ଼ା, ଚତୁର୍ଭୁଜା, ତ୍ରିନେତ୍ରୀ । ସେ ତାଙ୍କର ଦୁଇ ହସ୍ତରେ ଶକ୍ତି ଓ ବଜ୍ର ଧାରଣ କରିଥାନ୍ତି ଓ ଅନ୍ୟ ଦୁଇ ହସ୍ତରେ ବରଦ ଓ ଅଭୟ ମୁଦ୍ରା ରହିଥାଏ । ତାଙ୍କର ଦେହ ରକ୍ତବର୍ଣ୍ଣ ଓ ସେ କିରୀଟ ପ୍ରଭୃତି ବିଭିନ୍ନ ଭୂଷଣରେ ଭୂଷିତା ।

ଚତୁର୍ଭୁଜା ତ୍ରିନେତ୍ରୀ ଚ ରକ୍ତବର୍ଣ୍ଣା କିରୀଟିନୀ ।
ଶକ୍ତିବଜ୍ରଧର ଚୈବ ବରଦାଭୟ ପାଣିନୀ ॥
ସର୍ବାଭରଣ ସଂଯୁକ୍ତା ଗଜଧ୍ୱଜସ ବାହିନୀ ।
ଇନ୍ଦ୍ରାଣୀ ଚୈବ ବିଖ୍ୟାତା କଳ୍ପଦ୍ରୁମସମାଶ୍ରିତା ॥

ବିଷ୍ଣୁ ଧର୍ମୋତ୍ତର ଗ୍ରନ୍ଥରେ ଇନ୍ଦ୍ରାଣୀଙ୍କ ସ୍ୱରୂପ ଭିନ୍ନ ଭାବରେ ବର୍ଣ୍ଣିତ ହୋଇଛି । ଇନ୍ଦ୍ରଙ୍କର ଯେଉଁ ଭଳି ସହସ୍ର ନୟନ ସେହିଭଳି ଇନ୍ଦ୍ରାଣୀ ସହସ୍ର ନୟନା ଓ ସେ ସହସ୍ରାକ୍ଷ । ତାଙ୍କର ଛଅଟି ଭୁଜ ଓ ସେହି ଭୁଜରେ ଅକ୍ଷସୂତ୍ର, ବଜ୍ର, କଳଶ, ପାତ୍ର, ଅଭୟ ଓ ବରଦ ମୁଦ୍ରା ରହିଛି । ସେ ସୁବର୍ଣ୍ଣବର୍ଣ୍ଣା ଓ ଗଜ ବାହନା ।

ଐନ୍ଦ୍ରୀ ସହସ୍ରଦୃକ୍ ସୌମ୍ୟା ହେମାଭାଗଜ ସଂସ୍ଥିତା
ବରଦା ସୂତ୍ରିଣୀଂ ବଜ୍ରଂ ବିଭ୍ରତ୍ୟୁର୍ଦ୍ଧ୍ୱଂ ତୁ ଦକ୍ଷିଣେ ॥
ବାମେ ତୁ କଳଶଂ ପାତ୍ରଂ ତ୍ୱଭୟଂ ତ୍ୱଦଧଃ କରେ ॥

ଧର୍ମଶାଳାରେ ଥିବା ସପ୍ତମାତୃକା ମୂର୍ତ୍ତିରୁ କେତୋଟି ରାଜ୍ୟ ସଂଗ୍ରାହଳୟ, ଭୁବନେଶ୍ୱରରେ ସଂରକ୍ଷିତ ହୋଇଛି । ଏହି ମାତୃକାଙ୍କ ମଧ୍ୟରେ ଐନ୍ଦ୍ରୀ ଅଛନ୍ତି । ସେ ବଜ୍ରଧାରିଣୀ ଓ ଗଜ ବାହନା ।

ବରହୀ—ଯାଜପୁରର ମାତୃକାମାନଙ୍କ ମଧ୍ୟରେ ବରହୀ ଷଷ୍ଠ ମାତୃକା । ବରାହୀ ମହିଷାସନା । ସେ ତାଙ୍କ ଦକ୍ଷିଣ କରରେ ନରକରୋଟିର ପାନପାତ୍ର ଓ ବାମ

ହସ୍ତରେ ମାଛଟିଏ ଧାରଣ କରି ବସିଛନ୍ତି । ତାଙ୍କର ମୁଖ ବରାହାକୃତି । ତାଙ୍କର ଉଦର ବଡ଼ ଓ ବିଭିନ୍ନ ଭୂଷଣରେ ଭୂଷିତା । ପୁରୁଷୋତ୍ତମ କ୍ଷେତ୍ରର ସପ୍ତମାତୃକାଙ୍କ ମଧ୍ୟରେ ବରାହୀ ପଞ୍ଚମ ମାତୃକା ଭାବେ ଅବସ୍ଥାନ କରିଛନ୍ତି । ସେ ତାଙ୍କ ଡାହାଣ ହାତରେ ମାଛ ଓ ବାମ ହାତରେ ନରକରୋଟିର ପାନ ପାତ୍ର (ଖର୍ପର) ଧାରଣ କରିଛନ୍ତି । ସପ୍ତମାତୃକାଙ୍କ ବ୍ୟତୀତ ପୁରୀ ଜିଲ୍ଲାର କାକଟପୁର ରାସ୍ତାରେ ଅମରେଶ୍ୱରଙ୍କ ପାଖରେ ଅଷ୍ଟମ ଶତାବ୍ଦୀର ଏକବରାହୀ ମନ୍ଦିର ଅଛି । ଏହି ବରାହୀ ଦ୍ୱିଭୁଜା ଓ ତାଙ୍କ ଦକ୍ଷିଣ ହସ୍ତରେ ମତ୍ସ୍ୟ ଓ ବାମ ହସ୍ତରେ ନରକରୋଟିର ପାନପାତ୍ର । କଟକ ଜିଲ୍ଲାର ରାଜନଗର ଅଞ୍ଚଳରେ ପଞ୍ଚବରାହୀ ଅବସ୍ଥାନ କରିଥିଲେନ୍ତି ।

ଅଂଶୁମଦ୍‌ଭେଦାଗମ ଶାସ୍ତ୍ର ଅନୁଯାୟୀ ବରାହୀଙ୍କ ସ୍ୱରୂପ ପ୍ରଳୟକାଳୀନ ମେଘ ସଦୃଶ ଭୟଙ୍କର । ତାଙ୍କ ମୁଖ ବରାହ ସଦୃଶ । ସେ ବରାହରୂପୀ ବିଷ୍ଣୁଙ୍କର ଶକ୍ତି । ତାଙ୍କ ମସ୍ତକରେ କରଣ୍ଡ ଅର୍ଥାତ୍ ଶୈବାଳରେ ମୁକୁଟ ଓ ତାଙ୍କ ଗଳାରେ ପୋହଳାର ମାଳା । ସେ ଚତୁଃହସ୍ତା । ସେ ତାଙ୍କ ଦୁଇହସ୍ତରେ ହଳ ଲଙ୍ଗଳ ଓ ଶକ୍ତି ଧାରଣ କରିଛନ୍ତି ଓ ଅପର ଦୁଇହସ୍ତରେ ବରଦ ଓ ଅଭୟ ମୁଦ୍ରା ।

ବରାହବକ୍ତ୍ର ସଦୃଶା ପ୍ରଳୟାମ୍ବୁଦସ ସନ୍ନିଭା ।
କରଣ୍ଡ ମୁକୁଟୋପେତା ବହୁ ମ୍ରାଭରଣାନ୍ୱିତା ॥
ହଳଂ ଚ ବରଦଂ ସବ୍ୟେ ବାମେ ଅଭୟ ଶକ୍ତିକେ ।
କଳ୍ପଦ୍ରୁମଂ ସମାଶିତ୍ୟ ଗଜଧ୍ୱଜସବାହିନୀ ।
ବରାହୀ ଚେତି ବିଖ୍ୟାତା ନାମ୍ନାସର୍ବଫଳପ୍ରଦା ।

ଅନ୍ୟତମ ଶାସ୍ତ୍ର 'ରୂପମଣ୍ଡନ' ଅନୁସାରେ ବରାହୀ ଦେବୀ ତାଙ୍କ ଚତୁର୍ହସ୍ତରେ ଘଣ୍ଟା, ଚାମର, ଗଦା, ଓ ଚକ୍ର ଧାରଣ କରିଛନ୍ତି । ସେ ଦାନବେନ୍ଦ୍ର ସଂହାରକାରିଣୀ ଭାବେ ଅତି ଭୀଷଣ ସ୍ୱରୂପା । ତାଙ୍କର ମୁଖ ବରାହଭଳି ଏବଂ ମହିଷ ଉପରେ ସେ ଆରୋହଣ କରିଛନ୍ତି ।

ବରାହୀ ତୁ ପ୍ରବକ୍ଷାମି ମହିଷୋପରି ସଂସ୍ଥିତା ।
ବରହ ସଦୃଶୀ ଦେବୀ ଘଣ୍ଟା ଚାମର ଧାରିଣୀ ।
ଗଦା ଚକ୍ରଧରା ତଦ୍‌ବଦ୍ ଦାନବେନ୍ଦ୍ର ବିଘାତିନୀ ।
ଲୋକାନାଂ ଚ ହିତାର୍ଥାୟ ସର୍ବାବ୍ୟାଧି ବିନାଶିନୀ ॥

ଦେବୀ ପୁରାଣରେ ଉଲ୍ଲେଖ ଅଛି, ବରାହୀ ଗୋଟିଏ ଭୁଜରେ ଦଣ୍ଡ ଧାରଣ କରି ଅନ୍ୟ ହସ୍ତରେ ନରକପାଳର ପାନପାତ୍ରରୁ ରୁଧିର ପାନ କରନ୍ତି ।

ଦୈବସ୍ୱତୀ ପ୍ରକର୍ତବ୍ୟା ଦୁର୍ଦ୍ଧର ମହିଷୋପରି ।
ହୁଂକାରାସ୍ୟା କପାଳେ ଅସୃକ୍ ପିବନ୍ତୀ ଦଣ୍ଡଧାରିଣୀ ॥

ଚାମୁଣ୍ଡା–ସର୍ବଶେଷ ବା ସପ୍ତମମାତୃକା ହେଉଛନ୍ତି ଚାମୁଣ୍ଡା । ଚଣ୍ଡୀଗ୍ରନ୍ଥ ଅନୁସାରେ ଚାମୁଣ୍ଡା ଦେବୀ ଦୁର୍ଗାଙ୍କ କପାଳରୁ ଆବିର୍ଭୂତା । ସେଥିପାଇଁ ବୋଧେ ଭୁବନେଶ୍ୱରର ବୈତାଳୀ ମନ୍ଦିର ପୀଠ ଦେବୀ ଚାମୁଣ୍ଡାଙ୍କୁ କପାଳୀ କୁହାଯାଏ । ଓଡ଼ିଶାର ପ୍ରଖ୍ୟାତ ଐତିହାସିକ ଡଃ; କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଚାମୁଣ୍ଡାଙ୍କୁ ବୌଦ୍ଧ ଦେବୀ ଭାବେ ଚିହ୍ନଟ କରନ୍ତି । ମୟୁ... ଜଲ୍ଲାର ଖିଚିଂରେ ଆରାଧିତା କୀଚକେଶ୍ୱରୀ ଚାମୁଣ୍ଡା ସ୍ୱ... ଡଃ ପାଣିଗ୍ରାହୀ ଏହି କୀଚକେଶ୍ୱରୀଙ୍କ **Budhist Iconography** ରେ ଅସ୍ଥିକଙ୍କାଳସାର ଶରୀରା ସ୍ୱ... ଚର୍ଚ୍ଚିକା ନାମରେ ଅବିହିତ କରାଯାଇଛି । ଓଡ଼ିଶାର ମଧ୍ୟ... କୂଳର ବାଙ୍କିଠାରେ ଅସ୍ଥିକଙ୍କାଳସାର ଶରୀରା ଚର୍ଚ୍ଚିକା ନାମରେ ବିଖ୍ୟାତ । ପ୍ରତି ତନ୍ତ୍ର ପୀଠରେ ଚାମୁଣ୍ଡା ମୂର୍ତ୍ତି ଦେଖିବାକୁ ମିଳେ । ଉପବାସୀ ବୁଦ୍ଧଙ୍କର ଶକ୍ତି ସ୍ୱୀ ରୂପ ହେଉଛନ୍ତି ଚାମୁଣ୍ଡା । ଚାମୁଣ୍ଡା ସର୍ବତ୍ର ଶବବାହନ... ଶ୍ରୀକ୍ଷେତ୍ରର ସପ୍ତମାତୃକାଙ୍କ ମଧ୍ୟରେ ଥିବା ଚାମୁଣ୍ଡା ଚତୁ... ହେଲେ ମଧ୍ୟ ତାଙ୍କର ଦୁଇ ହାତ ଭଗ୍ନ । ଅବଶିଷ୍ଟ ଦୁଇହ... ମଧ୍ୟରୁ ଦକ୍ଷିଣରେ ଖଡ୍‌ଗ ଓ ବାମରେ ତ୍ରିଶୂଳ ଧା... କରିଛନ୍ତି । ଯାଜପୁରର ସପ୍ତମାତୃକାଙ୍କ ମଧ୍ୟରେ ଥି... ଚାମୁଣ୍ଡା ଚତୁର୍ହସ୍ତା । ସେ ତାଙ୍କ ଦକ୍ଷିଣ କର ଦ୍ୱୟ... ଖଡ୍‌ଗ ଓ ନରକରୋଟି ଏବଂ ବାମର ହସ୍ତ ଦ୍ୱୟରେ ତ୍ରିଶୂ... ଓ ମୁଣ୍ଡ ଧାରଣ କରିଛନ୍ତି । ଏହି ଚାମୁଣ୍ଡାଙ୍କୁ କେବେ କେବେ... କାଳୀରୂପେ ସଜାଇ ଦିଆଯାଏ ।

ଅଂଶୁମଦ୍‌ଭେଦାଗମ ଶାସ୍ତ୍ରରେ ଉଲ୍ଲେଖ ଅଛି ଦେବୀ ଚାମୁଣ୍ଡା ଚତୁର୍ଭୁଜା, ତିନେତ୍ରା, ରକ୍ତବର୍ଣ୍ଣା, ଊର୍ଦ୍ଧ୍ୱକେଶା, ନର କପାଳ ଓ ଶୂଳହସ୍ତା । ତାଙ୍କ ଅପର ଦୁଇ ହସ୍ତରେ ବରଦ ଓ ଅଭୟମୁଦ୍ରା ରହିଛି । ସେ ମୁଣ୍ଡମାଳକୁ ଯଜ୍ଞୋପବୀତ କରି ଧାରଣ କରିଥାନ୍ତି । ଦେବୀ ଚାମୁଣ୍ଡା ବ୍ୟାଘ୍ର ଚର୍ମ ପରିଧାନା ଓ ସେ ବଟବୃକ୍ଷ ସମାଶ୍ରିତା ।

ଚତୁର୍ଭୁଜା ତ୍ରିନେତ୍ରା ଚ ରକ୍ତୋବର୍ଣ୍ଣୋର୍ଦ୍ଧ୍ୱ କେଶିକା ।
କପାଳ ଶୂଳହସ୍ତା ଚ ବରଦାଭୟ ପାଣିନୀ ॥
ଶିରୋମାଳୋପବୀତା ଚ ପଦ୍ମପୀଠୋପରି ସ୍ଥିତା ।
ବ୍ୟାଘ୍ର ଚର୍ମାମ୍ବରଧରା ବଟବୃକ୍ଷ ସମାଶ୍ରିତା ।
ବାମ ପାଦ ସ୍ଥିତା ସର୍ବା ସବ୍ୟପାଦ ପ୍ରଲମ୍ବିତା ॥

ଓଡ଼ିଶାର ବିଭିନ୍ନ ତନ୍ତ୍ରପୀଠରେ ବହୁ ଚାମୁଣ୍ଡା ଦେବୀ ପୂଜିତା । ସେମାନେ କିନ୍ତୁ ଅଂଶୁମଦ୍ ଭେଦାଗମ ଭଳି ନୁହଁନ୍ତି । ଦେଖିବାକୁ ଗଲେ 'ବିଷ୍ଣୁଧର୍ମୋତ୍ତର, ଭଳି ସ୍ୱରୂପା ମାତ୍ର ତାଙ୍କ ଆୟୁଧ ଭିନ୍ନ । ବିଷ୍ଣୁ ଧର୍ମୋତ୍ତରରେ ଉଲ୍ଲେଖ ଅଛି–ଚାମୁଣ୍ଡା ଦଶଭୁଜା । ତାଙ୍କ ହସ୍ତରେ ମୂଷଳ, କବଚ, ଶର, ଅଙ୍କୁଶ, ଖଡ୍‌ଗ, ଖେଟକ, ପାଶ ଧନୁର୍ଦ୍ଦଣ୍ଡ,- କୁଠାର ଶୋଭା ପାଉଛି । ସେ ପ୍ରେତାସନା, କ୍ଷୀଣଦେହା, ତାଙ୍କ ଚକ୍ଷୁ କୋଟରଗତ ।

ଚାମୁଣ୍ଡା ପ୍ରେତଗା ରକ୍ତା ବିକୃତାସ୍ୟାହି ଭୂଷଣା ।
ଦଂଷ୍ଟ୍ରୋଗ୍ରା କ୍ଷୀଣଦେହୀ ଚ ଗର୍ତ୍ତାକ୍ଷୀ ଭୀମରୂପିଣୀ ॥
ଦିଗ୍‌ବାହୁ କ୍ଷମ କୁକ୍ଷିଶ୍ଚ ମୂଷଳଂ କବଚଂ ଶରଂ ।
ଅଙ୍କୁଶଂ ବିଭ୍ରତୀ ଖଡ୍‌ଗଂ ଦକ୍ଷିଣେ ତ୍ୱଥ କାମତଃ ॥
ଖେଟଂ ପାଶଂ ଧନୁର୍ଦ୍ଦଣ୍ଡଂ କୁଠାରଂ ଚେତି ବିଭ୍ରତୀ ॥

ଅଷ୍ଟମ ଶତାବ୍ଦୀ ବା ତତ୍‌ପୂର୍ବରୁ ଓଡ଼ିଶାରେ ମାତୃକା ପୂଜା ବିଶେଷଭାବରେ ଅନୁଷ୍ଠିତ ହେଉଥିଲା । ତେଣୁ ତନ୍ତ୍ର ପୀଠମାନଙ୍କରେ ମାତୃକାମାନଙ୍କର ମୂର୍ତ୍ତି ଗଠିତ

ହୋଇ ଉପାସିତା ହେଉଥିଲେ । କାଳିକାପୁରାଣ କହେ, 'ଓଡ୍ରାଖ୍ୟା ପ୍ରଥମଂ ପୀଠ' । ତେଣୁ ତନ୍ତ୍ରର ପ୍ରଥମ ହେଉଛି ଓଡ଼ିଶା । ମନେ ରଖିବାକୁ ହେବ ତନ୍ତ୍ର ମତାନୁସାରେ ଦେବତା ଆରାଧନା ପୂଜା ମାଧ୍ୟମରେ ହୁଏ । ପୂଜା ହେଉଛି ତାନ୍ତ୍ରିକ ଶବ୍ଦ । ବେଦର କୌଣସି ସ୍ଥାନରେ ପୂଜା ଶବ୍ଦ ନାହିଁ । ପରନ୍ତୁ, ପରବର୍ତ୍ତୀ କାଳରେ ବୈଦିକମାନେ ତନ୍ତ୍ର ମଧ୍ୟରେ ପ୍ରବେଶ କରି ତନ୍ତ୍ର ପୂଜା ଶେଷରେ ବୈଦିକ ଆରାଧନାର ସଙ୍କେତ ଯଜ୍ଞ ହୋମ ରୂପେ ପ୍ରଚଳିତ କରେ । ବେଦ ଓଡ଼ିଶାରେ ଲେଖା ହୋଇନାହିଁ; କିନ୍ତୁ ତନ୍ତ୍ର ଓଡ଼ିଶା ଭୂମିରୁ ଆରମ୍ଭ । ସେଥିପାଇଁ ତନ୍ତ୍ର ଓଡ଼ିଶାର ଯଥା ସର୍ବସ୍ୱ । ବିଭିନ୍ନ ଉପସ୍ଥରରେ ଦେବତାର ଆରାଧନା ବହୁ ପୂର୍ବ କାଳରୁ ପ୍ରଚଳିତ । ଓଡ଼ିଶାରେ କେବଳ ମାତୃକା ପୂଜା ହେଉଥିଲା ତାହା ନୁହେଁ; ମାତୃକା ଉପାସନା, ଯୋଗିନୀ ଉପାସନା, କୁମାରୀ ଉପାସନା ଆଦି ସମାଜରେ ବେଶ ଲୋକପ୍ରିୟ ଯଥା ଅର୍ଚ୍ଚନ କରିଥିଲା । ଆଜି କେବଳ ମୂକ ସାକ୍ଷୀ ରୂପେ ସେସବୁ ଦେବୀ ଅବସ୍ଥାନ କରିଛନ୍ତି ।

କ୍ୱାଟର ନଂ ୭୭, ଟାଇପ୍-୪
ଡେଲ୍‌ଟା କଲୋନି
ଭୁବନେଶ୍ୱର-୧୨



ପୁରୀ ଜିଲ୍ଲା ଭୋଦର ଗ୍ରାମରେ
ପାହାନ୍ତି କାଳିକା ପୂଜା



ପୁରୀ ଜିଲ୍ଲା ଭୋଦର ଗ୍ରାମରେ
ଦୁର୍ଗା ପୂଜା



# ବାବୁଲାଲ ଦୋଶୀଙ୍କ ସ୍ମରଣେ......

ଜନ୍ମ - ୧୯୧୮ ମଇ ୩୧ (ଗୁଜୁରାଟ)
ତିରୋଧାନ - ୧୯୮୪ ସେପ୍ଟେମ୍ବର ୨୫
ସ୍ଥାନ - କଳାବିକାଶ କେନ୍ଦ୍ର (କଟକ)

ବାବୁଲାଲ ଦୋଶୀ ଓଡ଼ିଶାର ସମସ୍ତଙ୍କ ନିକଟରେ ବାବୁଲାଲ ରୂପେ ସୁପରିଚିତ।

ବାବୁଲାଲ ବାଲ୍ୟକାଳରେ 'ବାପ,' 'ମା' ହରାଇ ମାମୁଁଘରେ ଆଈଙ୍କ କୋଳରେ ବଢ଼ିଥିଲେ। ପିଲାଟି ଦିନୁ ତାଙ୍କର ନୃତ୍ୟଗୀତ ପ୍ରତି ଖୁବ୍ ଆକର୍ଷଣ ଥିଲା। ସ୍କୁଲରେ ପାଠ ପଢ଼ିବା ସମୟରେ ସେ ଗୀତ ଗାଇ ପ୍ରଶଂସା ପାଉଥିଲେ।

୧୯୨୮ ଜାନୁଆରୀ ୨୬ ତାରିଖରେ ଗାନ୍ଧିଜୀଙ୍କ ଡାକରେ ସେ ଭାରତର ସ୍ୱାଧୀନତା ଲାଗି ଶପଥ ଗ୍ରହଣ କରିଥିଲେ ଓ ସେହି ଦିନଠାରୁ ୧୯୩୧ ମସିହା ରୋଲଟେବୁଲ୍ ବୈଠକ ପର୍ଯ୍ୟନ୍ତ ଶୋଭାଯାତ୍ରା, ପ୍ରଭାତ-ଫେରିରେ ଗୀତ ଗାଇ ବୁଲୁଥିଲେ। ୧୯୩୮ରେ ସେ ହଠାତ୍ କଟକରେ ଆସି ପହଞ୍ଚିଲେ। ୧୯୪୩ ରୁ ୧୯୪୭ ପର୍ଯ୍ୟନ୍ତ ସେ ଭଜସ୍ଥାନରୁ ଆସୁଥିବା ମୋହନ ସୁନ୍ଦର ଗୋସ୍ୱାମୀଙ୍କର ରହାସ ଦଳ ଓ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟରର ନାଟକସବୁ ଦେଖୁଥିଲେ। ଏହା ଫଳରେ ତାଙ୍କର ନୃତ୍ୟଗୀତ ପ୍ରତି ଆକର୍ଷଣ ଖୁବ୍ ବଢ଼ି-ଯାଇଥିଲା। ୧୯୪୨ରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ। ୧୯୪୪ରେ ବାବୁଲାଲ ଦୁଇ ବର୍ଷ କଂଗ୍ରେସ ଦଳରେ ରହିବା ପରେ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ। ଏହି ସମୟରେ ସୋସାଲିଷ୍ଟ ପାର୍ଟିର ସାଂସ୍କୃତିକ ବିଭାଗ ଖୋଲାଗଲା। ବାବୁଲାଲଙ୍କ ସହିତ ଅନ୍ୟ କେତେଜଣ ଉଦ୍ୟୋକ୍ତା ଉକ୍ତ ସାଂସ୍କୃତିକ ସଂସ୍ଥା ଜରିଆରେ ଅନେକଗୁଡ଼ିଏ ନାଟକ ପରିବେଷଣ କରିଥିଲେ। ପ୍ରଥମ ନାଟକଟି ଶ୍ରୀ ମନୋରଞ୍ଜନ ଦାସଙ୍କ ଅଗଷ୍ଟ ୯, ଶ୍ରୀ ନିତାଇ ପାଲିତ୍‌ଙ୍କ ପରିଚାଳନାରେ କରାଯାଇଥିଲା। ଏହି ନାଟକରେ ବାବୁଲାଲ ବିଶ୍ୱରପତି ଭୂମିକାରେ ଅଂଶ ଗ୍ରହଣ କରିଥିଲେ। ଦ୍ୱିତୀୟ ନାଟକ ଭାବେ ପରିବେଷିତ ଶ୍ରୀ ବୈକୁଣ୍ଠନାଥଙ୍କର 'ବାଜିରାଉତ'ରେ ମଧ୍ୟ ବାବୁଲାଲ ଅଂଶ ଗ୍ରହଣ କରିଥିଲେ।

ସମୟକ୍ରମେ ସେ ଯେଉଁ ସଂସ୍ଥା ସହିତ ସଂଶ୍ଳିଷ୍ଟ ଥିଲେ ତାହା ବେଶିଦିନ ତିଷ୍ଠି ପାରିଲା ନାହିଁ। ଏହି ସମୟରେ ଭାରତୀୟ ଲଳିତ କଳା ନାମକ ଗୋଟିଏ ସଙ୍ଗୀତ ଅନୁଷ୍ଠାନ କଟକରେ ଖୋଲା ଗଲା, ମାତ୍ର ଅର୍ଥ ଓ ଉତ୍ସାହ ଅଭାବରୁ ତାହା ବନ୍ଦ ହୋଇଗଲା। ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସ୍ୱର୍ଗତଃ ବାବୁଲାଲ ଦୋଶୀ ୧୯୫୨ ଅଗଷ୍ଟ ୧୦ ତାରିଖରେ କଟକ କଳାବିକାଶ କେନ୍ଦ୍ର ପ୍ରତିଷ୍ଠା କରି ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ତାହାର ପୃଷ୍ଠପୋଷକତା କରି ଆସୁଥିଲେ।

ବାବୁଲାଲ ଖାଲି କଳାବିକାଶ କେନ୍ଦ୍ର ଗଢ଼ିଯାଇ ନାହାନ୍ତି, ସେ ଓଡ଼ିଶୀ ନୃତ୍ୟ ଓ ଗୀତକୁ ସର୍ବଭାରତୀୟ ସ୍ତରରେ ପ୍ରସାର କରି ଯାଇଛନ୍ତି। ଏହାଛଡ଼ା ସେ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଓଡ଼ିଆ ଚଳଚ୍ଚିତ୍ର ପ୍ରଯୋଜକ ଭାବେ ଖ୍ୟାତି ଅର୍ଜନ କରିଛନ୍ତି ଓ ସେଥିମଧ୍ୟରୁ ତିନିଗୋଟି ଚଳଚ୍ଚିତ୍ର ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ଦ୍ୱାରା ପୁରସ୍କାର ଲାଭ କରିଛି।



# ଶକ୍ତି ସ୍ୱରୂପିଣୀ ସୀତା

ଶ୍ରୀମଦ୍ ସ୍ୱାମୀ ହରଚରଣ ଦାସ
(ରାମାୟଣୀ ବାବା)

ଶକ୍ତି ଉପାସନା ଶାସ୍ତ୍ର ପୁରାଣମାନଙ୍କରେ ପରଂବ୍ରହ୍ମଙ୍କ ଲୀଳା ସହିତ ବା ସ୍ୱତନ୍ତ୍ର ରୂପେ ବର୍ଣ୍ଣିତ ହୋଇଅଛି । ଆଦ୍ୟାଶକ୍ତିଙ୍କୁ ବେଦାନ୍ତବିତ୍ ବିଦ୍ୱାନମାନେ ନିତ୍ୟା, ଅଜ୍ଞା, ଅଚେତନା ମୂଳ ପ୍ରକୃତି, ଶକ୍ତି, ତ୍ରିଗୁଣାତ୍ମିକା, ଅଜା, ବିଶ୍ୱଯୋନି, ଅବ୍ୟକ୍ତା, ବ୍ୟକ୍ତା, ମହାମାୟା, ପ୍ରଧାନା ଆଦି ନାମରେ କହିଛନ୍ତି । ଉପାସନା ଦୃଷ୍ଟିରୁ ମହାକାଳୀ, ଚଣ୍ଡୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ଏବଂ ଦଶ ମହାବିଦ୍ୟା ଉପାସକମାନେ—କାଳୀ, ତାରା, ଷୋଡଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ବଗଳାମୁଖୀ, ମାତଙ୍ଗୀ ଓ କମଳା ନାମରେ ପୂଜା କରି ଆସିଛନ୍ତି । ଭାରତର ବିଭିନ୍ନ କୋଣରେ ମହାଶକ୍ତି ବିଭିନ୍ନ ନାମ ନେଇ କାଶ୍ମୀରରେ ବୈଷ୍ଣୋଦେବୀଠାରୁ ଆରମ୍ଭକରି କନ୍ୟାକୁମାରୀର କୁମାରୀ ଦେବୀ ପର୍ଯ୍ୟନ୍ତ ବିଭିନ୍ନ ଶକ୍ତିପୀଠରେ ଅବାହମାନ କାଳରୁ ପୂଜିତ ହୋଇ ଆସୁଛନ୍ତି ।

ପରଂବ୍ରହ୍ମଙ୍କ ଦୈବୀଲୀଳାରେ ବ୍ରହ୍ମାଙ୍କ ପତ୍ନୀ ବ୍ରହ୍ମାଣୀ, ବିଷ୍ଣୁଙ୍କ ପତ୍ନୀ ଶ୍ରୀଦେବୀ ବା ଲକ୍ଷ୍ମୀ ଓ ଶିବଙ୍କ ପତ୍ନୀ ପାର୍ବତୀ ତଥା ଅନ୍ୟ ଦେବଙ୍କ ସହିତ ଶକ୍ତିମାନେ ବିଭିନ୍ନ ନାମ ନେଇ ପୂଜା ପାଉଛନ୍ତି । ବ୍ରହ୍ମଙ୍କ ମାନବୀୟ ଲୀଳାରେ ଅବତାର ବେଳେ ସୀତା, ରାଧା, ଲକ୍ଷ୍ମୀ ଆଦି ସେହି ମହାଶକ୍ତିର ହିଁ ସ୍ୱରୂପ । ଏଠାରେ ପରାତ୍ପରା ଆଦ୍ୟାଶକ୍ତି ଜଗଜ୍ଜନନୀ ସୀତା ମହାରାଣୀଙ୍କ ଉପାସନା ପ୍ରସଙ୍ଗରେ ଶ୍ରୁତି ଆଗମରୁ ବିଭିନ୍ନ ସମୟରେ ଶାସ୍ତ୍ରଜ୍ଞ ବିଦ୍ୱାନଗଣଙ୍କ ମତ ଉଲ୍ଲେଖ କରାଯାଉଅଛି । ସୀତା ମହାରାଣୀଙ୍କୁ ବ୍ରହ୍ମବିଦ୍ୟା ସ୍ୱରୂପିଣୀ, କାର୍ଯ୍ୟ କାରଣମୟୀ, ଆଦ୍ୟାଶକ୍ତି ଓ ସର୍ବଦେବଦେବୀମୟୀ ମୂଳ ପ୍ରକୃତିରୂପେ କୁହାଯାଉଛି ।

ବ୍ରହ୍ମର ସ୍ୱରୂପାଶକ୍ତି ପ୍ରକୃତି ସଂବନ୍ଧରେ ଯଜୁର୍ବେଦର ପୁରୁଷସୂକ୍ତରେ କୁହାଯାଉଛି ଯେ ଏକପାଦ ବିଭୂତି ହେଉଛି କାର୍ଯ୍ୟକାରଣାତ୍ମିକା ଦୃଶ୍ୟାଦୃଶ୍ୟମାନ ଜଗତ୍ ଓ ତ୍ରିପଦ ବିଭୂତି ବ୍ରହ୍ମଙ୍କ ନିତ୍ୟଧାମ ଯାହାକୁ ସାକେତ ଗୋଲକ ଓ ବୈକୁଣ୍ଠ ନାମରେ କୁହାଯାଉଅଛି—

'ପାଦସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟା ମୃତଂଦିବି' ।
(ଯଜୁର୍ବେଦ ପୁରୁଷ ସୂକ୍ତ-୩)

ଉପରୋକ୍ତ ଚତୁର୍ପାଦ ବିଭୂତି ଯାହାକି ସୃଷ୍ଟି ଓ ନିତ୍ୟଧାମ, ଏସମସ୍ତ ପରମପୁରୁଷ ଶ୍ରୀରାମଙ୍କ ପରାତ୍ପରା ଶକ୍ତି ଶ୍ରୀ ସୀତା । ମା' ସୀତାଙ୍କୁ ଅନେକ ନାମରେ ଅଦ୍ଭୁତ ରାମାୟଣର ଉତ୍ତରାକାଣ୍ଡ ପଞ୍ଚଦଶ ସର୍ଗରେ କୁହାଯାଉଅଛି ଯେ—

ବୃଷାସନଗତା ଗୌରୀ ମହାକାଳୀ ସୁରାର୍ଚ୍ଚିତା ।
ଅଦିତିର୍ନିୟତା ରୌଦ୍ରୀ ପଦ୍ମଗର୍ଭା ବିବାହନା ॥

❊ ❊ ❊

ବ୍ରହ୍ମର୍ଷି ବ୍ରହ୍ମହୃଦୟା ବ୍ରହ୍ମାବିଷ୍ଣୁ ଶିବପ୍ରିୟା
ବ୍ୟୋମଶକ୍ତି, କ୍ରିୟାଶକ୍ତି ଜ୍ଞାନଶକ୍ତି ପରାଗତିଃ ॥

ସେ ବ୍ରହ୍ମାଶକ୍ତି, ବିଷ୍ଣୁଶକ୍ତି ଓ କ୍ରିୟାଶକ୍ତି ଅଟନ୍ତି ତଥା ସର୍ବଦେବଦେବୀମୟୀ । ସେ ମହାକାଳୀ ହୋଇ ସହସ୍ରସ୍କନ୍ଧ ରାବଣଙ୍କୁ ବଧ କରିଛନ୍ତି । କଳନା କରି ଯେ ସମସ୍ତଙ୍କୁ କାଳ-ରୂପରେ ନିଜ କୋଳକୁ ଗ୍ରହଣ କରିଥାଏ—ସେ କାଳୀ ବା କାଳରାତ୍ରି ମଧ୍ୟ । ବାଲ୍ମୀକି ରାମାୟଣରେ ହନୁମାନ ରାବଣଙ୍କୁ କହୁଛନ୍ତି— ହେ ରାବଣ ! ଯେଉଁ ସୀତା ତୁମର ଘରେ ତୁମେ ରଖିଅଛ, ତୁମେ ଜାଣିରଖ ଯେ ସେ ସଂପୂର୍ଣ୍ଣ ଲଙ୍କାର ବିନାଶକାରିଣୀ କାଳରାତ୍ରି ।

"ଯାଂ ସୀତେତ୍ୟଭିଜାନାସି ଯେୟଂ ତିଷ୍ଠତି ତେ ଗୃହେ
କାଳରାତ୍ରୀତି ତାଂ ବିଦ୍ଧି ସର୍ବଲଙ୍କା ବିନାଶିନୀମ୍" ।

(୫-୫୧-୩୪)

ଚଣ୍ଡି ସପ୍ତସତୀରେ ମହାଶକ୍ତିଙ୍କୁ
"କାଳରାତ୍ରି, ମହାରାତ୍ରି,ମୋହରାତ୍ରିଶ୍ଚ ଦାରୁଣା"

(୧—୬୯)

ବୋଲି କୁହାଯାଉଛି । ବାଲ୍ମୀକି ରାମାୟଣର ଲଙ୍କା କାଣ୍ଡରେ ବ୍ରହ୍ମାପ୍ରଭୁ ରାମଚନ୍ଦ୍ରଙ୍କୁ ସ୍ତୁତି କଲାବେଳେ କହୁଛନ୍ତି—ହେ ରାମ ! ଆପଣ ଚକ୍ରଧାରୀ ଲକ୍ଷ୍ମୀପତି ପ୍ରଭୁ ନାରାୟଣ ଏବଂ ଅଧ୍ୟାତ୍ମ

ରାମାୟଣରେ ଜଗଜ୍ଜନନୀ ସୀତାଙ୍କୁ ମହାଲକ୍ଷ୍ମୀ ବୋଲି କୁହାଯାଇଛି ଏବଂ ସମସ୍ତ ସ୍ତ୍ରୀ ସେହି ଏକ ମହାଶକ୍ତିର ବିଭିନ୍ନ ରୂପ—ଜଗତ୍ସୁ ବିଦ୍ୟାସମସ୍ତାସ୍ତବ ଦେବୀ ଭେଦାଃ ସ୍ତ୍ରୀୟଃ ସମସ୍ତା ସକଳା ।

(ସପ୍ତସତୀ—୧୧।୬)

ସୀତା ହେଉଛନ୍ତି ଉତ୍ପତ୍ତି, ସ୍ଥିତି, ସଂହାରକାରିଣୀ ଓ ମୂଳ ପ୍ରକୃତି । ପ୍ରତି ମୁହୂର୍ତ୍ତରେ ଯେଉଁ ସୃଷ୍ଟି ବା ସୃଜନ ଓ ସୃଷ୍ଟିର ପାଳନ ଆଦିକ୍ରିୟା ହେଉଅଛି ତାହା ଭଗବତୀ ମୂଳ ପ୍ରକୃତି ସୀତାଙ୍କ ଦ୍ୱାରା ସଂପାଦିତ ହୋଇଥାଏ ବୋଲି ଉତ୍ତର ତାପନୀୟୋପନିଷଦରେ କୁହାଯାଇଛି ।

'ଉତ୍ପତ୍ତିସ୍ଥିତି ସଂହାରକାରିଣୀଂ ସର୍ବଦେବୀନାଂ
ସୀତା ଭଗବତୀ ଜ୍ଞେୟାମୂଳ ପ୍ରକୃତି ସଂଜ୍ଞିତା'

(ରାମୋତ୍ତର ତାପନୀୟୋପନିଷଦ୍)

"ପରଂବ୍ରହ୍ମ ସୃଷ୍ଟି ପୂର୍ବରୁ ଏକ ଓ ଅଦ୍ୱିତୀୟ ଥାଇ ନିଜ ସ୍ୱରୂପା ଶକ୍ତି" ସାହାଯ୍ୟରେ ଦିବ୍ୟଇଚ୍ଛା କରନ୍ତି ସୃଷ୍ଟି କରିବା ପାଇଁ "ଏକୋ‌ଽହଂ ବହୁସ୍ୟାଂ ଇତି ପ୍ରଜାୟେୟ" (ଯଜୁର୍ବେଦ) ନ୍ୟାୟରେ ସେ ଏକରୁ ଅନେକ ହୁଅନ୍ତି । ତାଙ୍କ ଇଚ୍ଛାଶକ୍ତି, ଜ୍ଞାନଶକ୍ତି ଓ କ୍ରିୟାଶକ୍ତି ମାଧ୍ୟମରେ । ଚେତନ, ଅଚେତନମୟ କାର୍ଯ୍ୟ କାରଣାତ୍ମକ ଜଗତର ଚତୁର୍ଦ୍ଦଶ ଭୁବନ ଏବଂ ସପ୍ତାବରଣ ଊର୍ଦ୍ଧ୍ୱରେ ଥିବା ନିତ୍ୟଧାମରୁ ବ୍ରହ୍ମର ଅଧ୍ୟକ୍ଷତାରେ ପ୍ରକୃତି-ସ୍ୱରୂପା ଇଚ୍ଛାଶକ୍ତି, କ୍ରିୟାଶକ୍ତି, ଜ୍ଞାନଶକ୍ତି ହିଁ କାର୍ଯ୍ୟ ସୃଷ୍ଟି କରିଥାନ୍ତି ଓ ସର୍ବତ୍ର ବ୍ରହ୍ମମୟ ବା—'ଈଶାବାସ୍ୟମିଦଂ ସର୍ବଂ' ଆଦି ଉପନିଷଦ ଉକ୍ତିକୁ ଯଥାର୍ଥ ପ୍ରତିପାଦନ କରିଥାନ୍ତି ଜଗଜ୍ଜନନୀ ପରାମ୍ବା ଶ୍ରୀ ସୀତା । ଉପନିଷଦରେ କୁହାଯାଇଛି—

ଇଚ୍ଛାଜ୍ଞାନକ୍ରିୟା ଶକ୍ତିତ୍ରୟଂ ଯଦ୍ଭାବ ସାଧନମ୍ ।
ତଦ୍ବ୍ରହ୍ମ ସତ୍ତା ସାମାନ୍ୟଂ ସୀତାତତ୍ତ୍ୱମୁପାସ୍ମହେ ।।

(ସୀତୋପନିଷଦ୍)

ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କ ସହିତ ଶରୀର—ଶରୀରୀଭେଦରେ ସମସ୍ତ ଜଗତ ସତ୍ତ୍ୱ, ରଜ, ତମ ତ୍ରିଗୁଣମୟୀ । ଏହାକୁ ବେଦାନ୍ତବିତ୍ ଆଚାର୍ଯ୍ୟଗଣ ହ୍ଲାଦିନୀ, ସନ୍ଧିନୀ, ସଂବିତ୍ ବୋଲି ମଧ୍ୟ କହିଛନ୍ତି । ଜଗଦ୍‌ଗୁରୁ ରାମାନନ୍ଦାଚାର୍ଯ୍ୟଙ୍କ ବୈଷ୍ଣବ ମତାବ୍ଜ ଭାସ୍କର ଗ୍ରନ୍ଥରେ ସୀତାଙ୍କୁ କୁହାଯାଇଛି—

ନିତ୍ୟାଜ୍ଞା ଚେତନସା, ପ୍ରକୃତିରବିକୃତି ବିଶ୍ୱଯୋନି ଶ୍ଚରେ କା
ନାନା ବର୍ଣ୍ଣାତ୍ମିକାକା ତ୍ରିଗୁଣ ସୁନିଳୟା ବ୍ୟକ୍ତ ଶବ୍ଦାଭିଧେୟା
ନିର୍ବ୍ୟାପାରା, ପରାର୍ଥା ମହଦହମିତିଷ୍ଟୁରୁଚ୍ୟତେ ତତ୍ତ୍ୱବିଦ୍‌ଭିଃ ।।

ସୃଷ୍ଟିର ସୂକ୍ଷ୍ମରୁ ସ୍ଥୂଳ ଓ ସ୍ଥୂଳରୁ ସୂକ୍ଷ୍ମ ଆଦିକ୍ରିୟା ବ୍ରହ୍ମଙ୍କ ଅନ୍ତର୍ଗତ ମୂଳ ପ୍ରକୃତିଙ୍କ ଦ୍ୱାରା ସଂପାଦିତ ହୋଇଥାଏ । ବ୍ରହ୍ମ ଓ ପ୍ରକୃତି ଅଭିନ୍ନ । ବ୍ରହ୍ମର ବର୍ଦ୍ଧନକ୍ରିୟା ( Expansion ) ସଂକୋଚନକ୍ରିୟା ( Contrection, ), ବା ସୃଷ୍ଟି ଓ ଲୟ ଅଭିନ୍ନ ସ୍ୱରୂପା ପ୍ରକୃତି ହିଁ କରିଥାନ୍ତି ।

ପ୍ରକୃତିଶ୍ଚ ପ୍ରତିଜ୍ଞା ଦୃଷ୍ଟାନ୍ତା ନୁପରୋଧାତ୍ ।

(ବ୍ରହ୍ମସୂତ୍ର ୧।୪।୨୩)

ଅଧ୍ୟାତ୍ମ ରାମାୟଣରେ ହନୁମାନଙ୍କୁ ଜଗଜ୍ଜନନୀ କହୁଛନ୍ତି—"ହେ ହନୁମାନ ! ଶ୍ରୀରାମଙ୍କୁ ସାକ୍ଷାତ୍ ଅଦ୍ୱି... ସଚ୍ଚିଦାନନ୍ଦ ଘନ ପରଂବ୍ରହ୍ମ ବୋଲି ଜାଣ । ସେ ଉପାଧିର... ସତ୍ତାମାତ୍ର । ମନ ଇନ୍ଦ୍ରିୟର ଅବିଷୟ, ଆନନ୍ଦଘନ, ନି... ଶାନ୍ତ, ନିର୍ବିକାର, ନିରଞ୍ଜନ, ସର୍ବବ୍ୟାପକ ସ୍ୱୟଂ ପ୍ରକାଶ... ପାପହୀନ ପରମାତ୍ମା । ସଂସାରର ଉତ୍ପତ୍ତି, ସ୍ଥିତି ଓ ସଂହା... କାରିଣୀ—ମୂଳ ପ୍ରକୃତି ମୋତେ ହିଁ ଜାଣ । ମୁଁ ନିରାଳ... ହୋଇ ପ୍ରଭୁଙ୍କ ସନ୍ନିଧି ମାତ୍ରରୁ ଏ ସୃଷ୍ଟି ରଚନା କରିଥାଏ... କିନ୍ତୁ ବୁଦ୍ଧିହୀନ ଲୋକମାନେ ଶ୍ରୀରାମଙ୍କ ଉପରେ ମୋ... ସୃଷ୍ଟିକୁ ଆରୋପ କରିଥାନ୍ତି—

"ରାମଂ ବିଦ୍ଧି ପରଂବ୍ରହ୍ମ ସଚ୍ଚିଦାନନ୍ଦମଂ ଦ୍ୱୟଂ ।
ସର୍ବୋପାଧି ବିନିର୍ମୁକ୍ତଂ ସତ୍ତାମାତ୍ର ମ ଗୋଚରଂ ।।
ଆନନ୍ଦଂ ନିର୍ମଳଂ ଶାନ୍ତଂ ନିର୍ବିକାରଂ ନିରଞ୍ଜନଂ ।
ସର୍ବବ୍ୟାପୀନମାତ୍ମାନଂ ସ୍ୱପ୍ରକାଶମକଳ୍ମଷମ୍ ।।
ମାଂ ବିଦ୍ଧି ମୂଳ ପ୍ରକୃତିଂ ସର୍ଗସ୍ଥିତ୍ୟନ୍ତକାରିଣୀ ।
ତସ୍ୟ ସଂନିଧି ମାତ୍ରେଣ ସୃଜାମୀଦମତନ୍ଦ୍ରିତା ।।
ତତ୍ ସାନିଧ୍ୟାଂ ମାୟା ସୃଷ୍ଟଂ ତସ୍ମିନା ରୋପ୍ୟତେ ବୁଧୈ...

(ଅଧ୍ୟାତ୍ମ ରାମାୟଣ ବାଳକାଣ୍ଡ—୩୨ରୁ ୩୪)

ସର୍ବ ଶକ୍ତିମୟୀ ସୀତା ପରଂବ୍ରହ୍ମ ଶ୍ରୀରାମଙ୍କ ଅବତାର ବେଳେ ମାତୃ ଗର୍ଭରୁ ଜନ୍ମ ନହୋଇ ଜନକରାଜା ଭୂମି କର୍ଷଣ କଲବେଳେ ପୃଥିବୀରୁ ପ୍ରାପ୍ତ ହୋଇଥିଲେ । ଏଣୁ ସେ ଅଜନ୍ମା ବା ବେଦାନ୍ତ ଶବ୍ଦରେ 'ଅଜା' ।

ବାଲ୍ମୀକି ରାମାୟଣରେ ରାଜା ଜନକ କହୁଛନ୍ତି—"ଅଥମେ କୃଷତଃ କ୍ଷେତ୍ରଂ ଲାଙ୍ଗଳାଦୁତ୍ଥିତା ତତଃ କ୍ଷେତ୍ରଂ ଶୋଧୟତା ଲବ୍ଧା ନାମ୍ନା ସୀତେତି ବିଶ୍ରୁତା । (୧—୬୬—୧୩)

ସଂସ୍କୃତ ଭାଷାରେ ଲଙ୍ଗଳ ମନକୁ ସୀତା କୁହାଯାଏ । ଏଣୁ ସ୍ୱୟଂଭୂତା ଅଜନ୍ମା କନ୍ୟାର—ନାମ କରଣ କରାଗଲା "ସୀତା" ବା ଶ୍ରୀ । ସୀତା ପଦର ବ୍ୟୁତ୍ପତ୍ତି କରି ଦାର୍ଶନିକ ଅଯୋଧ୍ୟାର ପଣ୍ଡିତ ଶ୍ରୀକାନ୍ତ ଶରଣ କହିଛନ୍ତି:

(୧) ଶ୍ରୁ—ଶ୍ରବଣେ—ଶ୍ରୁତିବେଦାଦିକଙ୍କୁ ଶ୍ରବଣ କରି ଧାରଣ କରିବା ଆଦିମାନସିକକ୍ରିୟା, ଯେଉଁ ଶକ୍ତିଙ୍କ ଦ୍ୱାରା ସଂପାଦିତ ହୋଇଥାଏ, ସେ "ସୀତା" ।

(୨) ଶ୍ରୀ ବିସ୍ତାରେ ଅର୍ଥାତ୍ ସୃଷ୍ଟିର ବିସ୍ତାର କାର୍ଯ୍ୟ ସୀତାଙ୍କ ଦ୍ୱାରା ସଂପାଦିତ ହୋଇଥାଏ ।

(୩) ଶ୍ରତା—ଦାନେ, ଗତୌଚ—ଅର୍ଥାତ୍ ସୃଷ୍ଟିପାଳନ କାର୍ଯ୍ୟ ଓ ଜଗତର ସମସ୍ତ ଭରଣ ପୋଷଣ ଭାର ଯାହାଙ୍କ ଉପରେ ନ୍ୟସ୍ତ ସେ "ସୀତା" ।

(୪) ଶୃ—ହିଂସାୟାମ୍—

ସଂସାରର ଦୁଃଖ ନିବାରଣ କରିବା ପାଇଁ ଭଗବତୀ ମା ଦୁର୍ଗା ସମସ୍ତ ଦେବତାମାନଙ୍କ ଆୟୁଧକୁ ନେଇ ରାକ୍ଷସ ନିଧନ କରିଛନ୍ତି । ପରାମ୍ବା ଜଗଜ୍ଜନନୀ ସୀତା ମହାରାଣୀଙ୍କୁ ଋକ୍ ବେଦରେ ଦେବତା-

ମାନେ ସ୍ତୁତିକରି କହୁଛନ୍ତି–"ହେ ମା", ଦେ ବେ ! ଦୁଷ୍ଟ ରାକ୍ଷସମାନଙ୍କୁ ତୁମେ ଦଳନ କରି ଆମ୍ଭମାନଙ୍କ କଲ୍ୟାଣ ସାଧନ କର । ଏହିପାଇଁ ଆମ୍ଭେ ଦେବଗଣ ତୁମକୁ ପ୍ରଣାମ କରୁଛୁ ।

"ଅର୍ବାଚୀ ସୁଭଗେ ଭବସୀତେ ! ବନ୍ଦାମହେତ୍ୱା ।
ଯଥା ନଃ ସୁଭଗାସସି ଯଥା ନଃ ସୁଫଳାସସି ।।
(ଋକ୍‌ବେଦ ୪/୫୭/୬୬)

ସପ୍ତସତୀ ଚଣ୍ଡି ଅନ୍ତର୍ଗତ ଦେବୀ ସୂକ୍ତରେ ମାଆଙ୍କୁ :–

"ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା । କ୍ଷାନ୍ତି, ରୂପେଣ–(କ୍ଷମା) ସଂସ୍ଥିତା", ଲକ୍ଷ୍ମୀ, ସ୍ମୃତି, ଦୟା ଆଦି ସମସ୍ତ ଦିବ୍ୟଗୁଣ ମହାଶକ୍ତିଙ୍କଠାରେ ହିଁ ବିଦ୍ୟମାନ ବୋଲି କୁହାଯାଉଛି ।

ବାଲ୍ମୀକି ରାମାୟଣର ଅରଣ୍ୟ-କାଣ୍ଡରେ ପ୍ରଭୁ ରାମଚନ୍ଦ୍ରଙ୍କ ବନବାସ ସମୟରେ ବାନପ୍ରସ୍ଥ ଋଷିଗଣ ଶ୍ରୀରାମଙ୍କୁ କହିଲେ, "ହେ ରାମ ! ଆପଣ ରାଜା, ଆପଣ ରାକ୍ଷସମାନଙ୍କ ଅତ୍ୟାଚାରରୁ ଆମ୍ଭମାନଙ୍କୁ ରକ୍ଷା କରିବା ଉଚିତ । ଏଣୁ ଆମ୍ଭଙ୍କୁ ରକ୍ଷା କରନ୍ତୁ ।"

ଶ୍ରୀରାମଚନ୍ଦ୍ର ରାକ୍ଷସମାନଙ୍କୁ ବଧ କରିବା ପାଇଁ ପ୍ରତିଜ୍ଞା କଲେ, ଦୟାମୟୀ ମା ସୀତା ସେଠାରେ ଉପସ୍ଥିତ ଥିଲେ । "ଦୟା ରୂପେଣ ସଂସ୍ଥିତା" ପରାତ୍ପରା ଶକ୍ତି ମା ସୀତା ପ୍ରଭୁ ଶ୍ରୀରାମଙ୍କ ମର୍ଯ୍ୟାଦା ଦୃଷ୍ଟିରୁ ସେତେବେଳେ କିଛି କହିଲେ ନାହିଁ ସତ, କିନ୍ତୁ ମାତୃ ହୃଦୟ ଯୋଗେ ଦ୍ରବୀଭୂତ ହୋଇଗଲା । କୁଟୀରକୁ ଫେରିବା ପରେ ଶ୍ରୀରାମଙ୍କୁ ବୁଝାଇ ମା' ସୀତା କହୁଛନ୍ତି, 'ହେ ପ୍ରଭୋ !, ଆପଣ କ୍ଷତ୍ରୀୟ ହେଲେ ମଧ୍ୟ ଋଷି ରୂପେ ବନବାସ କରିବା ପାଇଁ ଆସିଛନ୍ତି । ରାକ୍ଷସମାନେ ତ ଆମର କିଛି ଅନିଷ୍ଟ କରିନାହାନ୍ତି, ତେଣୁ ଆପଣ ହିଂସା ଆଚରଣ କରି, ରାକ୍ଷସମାନଙ୍କୁ ବଧ କରିବା ଉଚିତ ନୁହେଁ ।"

(ସଂସ୍କୃତ ବାଲ୍ମୀକି ରାମାୟଣ ଅରଣ୍ୟକାଣ୍ଡ ; ଷଷ୍ଠସର୍ଗ ଓ ନବମ ସର୍ଗ)

ରାବଣ ସୀତାଙ୍କୁ ନେଇ ଅଶୋକ ବନରେ ରାକ୍ଷସୀମାନଙ୍କ ପହରାରେ ରଖିଥିଲା । ହନୁମାନ ସୀତାଙ୍କୁ ଠାବ କରିବା ପାଇଁ ଲଙ୍କା ଯାଇ ସୂକ୍ଷ୍ମରୂପ ଧାରଣ କରି ବୃକ୍ଷ ଉପରେ ବସିଥିବା ବେଳେ ରାକ୍ଷସୀମାନେ ବିକଟାଳ ରୂପ ଧରି ସୀତାଙ୍କୁ ନାନା ପ୍ରକାର ନିର୍ଯାତନା ଦେଉଥିବାର ହନୁମାନ ଦେଖୁଥିଲେ । ରାବଣ ଆଦି ରାକ୍ଷସମାନଙ୍କ ବଧ ପରେ ରାମଚନ୍ଦ୍ର ସୀତାଙ୍କୁ ଆଣିବା ନିମନ୍ତେ ହନୁମାନଙ୍କୁ ଅଶୋକ ବାଟିକା ଯିବା ପାଇଁ ନିର୍ଦ୍ଦେଶ ଦେଲେ । ସେଠାରେ ହନୁମାନ ରାକ୍ଷସୀମାନଙ୍କ ଗ୍ରହଣରେ ସୀତାଙ୍କୁ ଦେଖିଲେ ଓ ରାବଣ ବଧ ପ୍ରସଙ୍ଗ ଶୁଣାଇ କହିଲେ–

"ଇମାସ୍ତୁ ଖଳୁ ରାକ୍ଷସ୍ୟୋ ଯଦି ତ୍ୱମନୁମନ୍ୟ ସେ
ହନ୍ତୁମିଚ୍ଛାମି ତାଃ ସର୍ବା ଯାଭିସ୍ତ୍ୱଂ ତର୍ଜ୍ଜିତାପୁରା ।"

(ଯୁଦ୍ଧକାଣ୍ଡ ୧୧୩/୩୦ ବାଲ୍ମୀକି ରାମାୟଣ)

ହେ 'ମା' ଯଦି ଆପଣ ଆଜ୍ଞା ଦିଅନ୍ତି ମୁଁ ଏହି ଦୁଷ୍ଟ ରାକ୍ଷସୀମାନଙ୍କୁ ଯେଉଁମାନେ ଆପଣଙ୍କୁ ଏଥିପୂର୍ବରୁ ଡର, ଧମକ ଦେଉଥିଲେ ସେମାନଙ୍କୁ ମାରିଦେବାକୁ ଇଚ୍ଛା କରୁଛି ।

କ୍ଷାନ୍ତି ରୂପେଣ ସଂସ୍ଥିତା (କ୍ଷମା) କ୍ଷମାମୟୀ ଦେବୀ ସୀତା କହିଲେ–ହେ ହନୁମାନ ! ଏମାନଙ୍କର ଦୋଷ ନାହିଁ–ଏ ବିଚାରି ରାକ୍ଷସୀଗଣ ରାଜାଙ୍କ ଚାକିରିର ଅଧୀନ ହୋଇ ରାଜା ଆଦେଶରେ ଯାହାକିଛି କରିଛନ୍ତି । ଏଣୁ ଏ ଦାସୀମାନେ ଯଦି ବା କିଛି ମୋର ଅପରାଧ କରିଛନ୍ତି ତାଙ୍କୁ ମୁଁ କ୍ଷମା କରୁଛି । ସେମାନଙ୍କ ପ୍ରତି ଦୟାରେ ମୋର ହୃଦୟ ଦ୍ରବୀଭୂତ ହୋଇ ଯାଉଛି ।

ରାଜସଂଶ୍ରୟ ବଶାନାଂ କୁର୍ବତୀନାଂ ପରାଜ୍ଞୟା
ବିଧେୟାନାଂ ଚ ଦାସୀନାଂ କଃ କୁପ୍ୟେଦ୍ ବାନରୋତ୍ତମଃ ।

× × ×

ଦାସୀନାଂ ରାବଣସ୍ୟାହଂ ମର୍ଷୟିଷ୍ୟା ମୀହ ଦୁର୍ବଳା ।

(ଯୁଦ୍ଧକାଣ୍ଡ ବାଲ୍ମୀକି ରାମାୟଣ ୧୧୩ ସର୍ଗ ୩୮–୪୧)

ପରଂ ବ୍ରହ୍ମାଣୀ ଜଗଜ୍ଜନନୀ ଆଦ୍ୟାଶକ୍ତି, ଅଯୋନିଜା, ମୂଳ ପ୍ରକୃତି ତ୍ରିଗୁଣାତ୍ମିକା । ଜନକନନ୍ଦିନୀ ଶ୍ରୀରାମଙ୍କ ସହଧର୍ମିଣୀ ମା 'ସୀତା' ଲୀଳା ଦୃଷ୍ଟିରୁ ସାକ୍ଷାତ୍ ପରାତ୍ପରା ଆଦ୍ୟାଶକ୍ତି । ସମସ୍ତ ଶକ୍ତିଙ୍କ ସୃଷ୍ଟିକାରିଣୀ ଶ୍ରୀ ସୀତାଙ୍କୁ ଅଦ୍ଭୁତ ରାମାୟଣ କହନ୍ତି—ଲକ୍ଷ୍ମ୍ୟାଦି ଶକ୍ତି ଜନନୀ, ଶକ୍ତି, ତତ୍ତ୍ୱ ପ୍ରଦର୍ଶିକା, ତ୍ରିଶକ୍ତି ଜନନୀ ଜନ୍ୟା ଷଡ଼ୂର୍ମି ପରିବର୍ଜ୍ଜିତା ।

(ଅଦ୍ଭୁତ ରାମାୟଣ ଉତ୍ତରାକାଣ୍ଡ ୧୫ ସର୍ଗ, ୧୨୮)

ଅତଏବ ଶ୍ରୀଦେବୀ ବା ସୀତା ମହାରାଣୀ ସାକ୍ଷାତ୍ ପରାତ୍ପରା "ଆଦ୍ୟାଶକ୍ତି" ।

ଚିତ୍ରକୂଟ ଆଶ୍ରମ, ଭୁବନେଶ୍ୱର ।



"ନାରୀ ଅବଳା ନୁହେଁ, ପୁରୁଷ ଠାରୁ ସେ ଦୁର୍ବଳ ବୋଲି ମନେ କରିବା ଅନୁଚିତ୍ । ନିଜକୁ ଦୁର୍ବଳା ବୋଲି ଭାବୁରୀ କୌଣସି ପୁରୁଷ ଠାରେ ପ୍ରାର୍ଥୀ ହେବା ଉଚିତ୍ ନୁହେଁ କି ନିର୍ଭର କରିବା ଉଚିତ୍ ନୁହେଁ" ୧୦.୯.୧୯୭୬



# ବ୍ୟକ୍ତିତ୍ୱ ଆମକୁ ମୁଗ୍ଧ କରିଥାଏ

ଶ୍ରୀ ସୁକାନ୍ତ କୁମାର ରଥ

ଆଜି ଯୁବ ପ୍ରଧାନ ମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କର ନାମ ଦେଶର ପୁରପଲ୍ଲୀରେ କୋଣ ଅନୁକୋଣରେ ଅନୁରଣିତ ହେଉଅଛି । ସେମିତି କିଛି ବ୍ୟକ୍ତିତ୍ୱ ରାଜନୈତିକ ଭାବମୂର୍ତ୍ତି ନଥିଲେ ଜଣେ ପ୍ରସିଦ୍ଧି ଲାଭ କରିବା ସମ୍ଭବ ନୁହେଁ । ରାଜୀବ ଗାନ୍ଧୀଙ୍କର ନୈତିକ ମୂଲ୍ୟବୋଧ ଆଜି ଦେଶବଦେଶରେ ଅବଶ୍ୟ ପ୍ରତିଭାତ ହୋଇଛି । ଯେତେବେଳେ ରାଜୀବ ଗାନ୍ଧୀ ଯୁବ ପ୍ରଧାନ ମନ୍ତ୍ରୀ ଭାବେ ଶପଥ ଗ୍ରହଣ କଲେ, ସେତେବେଳେ ଦେଶର ସମସ୍ତ ଜନତା ଉଦ୍‌ଗ୍ରୀବ ନେତ୍ରରେ ଅପେକ୍ଷା କଲେ ତାଙ୍କର କାର୍ଯ୍ୟକଳାପ ବିଷୟରେ ଜାଣିବା ପାଇଁ । ସମସ୍ତଙ୍କ ମାନସ ପଟରେ ଉଙ୍କି ମାରିଥିଲା ଗୋଟିଏ ପ୍ରଶ୍ନ—ଜଣେ ଯୁବକ ଏହି ବିଶାଳ ଭାରତବର୍ଷକୁ ଠିକ୍‌ରୂପେ ଶାସନ କରି ପାରିବେ ତ? ଭାରତର ସମ୍ମାନ ଆନ୍ତର୍ଜାତିକ କ୍ଷେତ୍ରରେ ଅକ୍ଷୁର୍ଣ୍ଣ ରଖି ପାରିବେ ତ? ସେହି ପ୍ରଶ୍ନ ମୋ ମନରେ ମଧ୍ୟ ଜାଗ୍ରତ ହୋଇଥିଲା । ମାତ୍ର କ୍ରମଶଃ ସେ ସମସ୍ତଙ୍କର ସନ୍ଦେହ, ଆଶଙ୍କା, ସମାଲୋଚନାକୁ ଦୂରୀଭୂତ କରି କର୍ତ୍ତବ୍ୟ ମାଧ୍ୟମରେ ସଚେତନ କରାଇ ଦେଲେ ନିଜର ବ୍ୟକ୍ତିତ୍ୱ । ଏହା ଅଯଥା ପ୍ରଶଂସାର କଥା ନୁହେଁ । ବିଗତ ଏକବର୍ଷ ମଧ୍ୟରେ ଆପଣ ମଧ୍ୟ ଜଣେ ଅନୁଭବି ହୋଇ ସାରିବେଣି । ତାଙ୍କର ବିଦେଶ ଗସ୍ତ ବିଷୟରେ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ ସେ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ପ୍ରସିଦ୍ଧି ଲାଭ କରି ସାରିଲେଣି । ସୋଭିଏତ୍ ୟୁନିୟନ୍‌ରେ ତାଙ୍କୁ ଯେପରି ଭାବରେ ଆଦର ଅଭ୍ୟର୍ଥନା କରାଗଲା, ସେଥିରୁ ସୋଭିଏତ୍-ବାସୀଙ୍କର ତାଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନର ପୂର୍ଣ୍ଣ ପରିଚୟ ମିଳେ । ତାଙ୍କ ଗସ୍ତ କାଳରେ ସୋଭିଏତ୍ ବା... ଉତ୍ସାହ, ଉଦ୍ଦୀପନା ଏତେ ମାତ୍ରାରେ ବଢି ଯାଇଥିଲା ଯେ, ... ଦର୍ଶନ ସକାଶେ ଭାରତ-ରୁଷର ମୈତ୍ରୀ ପତାକା ଧରି ... ଶୀତର ପ୍ରଚଣ୍ଡତା ମଧ୍ୟରେ ଅପେକ୍ଷା କରିଥିଲେ ସେମା... ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ ମିଖାଇଲ୍ ଗୋର୍ବା... ସମସ୍ତ ପୂର୍ବ ପରଂପରା ମଧ୍ୟରେ ଆବଦ୍ଧ ନ ରହି ଶ୍ରୀ ଗାନ୍ଧୀ... ସହ ଯେଉଁ ବନ୍ଧୁତ୍ୱର ପୁଷ୍ପ ଉନ୍ମୋଚନ କଲେ ତାହା ସମସ୍ତଙ୍କ ... ପ୍ରଶଂସାର୍ହ ହେବା ସଙ୍ଗେ ସଙ୍ଗେ ଉନ୍ନତିର ନୂତନ ପଥ ସୃଷ୍ଟି କରି... ରୁଷ ଗସ୍ତ ପରେ ତାଙ୍କର ଆମେରିକା ଗସ୍ତ ସଂପର୍କରେ ... ଅଗଣିତ ଜନତା ରାଜନୈତିକ ପର୍ଯ୍ୟବେକ୍ଷକ ସନ୍ଦିହାନ ଥିଲେ... ଆମେରିକା ଗସ୍ତ ସଫଳ ହେଲାପରେ ଲୋକମାନଙ୍କର ... ଯେ ତାଙ୍କ ଉପରେ ଗଭୀର ହେଲା, ଏଥିରେ ତିଳେମଧ୍ୟ ସନ୍ଦେ... ଅବକାଶ ନାହିଁ । ଆମେରିକା ପ୍ରେସ କାଉନସିଲରେ ତାଙ୍କର ବକ୍ତୃ... ଉତ୍ତର ଏତେ ସରଳ, ସହଜ ଥିଲା ଯେ, ଆମେରିକାବା... ଚମତ୍କୃତ ହୋଇ ଯାଇଥିଲେ । ଜଟିଳ ପ୍ରଶ୍ନର ଉତ୍ତର ଏତେ ସୁ... ଭାବେ ବୋଧଗମ୍ୟ ଭାଷାରେ ସେ ଦେଉଥିଲେ, ଯାହା ପଢିକ... ଆମେ ଗର୍ବରେ ଛାତି ଫୁଲାଉଥିଲୁ । ତାଙ୍କର ପ୍ରଶଂସାରେ ଓ୍ୱାଶି... ଟନର ଖବର କାଗଜ ମଣ୍ଡିତ ହେଲା । ଏ ହେଲା ତାଙ୍କ ବିଦେ... ଗସ୍ତ ସଂପର୍କରେ । ଅନ୍ତର୍ଦେଶରେ ତାଙ୍କର ବହୁ ସମସ୍ୟାର ସମାଧା... ଅନ୍ୟ ଏକ ଆଲୋଚ୍ୟ ବିଷୟ ।

ଦୀର୍ଘଦିନ ଧରି ଚାଲିଥିବା ଅକାଳୀ ଆନ୍ଦୋଳନର ବେଲୋ... ...ନ ହେଲା ତାଙ୍କରି ପ୍ରଚେଷ୍ଟାରେ । ପଞ୍ଜାବରେ ଖଲିସ୍ଥାନ ଗଠନର ...ର ଆଶା ଧୂଳିସାତ୍ ହୋଇଗଲା । ସେ ରହୁଁ ନଥିଲେ ଦେଶ ଖଣ୍ଡ ବିଖଣ୍ଡିତ ହେଉ । ପଞ୍ଜାବରେ ହତ୍ୟା ଓ ଲୁଣ୍ଠନର ବହ୍ନି ନିର୍ବାପିତ ହେଲା । ଦେଶ ଏକ ନିଶ୍ଚିତ ବିପଦରୁ ରକ୍ଷା ପାଇଲା । ସେଇଟି ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମାଧାନ ହେତୁ ତାଙ୍କର ସମାଲୋଚନାକାରୀମାନଙ୍କର ମୁହଁ ବନ୍ଦ ହୋଇଗଲା । ତପରେ ଆସାମ ସମସ୍ୟାର ସମାଧାନ ଅନ୍ୟଏକ ଗୌରବର ବିଷୟ । ଠିକ୍ ୩୮ତମ ସ୍ୱାଧୀନତା ଦିବସରେ ଆସାମ ରାଜିନାମା ଶ୍ରୀ ଗାନ୍ଧୀ ଦେଶବାସୀଙ୍କୁ ଏକ ଭେଟି ସ୍ୱରୂପ ଅର୍ପଣ କଲେ । ଅଳ୍ପଦିନ ମଧ୍ୟରେ ଦୁଇଟି ସମସ୍ୟାର ସମାଧାନ କରିବା କାଠିକର ପାଠ । ମାତ୍ର ତାହା ସମ୍ଭବ ହୋଇ ପାରିଛି । ଏହି ରାଜନୈତିକ ସମାଧାନ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣଅକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କର ନିଷ୍କାମ ଜନପ୍ରୀତି, ଆତ୍ମ ବିଶ୍ୱାସ ତାଙ୍କୁ ଗାଁ ଗାଁରେ ପରିଚିତ କରାଇ ପାରିଛି । ତାଙ୍କର ଜନ୍ମଦିନକୁ ନିରାଡ଼ମ୍ବର ରୂପେ ପାଳନ କରିବା ପାଇଁ ତାଙ୍କର ମତାମତ ତାଙ୍କ ବ୍ୟକ୍ତିତ୍ୱର ଏକ ନିଦର୍ଶନ । କିଛିଦିନ ପୂର୍ବରୁ ତାଙ୍କର ପଶ୍ଚିମ ଓଡ଼ିଶା ଗସ୍ତ ଓଡ଼ିଶାବାସୀଙ୍କ ମନରେ ରେଖାପାତ କରିଥିଲା । ତାଙ୍କର ନିରହଙ୍କାର ବ୍ୟବହାର, ଦୀନ ଦୁଃଖିଙ୍କ ଦୁଃଖ ଜାଣିବାର ଇଚ୍ଛା ସମସ୍ତଙ୍କୁ ବିସ୍ମିତ କରିଥିଲା । ପ୍ରଧାନ ମନ୍ତ୍ରୀ ହିସାବରେ ଜଣେ ଆଦିବାସୀ ଘରୁ ଶାଗ ଖାଇବା, କାଦୁଅରେ ଚାଲିଚାଲି ବିଭିନ୍ନ ଅଞ୍ଚଳ ପରିଦର୍ଶନ କରିବା, ବୃଦ୍ଧାକୁ ତାର ଚକ୍ଷୁ ବିଷୟରେ ପ୍ରଶ୍ନ ସମସ୍ତଙ୍କୁ ମୁଗ୍ଧ ତଥା ଆଶ୍ଚର୍ଯ୍ୟ କରିଥିଲା । ବୃଦ୍ଧାର ଛିଣ୍ଡା କମ୍ବଳର ଉଷ୍ମତା ବିଷୟରେ ଜାଣିବା ପାଇଁ ସେ ନିଜ ଉପରେ ଏବଂ ସୋନିଆ ଗାନ୍ଧୀଙ୍କ ଉପରେ ପକାଇ ପରୀକ୍ଷା କରିଥିଲେ । ଏହା ତାଙ୍କ ନିରହଙ୍କାର ସ୍ୱଭାବର ପୂର୍ଣ୍ଣ ପରିଚୟ ।

ତାଙ୍କର ଉନ୍ନତି ମୂଳକ ପଦକ୍ଷେପ ଯୋଗୁଁ ଆଜି ଭାରତ ଉନ୍ନତି ପଥରେ ଅଗ୍ରସର । ଦଳମତ ନିର୍ବିଶେଷରେ ସେ କୌଣସି ଦଳ...

ଧରଣର ସମସ୍ୟାର ସମାଧାନ କରିବା ପୂର୍ବରୁ ସେ ସମସ୍ତଙ୍କର ମତାମତ ଲୋଡୁଛନ୍ତି । ଏହା ଏକ ଆନନ୍ଦର ବିଷୟ । ଦେଶବାସୀ ତାଙ୍କ ପ୍ରଚେଷ୍ଟାର ସ୍ୱାଦୁ ଚାଖିବେ ଏହା ନିଶ୍ଚିତ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ତାଙ୍କରି ଦୀକ୍ଷାରେ ଦୀକ୍ଷିତ ହୋଇ ଆଗେଇ ଚାଲିଛନ୍ତି ଓଡ଼ିଶାରୁ ଦାରିଦ୍ର୍ୟ ମୋଚନ କରିବା ନିମନ୍ତେ । ଉତ୍କଳର ହୃତ ଗୌରବକୁ ଫେରାଇ ଆଣିବାର ସଂକଳ୍ପ ଏକ ଆନନ୍ଦର କଥା । ଯୁବ ପ୍ରଧାନମନ୍ତ୍ରୀଙ୍କ ନୂତନ ନୀତିର ତାଳେ ତାଳେ ଆଜି ଅଗ୍ରଣୀ ଓଡ଼ିଶା । ଶ୍ରୀ ଗାନ୍ଧୀ ଭବିଷ୍ୟତରେ ଦେଶକୁ ନୂତନ ଦିଗ୍‌ଦର୍ଶନ ଦେଇ ତାର ଅଖଣ୍ଡତା, ସଂସ୍କୃତି ତଥା ସମ୍ମାନ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇ ପାରିବେ ଏହା ମୋର ଆଶା ଓ ବିଶ୍ୱାସ । ତେଣୁ ଦେଶବାସୀ ଐକ୍ୟ ମନୋଭାବ ନେଇ ଶ୍ରୀ ଗାନ୍ଧୀଙ୍କର ସବୁଜ ସ୍ୱପ୍ନକୁ ରୂପାୟିତ କରିବା ପାଇଁ ପ୍ରଚେଷ୍ଟା କରିବା ଉଚିତ୍ ।

ଘର ନଂ—ଇ—୩/୨
ଇରିଗେସନ୍ କଲୋନି,
ବକ୍ସିଜଗବନ୍ଧୁ ନଗର,
ଭୁବନେଶ୍ୱର—୧୪



"ଉତ୍କଳକୁ ମୁଁ ଭୁଲି ପାରୁ ନାହିଁ, ତାହାର ଦରିଦ୍ରତା ମୁଁ ନିଜେ ଆଖିରେ ଦେଖି ଆସିଅଛି, ସେହି ଦରିଦ୍ରତାକୁ ଦୂର କରିବା ହିଁ ପ୍ରକୃଷ୍ଟ ରାଜନୈତିକ କାର୍ଯ୍ୟ, ଉତ୍କଳର ପ୍ରତିଘର ଅନ୍ତତଃ ଥରେ ଉନ୍ନତି ପାଉ, ଅନ୍ତତଃ ଚଳାଇବା ପାଇଁ କ୍ଷୁଧାର୍ତ୍ତଙ୍କୁ ଅନ୍ନଦାନ କର ଓ ଭାରତର ଅନ୍ୟାନ୍ୟ ପ୍ରଦେଶ ପାଇଁ ଉତ୍କଳକୁ ଆଦର୍ଶ ଭୂଖଣ୍ଡ କରିଦିଅ, ଏହି ସ୍ୱଦେଶ ପ୍ରେମର ହିଁ ଉତ୍କଳ କର୍ମୀ ମାନଙ୍କର ପ୍ରଥମ ଓ ପ୍ରଧାନତମ କାର୍ଯ୍ୟ,"

"ଏପରି ଉତ୍କଳ ଏହି ନୈତିକ ସ୍ତରରେ ଉଠି ହେଲେ ବଦ୍ଧ ଅର୍ପଣ ନ କଲେ ମୁଁ ଟିକେ ମାତ୍ର ଆଶ୍ୱସ୍ତ ହେବି ନାହିଁ, ସରକାରଙ୍କ ନୂତନ ଆଇନ୍ ବୃତ୍ତିରେ ପ୍ରତିଯୋଗୀତାକୁ ସର୍ବଦା ଅବାଧ ବୃତ୍ତି ସ୍ୱୀକାର କରୁଥିବା ପାଇଁ ହଜାର ସ୍ୱେଚ୍ଛାସେବକ ଉତ୍କଳ ଦେଉ, ଏହା ଉତ୍କଳ କର୍ମୀଙ୍କର ଦ୍ୱିତୀୟ କର୍ତ୍ତବ୍ୟ,"

ଟେଲିଗ୍ରାମ—ଫରେଷ୍ଟ କର୍ପ.
ଟେଲେକ୍ସ—୦୬୭୫-୨୪୦
ଟେଲିଫୋନ—୫୧୦୮୬ } ପି. ବି. ଏକ୍ସ.
୫୧୨୬୯

୯୦/୯୧, ସତ୍ୟନଗର
ଭୁବନେଶ୍ୱର—୭୫୧୦୦୭
ଓଡ଼ିଶା

# ଆପଣଙ୍କ ସେବାରେ ଓଡ଼ିଶା ବନ ନିଗମ

ଓଡ଼ିଶାର ପୁରପଲ୍ଲୀ ତଥା ବଣ ଜଙ୍ଗଲରେ ବାସ କରୁଥିବା ଅଧିବାସୀମାନଙ୍କୁ ମୁଷ୍ଟିମେୟ ଧନିକ ଠିକାଦାର କବଳରୁ ମୁକ୍ତକରି ଉଚିତ ପାରିଶ୍ରମିକ ଦେଇଆସିଛି ଦୀର୍ଘ ୨୪ ବର୍ଷ ଧରି ।

ବନ୍ୟା, ବାତ୍ୟା, ଘରପୋଡ଼ି ଆଦି ଦୈବୀ ଦୁର୍ବିପାକ ବେଳେ ଗରିବ ନିଃସହାୟ ଲୋକଙ୍କୁ ଶସ୍ତା ସୁଲଭ ମୂଲ୍ୟରେ ବଲ୍ଲି, ବାଉଁଶ, କାଠ ଇତ୍ୟାଦି ଗୃହୋପକରଣ ଯୋଗାଇ ଦେଉଅଛି ।

ଗରିବ ଓ ଆଦିବାସୀଙ୍କଠାରୁ ସରକାରଙ୍କ ନିର୍ଦ୍ଧାରିତ ଦରରେ ଶାଳମଞ୍ଜି ସଂଗ୍ରହ କରି ଅଭୁତପୂର୍ବ ପ୍ରଶଂସା ସହ ଠିକାଦାରମାନଙ୍କ ଶୋଷଣରୁ ସେମାନଙ୍କୁ ମୁକ୍ତ କରିଅଛି ।

ବିଗତ ପ୍ରଳୟଙ୍କରୀ ବନ୍ୟାରେ ନିଶ୍ଚିହ୍ନ ହୋଇଥିବା ଦୁଇଟି ଗ୍ରାମ କମାଶାସନ ଓ ଗୋବିନ୍ଦପୁର, ନିଃସ୍ୱ ଗ୍ରାମବାସୀଙ୍କ ପାଇଁ ଆଦର୍ଶ ଘର ତୋଳି ବାସଚ୍ୟୁତ ଅଧିବାସୀମାନଙ୍କୁ ଥଇଥାନ ପାଇଁ ୧୦ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଆର୍ଥିକ ସାହାଯ୍ୟ କରିଛି । ତଦନୁରୂପ ସମ୍ବଲପୁର ବାତ୍ୟା ବିଧ୍ୱସ୍ତ ଅଞ୍ଚଳରେ କାଷ୍ଠ ସାମଗ୍ରୀ ଓ ବାଉଁଶ ସାହାଯ୍ୟ ସର୍ବନିମ୍ନ ଦରରେ କରିଛି ।

ନିତ୍ୟ ବ୍ୟବହାର୍ଯ୍ୟ କାଷ୍ଠୋପକରଣ ଓ ଶିଳ୍ପ ଉପଯୋଗୀ କାଠ ଉଚିତ ଦରରେ ଯୋଗାଇ ଜନ ସମାଜର ଅଶେଷ କଲ୍ୟାଣ କରୁଅଛି ।

କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ଆୟକର, ବିକ୍ରୀକର ଓ ରାଜସ୍ୱର ବିଶେଷ ବୃଦ୍ଧି ଘଟାଇ ପାରିଛି ।

ଜାଳେଣି କାଠର ଅଭାବ ପୂରଣ ପାଇଁ ୪୫୦ଟି ସୁଲଭ ଜାଳ କାଠଗୋଲା ଖୋଲିଅଛି ଏବଂ ବୃକ୍ଷରୋପଣ କାର୍ଯ୍ୟକ୍ରମ ହାତକୁ ନେଇଛି ।

ଭାରତୀୟ ରେଳପଥ ପାଇଁ ଉନ୍ନତ ଧରଣର ସ୍ଲିପର ଯୋଗାଇ ରେଳ ଲାଇନ୍‌ର ପ୍ରସାର ଦିଗରେ ସମର୍ଥ ହୋଇଛି ।

ଓଡ଼ିଶାର ନନ୍ଦନକାନନରେ ଥିବା ଚିଡ଼ିଆଖାନା ଓ ପ୍ରମୋଦ ଉଦ୍ୟାନରେ ଏବଂ ଦର୍ଶକ ଓ ଶିଶୁମାନଙ୍କର ଭ୍ରମଣ ନିମନ୍ତେ ଚାଲୁଥିବା ରେଳଗାଡ଼ି ପାଇଁ ଆର୍ଥିକ ସାହାଯ୍ୟ ଯୋଗାଇଛି ।

ବିଶେଷରେ ଓଡ଼ିଶାର ଗରିବ ଆଦିବାସୀମାନଙ୍କୁ ଅଶେଷ କର୍ମଯୋଗାଣ ଓ ଶ୍ରମସଂସ୍ଥାନ କରିପାରିଛି ।

## ଓଡ଼ିଶା ବନ ନିଗମ ଲିମିଟେଡ

ସ୍ଥାପିତ—୧୯୬୨

(ଓଡ଼ିଶା ସରକାରଙ୍କ ଏକ ସଂସ୍ଥା)

# ପ୍ରଗତିର କାହାଣୀ





## ବଗକୋଳି ଓ କଣ୍ଟେଇ କୋଳି .....

କଟକ ଜିଲ୍ଲାର ନରସିଂହପୁର ପଞ୍ଚାୟତ ସମିତି ଅନ୍ତର୍ଗତ ବଗକୋଳି ଓ କଣ୍ଟେଇକୋଳି ଦୁଇଟି ପଡ଼ୋଶୀ ଗାଁ । ଗାଁ ଲୋକେ ସମସ୍ତେ ମଧ୍ୟବିତ୍ତ ପରିବାରର । ଦୁଇ ଗାଁ ମଝିରେ ଗୋଟିଏ ୟୁ. ପି. ସ୍କୁଲ । ଝାଟିମାଟି କାନ୍ଥ ଓ ଛଣ ଛପର ଘର । ଦୁଇଗାଁର ପିଲାମାନଙ୍କର ପ୍ରାଥମିକ ସ୍ତର ପର୍ଯ୍ୟନ୍ତ ଶିକ୍ଷା ଏଇ ସ୍କୁଲରେ । ଗାଁ ଲୋକମାନେ ନିଜ ନିଜ ଭିତରେ ଚାନ୍ଦା ତୋଳା କରି ସ୍କୁଲ କାନ୍ଥର ଲିପାପୋଛା ଓ ବର୍ଷାକୁ ନଷ୍ଟ ହେଉଥିବା ଛପର ମରାମତି କରିଥାଆନ୍ତି । ଟିକିଏ ଅଧିକ ବର୍ଷାହେଲେ କେଉଁ ପାଖ କାନ୍ଥ ଭୁଷୁଡ଼ି ପଡ଼ିଲାଣି ତ କେଉଁଠି ପିଣ୍ଡା ଉଦୁଲି ପଡ଼େ । ବାଆ ବତାସି ହେଲେ ଛପର ଉଡ଼ିଯାଏ । ସ୍କୁଲ ଘରକୁ ସଜାଡ଼ି ରଖିବା ପାଇଁ ଦୁଇ ଗାଁର ଲୋକଙ୍କ ମନରେ ପ୍ରତି ବର୍ଷ ଭାବନା ପଡ଼େ । ଯାହାହେଉ ଯେନତେନ ପ୍ରକାରେଣ ଅନୁଷ୍ଠାନଟିକୁ ବଞ୍ଚାଇ ରଖିଥାଆନ୍ତି । ଇଟାକାନ୍ଥ ଓ ଟିଣ ଛପର ହୋଇଥିଲେ ଲୋକମାନେ ଏତେ ହଇରାଣ ହୋଇ ନ ଥା'ନ୍ତେ । କିନ୍ତୁ ସେଥିପାଇଁ ତ ଅନେକ ଟଙ୍କା ଲୋଡ଼ା । ଏତେ ଟଙ୍କା ଆସିବ କେଉଁଠୁ ?

ଏହି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପାଇଁ ସ୍ଥାୟୀ କାନ୍ଥ ଓ ଆଜବେଷ୍ଟସ୍ ଛପର କରିବା ଲାଗି ରାଜ୍ୟ ସରକାରଙ୍କ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ଏନ୍. ଆର୍. ଇ. ପି. ଦ୍ୱାରା ଏହାର କାମ ୧୯୮୧-୮୨ ମସିହାରେ ହାତକୁ ନେଲେ । ଦୁଇଗାଁର ଲୋକମାନେ ଉତ୍ସାହ ଓ ଉଦ୍ଦୀପନାର ସହିତ ସହଯୋଗ କଲେ ! ଯୋର ସୋରରେ ତିଆରି କାମ ଆଗେଇ ଚାଲିଲା । ୧୯୮୪-୮୫ ମସିହା ବେଳକୁ ନୂଆ ଘରର



ଉପରେ କାଛ ଓ ଛପର କାମ ଶେଷହେଲା । ଇଟାକାନ୍ଥ ଓ ଆଜବେଷ୍ଟସ ଛପର । ଗାଁ ଲୋକଙ୍କ ମନରେ ଅପାର ଆନନ୍ଦ । ବର୍ଷାରେ କାନ୍ଥ ଭିଜୁଡ଼ି ପଡିବାର ବା ପବନରେ ଛପର ଉଡିଯିବାର ଆଉ ଭୟ ନାହିଁ । ଗାଁ ପିଲାମାନେ ଏଣିକି ସ୍କୁଲଘରେ ବସିବା ଲାଗି ହଇରାଣ ହେବେ ନାହିଁ । ସରକାରଙ୍କ ଏନ. ଆର. ଇ. ପି. ଦ୍ଵାରା ଏହା ସମ୍ଭବ ହେଲା । ଗାଁ ଲୋକମାନଙ୍କର ବହୁ ଦିନର ଆଶା ପୂରଣ ହେଲା ।

ଗ୍ରାମବାସୀମାନଙ୍କର ଆଶା ଓ ଉତ୍ସାହ ଆହୁରି ଦୃଢ଼ିଭୂତ ହେଲା । ସହଯୋଗ କରିବାକୁ ଆଗେଇ ଆସିଲେ । ଶ୍ରମଦାନ କରିବାକୁ ଆଦୌ କୁଣ୍ଠା ନାହିଁ । ରାଜ୍ୟ ସରକାରଙ୍କ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ସହାୟତା କରୁଛନ୍ତି । ବିଦ୍ୟାଳୟର ଦ୍ଵିତୀୟ ଗୃହକୁ ମଧ୍ୟ ସ୍ଥାୟୀ କରିବା ପାଇଁ ତୁରି ଗ୍ରାମର ଲୋକମାନେ ଲାଗି ପଡିଛନ୍ତି । ଏନ. ଆର. ଇ. ପି. କାର୍ଯ୍ୟକ୍ରମ ମାଧ୍ୟମରେ । ନିକଟରେ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ନିର୍ଦ୍ଦେଶକ ବିଦ୍ୟାଳୟର ନିର୍ମାଣ କାର୍ଯ୍ୟ ପ୍ରତ୍ୟକ୍ଷ ତଦାରଖ କରି ଆସିଛନ୍ତି । ନିର୍ମାଣ-କାର୍ଯ୍ୟ ଯୋର ସୋରରେ ଆଗେଇ ଚାଲିଛି । ଖୁବ୍ ଶୀଘ୍ର ଏହାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଯିବ । ଏନ. ଆର. ଇ. ପି. ବାସ୍ତବରେ ଗ୍ରାମାଞ୍ଚଳର ବିକାଶ କ୍ଷେତ୍ରରେ ବିଶେଷ ସହାୟକ ହୋଇଛି ।

—0—

# ବାଣିଜ୍ୟେ ବସତେ ଲକ୍ଷ୍ମୀ ....

ଢେଙ୍କାନାଳ ଜିଲ୍ଲା ପାଲଲହଡ଼ା ସବ୍‌ଡିଭିଜନର ପ୍ରସିଦ୍ଧ ମାଲ୍ୟଗିରି ପାହାଡ଼ ତଳେ ଝାରବେଡ଼ା ଗାଁରେ କପିଳାସ ନାୟକର ଘର । ଜାତିରେ ଶବର । ଜମିବାଡି ବୋଲି କିଛି ନ ଥିଲା । ଜମିହୀନ ଯୋଗୁଁ ସରକାରଙ୍କଠାରୁ ୨ ଏକର ତା ବାପା ଶ୍ରୀ କଳାକର ନାୟକ ପାଇଥିଲା । ସଂସାର ଚଳାଇବାରେ ବହୁତ କଷ୍ଟ ।

ସାତ ପ୍ରାଣୀ କୁଟୁମ୍ବ । କପିଳାସ ବାଡିରେ କାମକରି ପେଟ ପୋଷୁଥିଲେ । ବାଡରେ ଶାଗ, ମୁଠାଏ ଭାତ ଓ ମୁଢ଼ିଏ ତୋରାଣୀ ସମସ୍ତଙ୍କ ପେଟକୁ ପାଏନା । ଓଳିଏ ଖାଇଲେ ଓଳିଏ ଉପବାସ । ଗାଁ ମହାଦେବ ଗିରୀଶ୍ଵରଙ୍କୁ ସଦାସର୍ବଦା ଡାକୁଥିଲେ ଦୁଃଖ ଦୂର କରିବାକୁ । ଠିକ୍ ଏହି ଅସମୟରେ ଗାଁର ଗ୍ରାମସେବକବାବୁ ସରକାରଙ୍କ ଆଇ. ଆର. ଡି. ଯୋଜନାରେ କପିଳାସକୁ ଅନ୍ତର୍ଭୁକ୍ତ କଲେ । ତା ମନ ମୁତାବକ ଛୋଟିଆ ଦୋକାନ ଖଣ୍ଡେ କରିବା ପାଇଁ ସୁପାରିଶ୍ ମଧ୍ୟ କରିଦେଲେ ଏବଂ କପିଳାସକୁ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ପାଖକୁ ଦରଖାସ୍ତ କରିବା ପାଇଁ ଫର୍ମ ମଧ୍ୟ ଯୋଗାଇ ଦେଲେ ।

ଫଳରେ କପିଳାସକୁ ପାଲଲହଡ଼ା ଷ୍ଟେଟ ବ୍ୟାଙ୍କ ଜରିଆରେ ଟ ୩,୦୦୦ଙ୍କା ଋଣ ଫେବୃୟାରୀ ୧୯୮୫ ମସିହାରେ ଦୋକାନ ପାଇଁ ମଞ୍ଜୁର କରାଗଲା । ସେଥିରେ ପୁଣି ଟ ୧,୫୦୦ଙ୍କା ସବ୍‌ସିଡି ମଧ୍ୟ ମିଳିଲା । ପାଲଲହ... ଜିନିଷପତ୍ର ୨୩ କିଲୋ ମିଟର ସାଇକେଲରେ ନେଇ ଗାଁ... ଦୋକାନ ଖୋଲିଲା । ନିଜର ପରିଶ୍ରମରେ ଲୋକ... ଖୁଦିଦା ମେଣ୍ଟାଇ ଦୈନିକ ପ୍ରାୟ ଶହେ ଟଙ୍କାରୁ ଦେଢ଼... ଟଙ୍କା ପର୍ଯ୍ୟନ୍ତ ବିକ୍ରିବଟା କଲା । ଅଦ୍ୟାବଧି ଋଣ ବାବ... ୧୦୦ଟଙ୍କା ୩୧-୫-୧୯୮୫ ମସିହାରେ ଶୁଝି ସାରାଣ... ହଳେ ବଳଦ କିଣିଛି ଓ ୨ ଏକର ଜମିକୁ ଏ ବର୍ଷ ଚାଷ... ପାରିଛି । ପରିବାରର ସମସ୍ତଙ୍କ ପେଟରେ ଦାନା ବି ଶା... ପକାଇ ପାରୁଛି । ଗତ କାଲିର ଦରିଦ୍ର ଲୋକଟି, ଆ... ଗଣ୍ଡେ ଭଲରେ ଖାଇ ଖଣ୍ଡେ ଭଲ ପନ୍ଧି ପାରୁଛି । ତା... ପଚାରିଲେ ସେ କହେ "ବାପ ଭାଇ ପର, ସରକାର ନିଜର"

# ଅଭିମନ୍ୟୁଙ୍କ ଅଭିନବ ଉଦ୍ୟମ

କେନ୍ଦୁଝର ଜିଲ୍ଲାର ଘଟଗାଁ ବ୍ଲକ୍ ଅନ୍ତର୍ଗତ ପଣ୍ଡାପଡ଼ା ଗ୍ରାମପଞ୍ଚାୟତର ଧାରୁଆପଦା ଗ୍ରାମବାସୀ ଅଭିମନ୍ୟୁ ସିଂହ ଜଣେ କ୍ଷୁଦ୍ରଚାଷୀ । ଜମିର ପରିମାଣ ତାଙ୍କର ମାତ୍ର ଅଢେଇ ଏକର । ସେହି ଜମିରେ ତାଙ୍କର ପରିବାରର ପନ୍ଦରଜଣ କୁଟୁମ୍ବ ଚଳିବାରେ ବହୁ ସମୟରେ ଅସୁବିଧା ହୁଏ । ଜମିର ପରିମାଣ ଏତେ କମ୍ ସେଥିରେ ପୁଣି ଯେଉଁ ବର୍ଷ ବର୍ଷା ଭଲ ନ ହୁଏ ଫସଲ ହାନି ଘଟେ । ସେ ବର୍ଷ ବହୁତ ଅଭାବ ଅନାଟନ ଭିତରେ ଚଳିବାକୁ ପଡେ । କଣ କଲେ ତାଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଘଟିବ ଅଭିମନ୍ୟୁ ଚିନ୍ତା କରନ୍ତି । ଗାଁରେ ବାହାଘର ହେଲେ ମାଛର ଦରକାର ପଡେ ଓ ମାଛ ଚଢା ଦରରେ କିଣିବାକୁ ପଡେ । ମାଛ ମଧ୍ୟ ଗାଁରେ କାଁ ଭାଁ ପହଞ୍ଚେ, ଯାହାକୁ କି ଚଢା ଦରରେ ଗ୍ରାମବାସୀମାନେ କିଣି ନିଅନ୍ତି । ଏଣୁ ମାଛଚାଷ କଲେ ବେଶ୍ ଦୁଇ ପଇସା ହୋଇ ପାରନ୍ତା ବୋଲି ଅଭିମନ୍ୟୁ ଚିନ୍ତାକରି ଉପାୟ ଖୋଜି ବସିଲେ । ସମନ୍ଵିତ ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ବି. ଡ଼ି. ଓ. ଏବଂ ସମନ୍ଵିତ ଗ୍ରାମ୍ୟ ଉନ୍ନୟନ ଯୋଜନାର ସମସ୍ତ ସାହାଯ୍ୟ ଲାଭକରି ପଣ୍ଡାପଡା ବୈତରଣୀ ଗ୍ରାମ୍ୟ ବ୍ୟାଙ୍କରୁ ଟ୬,୫୦୦ଙ୍କା ପୋଖରୀ ଖୋଳି ମାଛ ଚାଷ ନିମନ୍ତେ ଋଣ ପାଆନ୍ତି, ଯେଉଁଥିରୁ କି ସେ ଟ୩,୨୫୦ଙ୍କା ରିହାତିର ସୁଯୋଗ ପାଇ ପାରନ୍ତି ।

ଋଣ ଆଣିବା ପରେ ୦.୮୫ ଏକର ଜମିରେ ଗୋଟିଏ ପୋଖରୀ ଖୋଳି ୧୯୮୩ ଅଗଷ୍ଟ ମାସରେ ଉକ୍ତ ପୋଖରୀରେ ଟ୩୦୦ଙ୍କାର ମାଛ ଯାଆଁଳ ଛାଡନ୍ତି । ବର୍ତ୍ତମାନ ଏହା ବୃଦ୍ଧିପାଇ ଗୋଟିଏ ଗୋଟିଏ ମାଛ ପ୍ରାୟ ୨୫୦ ଗ୍ରାମରୁ ୫୦୦ ଗ୍ରାମ ଯାଏ ହେଲେଣି । ମାଛ ଜାଲ ପଡ଼ି ଧରା ହୋଇ ନାହାନ୍ତି । ନିଜର ବ୍ୟବହାର ପାଇଁ ମାଛ ଧରିବା ଛଡା ଟ୨୦୦ଙ୍କାର ମାଛ ସାମୟିକ ଭାବେ ଜାଲ ପକାଇ ମାଛଧରି ବିକ୍ରି କରିଅଛନ୍ତି । ବର୍ତ୍ତମାନ ଏହି ପୋଖରୀଟି ଜଳପୂର୍ଣ୍ଣ ହୋଇଅଛି ଯାହାଦ୍ଵାରା କି ଏହାର ପାଣି ଏକ ଏକରରୁ ୨ ଏକର ଜମିକୁ ପାଣି ଯୋଗାଇ ଦେବାରେ ଏବଂ ଅଧିକାଂଶ ଫସଲ କରାଇବାରେ ସକ୍ଷମ ହୋଇ ପାରିବ । ବର୍ତ୍ତମାନ ଅବସ୍ଥା ସୁଧୁରିଛି । ଅର୍ଥନୈତିକ ଅବସ୍ଥାରେ ଉନ୍ନତି ଘଟିଛି । ଅଭିମନ୍ୟୁଙ୍କ ପନ୍ଦର ପ୍ରାଣୀ କୁଟୁମ୍ବ ଆନନ୍ଦରେ ଅଛନ୍ତି । ଋଣ ପରିଶୋଧ କରିବାରେ କୌଣସି ଅସୁବିଧା ହେବନି ବୋଲି ଦୃଢ଼ସ୍ଵରରେ ସେ କୁହନ୍ତି ।



## ବୈଦେହୀ ପାଇଲା ନୂଆ ଜୀବନ

ସୁନ୍ଦରଗଡ଼ ଜିଲ୍ଲା ରାଜଗାଙ୍ଗପୁର ବ୍ଲକ ଅନ୍ତର୍ଗତ ବଡ଼ ଗୁତିହାଳୀ ଗାଁର ବୈଦେହୀ ତନ୍ତୀ । ବୟସ ଅଠର । ଦୁର୍ଭାଗ୍ୟବଶତଃ ସେ ପିଲାଦିନୁ ବାପ ମା ହରେଇଛି । ସାହାରା ଦେବାକୁ ସେମିତି କେହି ନାହିଁ ନିଜର । ମୁହଁରେ କିଛି ଆହାର ଦେବାକୁ ଉପାୟ ନାହିଁ । ଗରିବ ମାମୁଁ ଉପରେ ବୋଝ ହେବାରେ ବା ଲାଭ କ'ଣ ? ବୈଦେହୀ କାନ୍ଦୁଛି । ଦିନ ଆଉ ରାତି ସାରା ଭାବୁଛି, ଦୁନିଆଁରେ ସେ ଏକାହିଁ ଦୁଃଖୀ । ବଞ୍ଚିବାର ରାସ୍ତାଟା ତା ପାଇଁ ସବୁଆଡୁ ବନ୍ଦ । ହେଲେ ହଠାତ୍ ସେ ରାସ୍ତା ଖୋଲିଗଲା ଦିନେ । ସେ ନିଶ୍ଚିତ୍ରୟ ଦରିଦ୍ର ବୋଲି ସରକାରଙ୍କ ଦୃଷ୍ଟିକୁ ଆସିଲା । ୧୯୮୧-୮୨ ମସିହାରେ ଦରିଦ୍ର ଲୋକଙ୍କ ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମରେ ସେ ଶହିଦଙ୍କାର ଟଙ୍କା ପାଇଲା । ଗିହାତି ବାବଦକୁ ଶତକଡ଼ା ୨୫ ଭାଗ । ସେ ଟଙ୍କାରେ ତାକୁ ଏକ ଦୁଧିଆଳି ଜର୍ସିଗାଈ ଦିଆଗଲା । ଗାଈର ଖାଇବା ରହିବା ଖର୍ଚ୍ଚ ମଧ୍ୟ ମିଳିଗଲା । ବୈଦେହୀ ଏଥର ଲାଗି ପଡିଲା । ନିଜଠୁଁ ବଳି ଅଧିକା ଯତ୍ନ ନେଲା ଗାଈର । ପ୍ରତ୍ୟେକ ଦିନ ୧୦ ରୁ ୧୨ ଲିଟର କ୍ଷୀର, ଲିଟର ପ୍ରତି ୪ ଟଙ୍କା ଦରରେ ବିକ୍ରି କଲା । ସବୁ ଖର୍ଚ୍ଚ ପରେ ଦିନକୁ ରୋଜଗାର କଲା ହାରାହାରି ୨୦ ଟଙ୍କା । ଯା'ଭିତରେ ଋଣ ସବୁ ଶୁଝି ଦେଲାଣି ।

ଏଇ କିଛିଦିନ ହେବ ଆଉ ଏକ ଗାଈ ବି ନେଲାଣି ଋଣରେ । ଭୁଲିଗଲାଣି ସେ ପଛ ଦୁଃଖ ସବୁ । ଦୁଇଟି ଗାଈରୁ ରୋଜଗାର ତା'ର ୪୦ ଟଙ୍କା । କ୍ଷୀର ଲିଟର ୫ ଟଙ୍କାକୁ ବଢ଼ିଯାଇଛି । ଆନନ୍ଦ ତା'ର କହିଲେ ନ ସରେ ।ବୁଝୁଛି ସେ ଏବେ ତା ଯତ୍ନ, ତା ପରିଶ୍ରମ ତାକୁ ଏକବାରେ ବଦଳେଇ ଦେଇଛି । କେତେ ଆଡୁ କେତେ ପ୍ରସ୍ତାବ ତା'ର ବାହାଘର ପାଇଁ । ମନ ଭିତରେ ଗୋଟାଏ ଅଜଣା ଆନନ୍ଦ । ବେଶ ଖୁସି ହୁଅନ୍ତି ଆଖ ପାଖ ଲୋକ, ତା'ର ଏ ପରିବର୍ତ୍ତନ ଦେଖି । ସେମାନେ କୁହନ୍ତି "ସତରେ, ବୈଦେହୀ ପାଇଲା ନୂଆ ଜୀବନ ।"

## ଚିନ୍ତାମଣିର ଚିନ୍ତା ଗଳ୍ପ...

ବଲାଙ୍ଗୀର ସବ୍‌ଡିଭିଜନ ଅନ୍ତର୍ଗତ ଦେଓଗାଁ ପଞ୍ଚାୟତ ସମିତି ଅଞ୍ଚଳରେ 'ଅର୍ଜୁନପୁର' ଅଭ୍ୟନ୍ତରରେ ବଣ ପାହାଡ଼ ଘେରା ଏକ ପଲ୍ଲୀଗ୍ରାମ । ଏହା ଜିଲ୍ଲା ସଦର ମହକୁମାଠାରୁ ପ୍ରାୟ ୩୫ କିଲୋମିଟର ଦୂରରେ ଅବସ୍ଥିତ । ଏହି ଗ୍ରାମରେ କନ୍ଧ, ଆଦିବାସୀ ସମ୍ପ୍ରଦାୟରେ ଶ୍ରୀ ଚନ୍ତାମଣି କର୍ଣ୍ଣର ବାସ କରନ୍ତି । ସେ ଜଣେ ଭୂମିହୀନ ଗରିବ ପରିବାରର କର୍ତ୍ତା । ବୟସ ପ୍ରାୟ ୪୫ ବର୍ଷ ହେବ । ଘରେ ସାତ ଜଣ କୁଟୁମ୍ବ । ତାଙ୍କ ପରିଶ୍ରମ ଉପରେ ନିର୍ଭର କରି ଚଳନ୍ତି । ତାଙ୍କର ୪ଟି ପିଲାସହ ନିର୍ଭରଶୀଳ ମାଉସୀ,ମା ଏବଂ ସେମାନେ ଦୁଇପ୍ରାଣୀ । ନିଜର ଘରଡିହ ନ ଥିବାରୁ ଅନ୍ୟ ଜଣେ ସମ୍ପର୍କୀୟଙ୍କ ଡିହରେ ଖଣ୍ଡେ ଘର କରିବାର ଅନୁକମ୍ପା ସେ ପାଇଛନ୍ତି ।

ଦୈନନ୍ଦିନ ଗୁଜୁରାଣ ମେଣ୍ଟାଇବା ପାଇଁ ମୂଲଲାଗି ଦୁଇ-ପ୍ରାଣୀ ଯାହା ପାଆନ୍ତି, ତହିଁରେ କଷ୍ଟେ ମଷ୍ଟେ ଚଳିବାପାଇଁ ସେମାନେ ବାଧ୍ୟ । କର୍ମକୁ ଆଦରି ଯେଉଁ ଦିନ ମୂଲ କାମ ମିଳେ ତହିଁରେ ଲାଗି ପଡ଼ନ୍ତି ଏବଂ ଯେଉଁ ଦିନ ଠିକିକାମ ବା ଅନ୍ୟ କାହାରି ପାଖରେ କାମ ମିଳେ ନାହିଁ ସେହି ଦୁର୍ଦ୍ଦିନରେ ଉପାସରେ ପେଟରେ ଓଦାକନା ଦେବାକୁ ପଡ଼େ । ପିଲାଙ୍କ କାନ୍ଦଣା ଓ ରୋଗର ଦାଉ ସମ୍ଭାଳି ନେବା ଦେହସୁହା ହୋଇଯିବା ନିଶ୍ଚିତ ।

ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଜରିଆରେ ଦରିଦ୍ରତମ ପରିବାରର ଅର୍ଥନୈତିକ ବିକାଶ ପାଇଁ ବିଭିନ୍ନ ପରିଯୋଜନାର କାର୍ଯ୍ୟକାରିତା ଆରମ୍ଭ ହେଲା । ଦରିଦ୍ରତମ ବ୍ୟକ୍ତି ଭାବରେ ଶ୍ରୀ ଚିନ୍ତାମଣି କର୍ଣ୍ଣ ଚିହ୍ନିତ ହୋଇ ସେବା ସମବାୟ ସଂସ୍ଥାରୁ ଋଣ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇ ପାରିଲେ ।

ନଡ ଗାଁର ସେବା ସମବାୟ ସଂସ୍ଥା ଜରିଆରେ ୧୯୮୦ ମସିହାରେ ସେ ଋଣ ସୂତ୍ରରେ ୧୦ଟି ମେଣ୍ଢା ଏବଂ ନଗଦ ଟ ୧୦୦ଙ୍କା ଋଣ ପାଇଲେ । ସେହିଦିନଠାରୁ ନିଜର ପରିବାରର ଭାଗ୍ୟ ପରିବର୍ତ୍ତନର ଆଶାରଖି ଅତି ଯତ୍ନରେ ସେ ସବୁକୁ ପାଳିବାରେ ପରିବାରର ସମସ୍ତେ ଲାଗି ପଡ଼ିଲେ । ପ୍ରତିବର୍ଷ ମେଣ୍ଢା ଛୁଆ ଜନ୍ମ ହୋଇ ଗୁହାଳରେ ସେଗୁଡ଼ିକର ସଂଖ୍ୟା ବଢ଼ି ଚାଲିବାରେ ତାଙ୍କର ପରିବାରରେ ଆନନ୍ଦର ଲହରୀ ଖେଳିଗଲା ।

ଗତ ପ୍ରାୟ ବର୍ଷ ମଧ୍ୟରେ ମେଣ୍ଢା ଛୁଆମାନଙ୍କୁ ବଢ଼ାଇ ହୃଷ୍ଟପୁଷ୍ଟ କରି ସେମାନଙ୍କୁ ନିଜର ପରିବାରର ଆବଶ୍ୟକୀୟ ଖର୍ଚ୍ଚପାଇଁ ବିଭିନ୍ନ ସମୟରେ ବିକ୍ରି କରି ଶ୍ରୀ ଲଅଁର ଅର୍ଥ ପାଇପାରୁଛନ୍ତି । ପ୍ରତିବର୍ଷ, ପ୍ରାୟ ୩ଟି ମେଣ୍ଢାଏଁ ବିକ୍ରି କରି ଉପାର୍ଜ୍ଜନ କରିବା ସଙ୍ଗେ ସଙ୍ଗେ ଟ ୧୦୫ଙ୍କା ଋଣ ସେ ସୁଝି ପାରିଛନ୍ତି ଏବଂ ବର୍ତ୍ତମାନ ସମୟକୁ ୧୦ଟି ମେଣ୍ଢା ସୁରକ୍ଷିତ ରଖି ପାରିଛନ୍ତି । ତାଙ୍କର ପାଠପଢ଼ାରେ ସେ ଅବହେଳା କରି ନାହାନ୍ତି । ତାଙ୍କର ପିଲା ପୁଅଟି ବର୍ତ୍ତମାନ ଅର୍ଜ୍ଜୁନପୁର ହାଇସ୍କୁଲରେ ଦଶମ ଶ୍ରେଣୀ ପଢ଼ୁଛି । ସେ ପୁଅଟିକୁ ଉପଯୁକ୍ତ ମଣିଷ ଭାବରେ ଗଢ଼ିବା ସେ ଦୃଢ଼ ସଙ୍କଳ୍ପ । ଭବିଷ୍ୟତରେ ଏହି ପୁଅ ଭଲ ନାଗରିକ ହୋଇ ପରିବାରକୁ ଦାରିଦ୍ର୍ୟ ରୂପକ ଅନ୍ଧାର ଆଲୋକକୁ ଯେପରି ନେଇ ପାରିବ ଏହ ଆଶା ସେମାନେ ମନରେ ପୋଷଣ କରିଛନ୍ତି । ତାଙ୍କୁ ପଚାରିବାରେ ସେ କହନ୍ତି ପ୍ରକୃତରେ ଏ ଭଳି ଋଣସବୁ ଯୋଗାଇ ଦେଇ ଆମଭଳି ଅନେକ ଦରିଦ୍ର ଏବଂ ଅବହେଳିତ ପରିବାରକୁ ଦାନାପାଣି ଯୋଗାଇବା ସରକାରଙ୍କ ଉଚିତ ପଦକ୍ଷେପ ଏବଂ ସେ ମଧ୍ୟ ବାସ୍ତବରେ ଉପକୃତ ହୋଇଥିବାରୁ ଆନନ୍ଦିତ । ଚିନ୍ତାମଣିଙ୍କର ଆଉ କେଉଁଥି ପାଇଁ ଚିନ୍ତାନାହିଁ ।



ଚାହିଁ ସ୍ଵପ୍ନ ........

# ପ୍ରଗତି ପ୍ରସଙ୍ଗ

## ଦାରିଦ୍ର୍ୟ ଦୂରୀକରଣ ଦିଗରେ ....

ମୟୂରଭଞ୍ଜ ଜିଲ୍ଲାରେ ଇ. ଆର. ଆଇ. ପି. ଜରିଆରେ ପୋଖରୀରେ ମାଛଚାଷ ଯୋଜନାରୁ ଗତ ୧୯୮୩-୮୪ ଆର୍ଥିକ ବର୍ଷ ସୁଦ୍ଧା ୬୩୫ ଏକର ଆୟତନ ବିଶିଷ୍ଟ ୬୩୭ ଗୋଟି ପୋଖରୀରେ ମିଶ୍ରିତ ମାଛଚାଷ କରାଯାଇଥିଲା । ଏହାଦ୍ୱାରା ଉପକୃତ ହୋଇଥିବା ୧,୨୯୧ ଜଣ ଦରିଦ୍ରତମ ଲୋକଙ୍କ ମଧ୍ୟରୁ ୮୫୧ ଜଣ ଆଦିବାସୀ । ଜଳଭଣ୍ଡାର ମାଛଧରା ଯୋଜନାରେ ମଧ୍ୟ ୬୧୩ ଜଣ ଲୋକଙ୍କୁ ବିଭିନ୍ନ ଜଳଭଣ୍ଡାରରେ ମାଛଧରା ପାଇଁ ଡଙ୍ଗା ଓ ଜାଲ ଆକାରରେ ସାହାଯ୍ୟ ଯୋଗାଇ ଦିଆଯାଇଛି । ସେମାନଙ୍କ ମଧ୍ୟରୁ ୧୯୪ ଜଣ ଆଦିବାସୀ । ସେହିପରି ୧୯୮୪-୮୫ ଆର୍ଥିକ ବର୍ଷରେ ଇ. ଆର. ଆଇ. ପି. ଯୋଜନାରେ ୩୧୦.୧୦ ଏକର ଆୟତନ ବିଶିଷ୍ଟ ୨୯୩ ଗୋଟି ପୋଖରୀରେ ୬୩୧ ଜଣ ଦରିଦ୍ରତମ ଗ୍ରାମବାସୀ ମତ୍ସ୍ୟ ବିଭାଗ ତତ୍ତ୍ୱାବଧାନରେ ମାଛଚାଷ ଆରମ୍ଭ କରିଛନ୍ତି । ଏମାନଙ୍କ ମଧ୍ୟରୁ ୫୭୭ ଜଣ କେବଳ ଆଦିବାସୀ । ଏହି କାର୍ଯ୍ୟକ୍ରମରେ ଜିଲ୍ଲାରେ ସର୍ବମୋଟ ୨,୧୩୫ ଜଣ ଦରିଦ୍ରତମ ବ୍ୟକ୍ତି ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୧,୯୨୨ ଜଣ ଆଦିବାସୀ ଓ ୨୪୯ ଜଣ ହରିଜନ ଅନ୍ତର୍ଭୁକ୍ତ ।

ଏଠାରେ ଉଲ୍ଲେଖନୀୟ ଯେ ସରକାରଙ୍କର ଦାରିଦ୍ର୍ୟ ବିମୋଚନ କାର୍ଯ୍ୟକ୍ରମମାନଙ୍କ ମଧ୍ୟରେ ମାଛଚାଷ ଯୋଜନାଟି ମୟୂରଭଞ୍ଜ ଜିଲ୍ଲାରେ ଯଥେଷ୍ଟ ଲୋକପ୍ରିୟତା ହାସଲ କରିଛି । ମାଛଚାଷ ସହିତ ପୋଖରୀ ହୁଡାରେ ପନିପରିବା ଚାଷରୁ ମଧ୍ୟ ମତ୍ସ୍ୟଚାଷୀମାନେ ଆଶାନୁରୂପ ଆୟ କରିପାରୁଛନ୍ତି ।

—o—

## ମାଛ ଯାଆଁଳ ଉତ୍ପାଦନ ....

୧୯୮୪-୮୫ ମସିହାରେ ମୟୂରଭଞ୍ଜ ଜିଲ୍ଲାରେ ୨୪୭.୨୫ ଲକ୍ଷ ଗୁଣ୍ଡ ଯାଆଁଳ ଉତ୍ପାଦନ କରାଯାଇ ଏକ ନୂତନ ରେକର୍ଡ ସୃଷ୍ଟି ହୋଇଛି । ସେଥିମଧ୍ୟରୁ କେବଳ ଭାକୁର ଯାଆଁଳ ୫୦ ଲକ୍ଷ ଉତ୍ପାଦନ ହୋଇଥିବାରୁ ମୟୂରଭଞ୍ଜ ଜିଲ୍ଲାର ମତ୍ସ୍ୟଚାଷୀମାନେ ଲାଭବାନ ହୋଇ ପାରିଛନ୍ତି । ଜିଲ୍ଲାରେ ଚାହିଦା ମେଣ୍ଟାଇବା ପରେ ଅବଶିଷ୍ଟ ୮୦ ଲକ୍ଷରୁ ଊର୍ଦ୍ଧ୍ୱ ଗୁଣ୍ଡ ଯାଆଁଳ କଟକ, ପୁରୀ ଓ କେନ୍ଦୁଝର ପ୍ରଭୃତି ଜିଲ୍ଲାକୁ ଯୋଗାଇ ଦିଆଯାଇଛି । ଯାଆଁଳ ବିକ୍ରୟରେ ମଧ୍ୟ ଗତ ୫ ବର୍ଷର ହାରାହାରି ଉତ୍ପାଦନ ପ୍ରାୟ ୨୧ ଲକ୍ଷ ଥିବା ସ୍ଥଳେ ଚଳିତ ବର୍ଷ ୩୮.୬ ଲକ୍ଷ ଉନ୍ନତ କାତିଆ ମାଛ ଯାଆଁଳ ବିକ୍ରିରୁ ୨ ଲକ୍ଷ ୩୨ ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଆୟ ହୋଇଛି । ମୋଟ ଯାଆଁଳ ଉତ୍ପାଦନ କ୍ଷେତ୍ରରେ ପୂର୍ବର ସମସ୍ତ ରେକର୍ଡକୁ ଭଙ୍ଗକରି ୧୯୮୪-୮୫ ମସିହାରେ ୪୮.୧ ଲକ୍ଷ ଯାଆଁଳ ଉତ୍ପାଦିତ ହୋଇଥିଲା । ଚଳିତ ଆର୍ଥିକ ବର୍ଷରେ ନାନା ପ୍ରାକୃତିକ ପ୍ରତିବନ୍ଧକ ସତ୍ତ୍ୱେ କେବଳ ୬୨.୨୫ ଲକ୍ଷ ଭାକୁର ଯାଆଁଳ ସହିତ ସର୍ବମୋଟ ୨୫୦ ଲକ୍ଷ ଗୁଣ୍ଡ ଯାଆଁଳ ଉତ୍ପାଦନ କରାଯାଇ ଆଉ ଏକ ନୂତନ ରେକର୍ଡ ସୃଷ୍ଟି କରାଯାଇଛି ।

—o—

## ଗ୍ରାମ ବିକାଶ କାର୍ଯ୍ୟକ୍ରମ ....

ସମ୍ବଲପୁର ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ପରିଚାଳନା ମଣ୍ଡଳୀ ବୈଠକ ସେପ୍ଟେମ୍ବର ମାସର ପ୍ରଥମ ଭାଗରେ ଜିଲ୍ଲାପାଳ ଶ୍ରୀ ଭଜନ ସିଂ ଭାଟିଆଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ଏଥିରେ ଚଳିତ ବର୍ଷ ପାଇଁ ବିଭିନ୍ନ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମରେ ପ୍ରାୟ ୨ କୋଟି ୩୨ ଲକ୍ଷ ଟଙ୍କା ବ୍ୟୟ କରାଯିବ ବୋଲି ସ୍ଥିର ହୋଇଛି ।

ଯେଉଁ ଯେଉଁ ମୁଖ୍ୟ କାର୍ଯ୍ୟକ୍ରମରେ ଏହି ଟଙ୍କା ବ୍ୟୟ କରାଯିବ, ସେଗୁଡ଼ିକ ହେଲା—କୃଷି ବାବଦରେ ୧୮.୫ ଲକ୍ଷ ଟଙ୍କା, ପଶୁପାଳନ ବାବଦରେ ୩୩ ଲକ୍ଷ ଟଙ୍କା, ମତ୍ସ୍ୟଚାଷରେ ୩ ଲକ୍ଷ ଟଙ୍କା, କ୍ଷୁଦ୍ର ଜଳସେଚନ ବାବଦରେ ୧୯ ଲକ୍ଷ ଟଙ୍କା, ଗ୍ରାମ୍ୟ ଶିଳ୍ପ ବାବଦରେ ୪୪ ଲକ୍ଷ ଟଙ୍କା ଓ ଆନୁଷଙ୍ଗିକ ଶିଳ୍ପ ପାଇଁ ୩୨ ଲକ୍ଷ ଟଙ୍କା । ଭିତ୍ତିଭୂମିକ ସୁବିଧାରେ ଉନ୍ନୟନ ପାଇଁ ରଖାଯାଇଥିବା ଅର୍ଥ ମଧ୍ୟରୁ ଝାରସୁଗୁଡା ଓ ବରଗଡ ଦୁଗ୍ଧ ଶୀତଳୀକରଣ ଭଣ୍ଡାର, ଗୋ-ବତ୍ସ ପାଳନ ଓ ଫଳ ଉଦ୍ୟାନ ପାଇଁ ୩୨ ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବାର ପରିକଳ୍ପନା ରହିଛି ।

ଗ୍ରାମ୍ୟ ଯୁବକମାନଙ୍କର ଆତ୍ମନିଯୁକ୍ତି ନିମନ୍ତେ ତାଲିମ ବ୍ୟବସ୍ଥାରେ ୨୦ ଲକ୍ଷ ଯୁବକଙ୍କୁ ଆତ୍ମନିଯୁକ୍ତି ପାଇଁ ତାଲିମ ଦେବା ବାବଦରେ ୨୦ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ଏବଂ ଏଥିରେ ୧,୫୦୮ ଜଣ ଯୁବକ ଓ ୨,୪୨୮ ଜଣ ଯୁବତୀଙ୍କୁ ବିଭିନ୍ନ ବ୍ୟବସାୟ ପାଇଁ ଶିକ୍ଷା ଦିଆଯିବ ।

ଏତଦ୍‌ବ୍ୟତୀତ ଗ୍ରାମ୍ୟ ଭୂମିହୀନ ନିଯୁକ୍ତି ଗ୍ୟାରେଣ୍ଟି ଯୋଜନାନୁସାରେ କ୍ଷୁଦ୍ର ଜଳସେଚନ, ଗ୍ରାମ୍ୟ ରାସ୍ତା, ସାମାଜିକ ବନୀକରଣ, ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକମାନଙ୍କ ନିମନ୍ତେ ବିଭିନ୍ନ ଲାଭଜନକ ଯୋଜନା ମାଧ୍ୟମରେ ୨ କୋଟି ୮୯ ଲକ୍ଷ ଟଙ୍କା ବ୍ୟୟ କରାଯିବ । ଆଦିବାସୀ ଓ ହରିଜନ ସଂପ୍ରଦାୟକୁ ଅଗ୍ରାଧିକାର ଭିତ୍ତିରେ ଉଚ୍ଛେଦିତ ଗୋଟି ଶ୍ରମିକମାନଙ୍କ ପାଇଁ ୬ ଲକ୍ଷ ଟଙ୍କା ବ୍ୟୟରେ ୧୦୦ଟି ଗୃହ ନିର୍ମାଣ କରାଯିବ ବୋଲି ପ୍ରସ୍ତାବ ରଖାଯାଇଛି ।

ଉଠାଜଳସେଚନ କାର୍ଯ୍ୟକ୍ରମ ସମୀକ୍ଷାରୁ ପ୍ରକାଶ ଯେ ଚଳିତ ବର୍ଷ ୨୦୦ଟି ଉଠାଜଳସେଚନ ପଏଣ୍ଟ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ବୈଠକରେ ଜିଲ୍ଲାର ବିଧାୟକ ଓ ଲୋକସଭା ସଦସ୍ୟ ସମେତ ଜିଲ୍ଲାସ୍ତରୀୟ କର୍ମଚାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

—o—

## କଳାହାଣ୍ଡିରେ ମାଛ ଚାଷ ....

କଳାହାଣ୍ଡି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ତରଫରୁ ଚଳିତ ବର୍ଷାଋତୁରେ ମାଛ ଯାଆଁଳ ଛାଡ଼ିବା ପାଇଁ ୪୩'୩୬ ହେକ୍ଟର ଆୟତନ ବିଶିଷ୍ଟ ୧୬୩ ଗୋଟି ପୋଖରୀ ପ୍ରସ୍ତୁତି ସଙ୍ଗେ ସଙ୍ଗେ ସେଥିରେ ସଘନ ମିଶ୍ରିତ ମାଛଚାଷ ଆରମ୍ଭ ହୋଇଛି । ୧୭୮ ଜଣ ଆଗ୍ରହୀ ମତ୍ସ୍ୟଚାଷୀଙ୍କୁ ସଘନ ମିଶ୍ରିତ ମାଛଚାଷ ପ୍ରଣାଳୀ ସଂପର୍କରେ ତାଲିମ ଦେବା ପରେ ପୁନର୍ବାର ୩୦ ଜଣଙ୍କୁ ଧର୍ମଗଡ ବ୍ଲକ୍‌ରେ ସେପ୍‌ଟେମ୍ବର ୯ ତାରିଖରୁ ତାଲିମ ଦିଆଯାଉଛି । ଏହି ସଂସ୍ଥାରୁ ୪୦ ଜଣ ମତ୍ସ୍ୟଚାଷୀଙ୍କୁ ବ୍ୟାଙ୍କ୍ ଜରିଆରେ ୫୩,୨୦୦ ଟଙ୍କା ସବ୍‌ସିଡି ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ମିନିକିଟ୍ ଯୋଜନା ଅନୁଯାୟୀ ମାଛଚାଷ କରିବା ପାଇଁ ନିଆଯାଇଥିବା ୧୦ ହେକ୍ଟର ଜଳାଶୟରେ ସାର ପ୍ରୟୋଗ ଓ ଯାଆଁଳ ଛଡା କାମ ଶେଷ ହୋଇଛି ।

କ୍ଷୁଦ୍ରଚାଷୀମାନଙ୍କୁ ଉପକୃତ କରିବା ପାଇଁ ଏହା ଏକ ସ୍ୱତନ୍ତ୍ର ଯୋଜନା । ୧୯୮୫ ମାର୍ଚ୍ଚ ମାସରେ ଏହି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ବାସ୍ତବ ରୂପରେଖ ନେଇଛି ଏବଂ ଏ ପର୍ଯ୍ୟନ୍ତ ୧୭୪'୧୩ ହେକ୍ଟର ଆୟତନ ବିଶିଷ୍ଟ ଜଳାୟତନ ଅଞ୍ଚଳ ଉନ୍ନତି ନିମନ୍ତେ ୩୨୦ ଗୋଟି ଦରଖାସ୍ତକୁ ସୁପାରିଶ ସହ ବ୍ୟାଙ୍କମାନଙ୍କୁ ପଠାଯାଇଛି । ସେହି ଦରଖାସ୍ତଗୁଡ଼ିକ ମଧ୍ୟରେ ପୁରୁଣା ପୋଖରୀର ପଙ୍କୋଦ୍ଧାର, ନୂଆ ପୋଖରୀ ଖୋଳା କେବଳ ମାଛଚାଷ ଅନ୍ତର୍ଗତ । ବ୍ୟାଙ୍କ କର୍ତ୍ତୃପକ୍ଷ ସେଗୁଡ଼ିକରୁ ୧୭୪ ଗୋଟି ଦରଖାସ୍ତକୁ ମଞ୍ଜୁରୀ ପ୍ରଦାନ କରି କିସ୍ତିଓ୍ୱାରୀ ଅର୍ଥ ଯୋଗାଉଛନ୍ତି ।

## ନୂତନ ଗୃହକୁ ବିଦ୍ୟୁତ୍ ଓ ଜଳ ଯୋଗାଣ

ଓଡ଼ିଶା ଉନ୍ନୟନ ପ୍ରାଧିକାରୀ ଅଧିନିୟମର ୯୩ ଧାରା ଅନୁଯାୟୀ କୌଣସି ନବନିର୍ମିତ ଗୃହକୁ ସ୍ଥାୟୀ ଜଳ ଯୋଗାଣ ଓ ବିଦ୍ୟୁତ୍ ଯୋଗାଣ ପାଇଁ ସଂପୃକ୍ତ ଉନ୍ନୟନ ସଂସ୍ଥାଙ୍କଠାରୁ ଆପତ୍ତି ବିହୀନ ପ୍ରମାଣପତ୍ର ସଂଗ୍ରହ କରିବା ଆବଶ୍ୟକ ହେଉଥିଲା ।

ଫଳରେ ଏଥିପାଇଁ ଜନସାଧାରଣଙ୍କର ହେଉଥିବା ଅସୁବିଧାକୁ ଦୂର କରିବା ଉଦ୍ଦେଶ୍ୟରେ ଉକ୍ତ ଅଧିନିୟମରୁ ସେହି ଧାରାକୁ ବିଲୋପ କରାଯାଇଛି । ଏହାଦ୍ୱାରା ଭୁବନେଶ୍ୱର ଉନ୍ନୟନ ସଂସ୍ଥା ଅଧୀନସ୍ଥ ଭୁବନେଶ୍ୱର, ଜଟଣୀ ଓ ଖୋର୍ଦ୍ଧା ପୌର ପରିଷଦ ଅଞ୍ଚଳ ଏବଂ କଟକ ଉନ୍ନୟନ ସଂସ୍ଥା ଅଧୀନସ୍ଥ କଟକ ଓ ଚୌଦ୍ୱାର ପୌର ପରିଷଦ ଅଞ୍ଚଳ ସମେତ ଅନ୍ୟାନ୍ୟ ଅଞ୍ଚଳରେ ନବନିର୍ମିତ ବାସଗୃହ ପାଇଁ ଜଳ ଓ ବିଦ୍ୟୁତ୍ ଯୋଗାଣ କରିବାକୁ ଆଉ ଉନ୍ନୟନ ସଂସ୍ଥାଙ୍କଠାରୁ ଆପତ୍ତି ବିହୀନ ପ୍ରମାଣପତ୍ର ସଂଗ୍ରହ କରିବା ଆବଶ୍ୟକ ପଡ଼ିବ ନାହିଁ । ଏ ସଂକ୍ରାନ୍ତରେ ସଂପୃକ୍ତ ଜଳ ଯୋଗାଣ ଓ ବିଦ୍ୟୁତ୍ ଯୋଗାଣ ନିର୍ବାହୀ ଯନ୍ତ୍ରୀଙ୍କୁ ସରକାରୀ ନିର୍ଦ୍ଦେଶନାମା ପଠାଇ ଦିଆଯାଇଛି ।

—o—

## ସମନ୍ୱିତ ଗ୍ରାମାଞ୍ଚଳ ଉନ୍ନୟନ .....

ସମନ୍ୱିତ ଗ୍ରାମାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୫-୮୬ ବର୍ଷର ଜୁଲାଇ ଶେଷସୁଦ୍ଧା କଟକ ଜିଲ୍ଲାରେ ୪୦୨ ଜଣ ତଫସିଲଭୁକ୍ତ ଜାତି ଓ ୩୫ ଜଣ ତଫସିଲଭୁକ୍ତ ସଂପ୍ରଦାୟର ପରିବାରଙ୍କ ସମେତ ମୋଟ ୧,୯୦୨ ଟି ପରିବାର ଉପକୃତ ହୋଇଛନ୍ତି ।

ଏ ବାବଦରେ ୧ କୋଟି ୬ଲକ୍ଷ ୫୦ ହଜାର ଟଙ୍କା ସରକାରୀ ସାହାଯ୍ୟ ଦିଆଯିବା ସଙ୍ଗେ ସଙ୍ଗେ ଉପରୋକ୍ତ ପରିବାରମାନଙ୍କ ଲାଗି ବିଭିନ୍ନ ଧନ୍ଦା ପାଇଁ ବ୍ୟବସାୟିକ ବ୍ୟାଙ୍କ ଓ ସମବାୟ ବ୍ୟାଙ୍କଗୁଡ଼ିକରୁ ୫୮ ଲକ୍ଷ ୧୩ ହଜାର ଟଙ୍କାର ଋଣ ମଞ୍ଜୁର କରାଯାଇଛି ।

—o—

## ଜଳକ୍ଲିଷ୍ଟ ଗ୍ରାମକୁ ପାନୀୟ ଜଳ ଯୋଗାଣ

ଅଦିବାସୀ ବହୁଳ ତଥା ପାର୍ବତ୍ୟ ଅଞ୍ଚଳ ପରିପୂର୍ଣ୍ଣ କୋରାପଟ ଜିଲାର ସମୁଦାୟ ୫,୬୮୩ ଟି ଗ୍ରାମ ମଧ୍ୟରୁ ମାତ୍ର ୧,୦୫୩ ଟି ଗ୍ରାମ ପୂର୍ବରୁ ଜଳକ୍ଲିଷ୍ଟ ରୂପେ ଚିହ୍ନିତ ହୋଇଥିଲା । ଏତଦ୍ୱାରା ଆୟତନ ଦୃଷ୍ଟିରୁ ବୃହତ୍ତମ ଏହି ଜିଲ୍ଲାର ଅଧିକାଂଶ ଗ୍ରାମବାସୀ ପାନୀୟ ଜଳ ପାଇବାରୁ ବଞ୍ଚିତ ହୋଇଥିଲେ । ରାଜ୍ୟର ଗ୍ରାମାଞ୍ଚଳ ପାନୀୟ ଜଳ ଯୋଗାଣ ଯୋଜନାକୁ ଅଧିକ ବ୍ୟାପକ କରିବା ଲାଗି ସରକାରଙ୍କ ନିଷ୍ପତ୍ତି ଅନୁଯାୟୀ ଜଳାଭାବ ଥିବା ଅଧିକ ଗ୍ରାମକୁ ଚିହ୍ନଟ କରିବା ପାଇଁ ତ୍ୱରାନ୍ୱିତ ପଦକ୍ଷେପ ନିଆଯାଇଛି । ତଦନୁସାରେ କୋରାପୁଟ ଜିଲ୍ଲାରେ ଅଧିକ ୪,୧୫୯ଟି ଗ୍ରାମକୁ ଜଳକ୍ଲିଷ୍ଟ ଗ୍ରାମ ରୂପେ ଚିହ୍ନଟ କରାଯାଇଛି । ସମସ୍ତ ରାଜ୍ୟରେ ସମୁଦାୟ ୧୫.୧୪୪ ଗ୍ରାମ ଜଳକ୍ଲିଷ୍ଟ ରୂପେ ନୂତନ ଭାବେ ଚିହ୍ନିତ ହୋଇଥିବା ସ୍ଥଳେ କେବଳ କୋରାପୁଟ ଜିଲ୍ଲାରେ ୪,୧୫୯ଟି ଗ୍ରାମ ଚିହ୍ନଟ କରାଯାଇଛି । ଗତ ବିଧାନସଭାରେ କରାଯାଇଥିବା ଘୋଷଣା ଅନୁଯାୟୀ ନୂତନ ଭାବେ ଚିହ୍ନିତ ହୋଇଥିବା ରାଜ୍ୟର ଅଧିକ ୧୫,୧୪୪ଟି ଗ୍ରାମ ନିମନ୍ତେ ପାନୀୟ ଜଳ ବ୍ୟବସ୍ଥା କରିବାଲାଗି ଆବଶ୍ୟକୀୟ କେନ୍ଦ୍ରୀୟ ସାହାଯ୍ୟ ଲୋଡ଼ା ଯାଇଛି ।

ଏହି ଜିଲ୍ଲାରେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୪୭୧ଟି ଅଣ ଚିହ୍ନିତ ଗ୍ରାମ ଓ ୯୮୩ଟି ଚିହ୍ନିତ ଗ୍ରାମରେ ସମୁଦାୟ ୩,୪୭୪ଟି ନଳକୂପ ବସାଯାଇଛି ଏବଂ ତନ୍ମଧ୍ୟରୁ ୩.୩୮୮ଟି ନଳକୂପ କାର୍ଯ୍ୟକ୍ଷମ ରହିଛି । ଚଳିତ ଆର୍ଥିକ ବର୍ଷରେ ସହରାଞ୍ଚଳଗୁଡ଼ିକ ପାଇଁ ବରାଦ ହୋଇଥିବା ୩୯ଟି ନଳକୂପ ସମେତ ଗାଁ ଗହଳରେ ୧,୨୪୧ଟି ନଳକୂପ ବସାଇବାର କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହି ଲକ୍ଷ୍ୟ ପୂରଣ କରିବାପାଇଁ

ଲ୍ଲାର ବିଭିନ୍ନ ସ୍ଥାନରେ ୧୨ଟି ଅତ୍ୟାଧୁନିକ ରିଗ୍-ମେସିନ୍ ଓ ୩୬ଟି କାରଲକ୍ସ୍ ରିଗ୍‌କୁ କାମରେ ଲଗାଯାଇଛି । ଆବଶ୍ୟକ ସ୍ଥଳେ ନଳକୂପର ତୁରନ୍ତ ମରାମତି କାର୍ଯ୍ୟ କରିବା ପାଇଁ ଗ୍ରାମ୍ୟ ଓ ବ୍ଲକ୍ ସ୍ତରୀୟ ମିସ୍ତ୍ରୀମାନଙ୍କ ସମେତ ୫ଟି ଭ୍ରାମ୍ୟମାଣ ମରାମତି ସଂସ୍ଥା ନିଯୁକ୍ତ ଅଛନ୍ତି । ଚଳିତ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ନୂତନ ଭାବେ ଚିହ୍ନିତ ହୋଇଥିବା ୪,୧୫୯ଟି ଗ୍ରାମରେ ଗୃହିଦା ଅନୁଯାୟୀ ନଳକୂପ ବସାଇବାପାଇଁ ଲକ୍ଷ୍ୟ ରହିଛି । ଏହା ବ୍ୟତୀତ ଜିଲ୍ଲାର ଗ୍ରାମାଞ୍ଚଳରେ ୯ ଗୋଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇ ସ୍ଥାନୀୟ ଅଧିବାସୀମାନଙ୍କୁ ଦୈନିକ ୩,୦୦୦ ରୁ ୬୨,୦୦୦ ଗ୍ୟାଲନ୍ ପର୍ଯ୍ୟନ୍ତ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା କରାଯାଉଛି ।

ସେହିପରି ସହରାଞ୍ଚଳ ଜଳ ଯୋଗାଣ କ୍ଷେତ୍ରରେ ହାସଲ ହୋଇଥିବା ସାଫଲ୍ୟ ଉଲ୍ଲେଖନୀୟ । ଏହି ଜିଲ୍ଲାର ୧୧ଟି ପୌରାଞ୍ଚଳ ମଧ୍ୟରୁ ରାୟଗଡ଼ା, ଜୟପୁର, ମାଲ୍‌କାନଗିରି, ସୁନାବେଡ଼ା ଓ ନବରଙ୍ଗପୁର ପୌରାଞ୍ଚଳଗୁଡ଼ିକରେ ପାଇପ୍ ଯୋଗେ ପାନୀୟଜଳ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ସୁନାବେଡ଼ାରେ ୧ କୋଟି ୯୫ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଏବଂ କୋରାପୁଟରେ ୬୪ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଦୁଇଟି ଜଳ ଯୋଗାଣ ପ୍ରକଳ୍ପ ଚାଲୁ ରହିଛି । ଏହାକୁ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ପୂର୍ଣ୍ଣାଙ୍ଗ କରି ଦୈନିକ ସଂପୃକ୍ତ ସହରାଞ୍ଚଳ ଅଧିବାସୀଙ୍କୁ ପର୍ଯ୍ୟାପ୍ତ ପରିମାଣ ପାନୀୟ ଜଳ ଯୋଗାଇ ଦିଆଯିବ । ଏହବ୍ୟତୀତ ଜିଲ୍ଲାର ସମସ୍ତ ପୌରାଞ୍ଚଳରେ ସଂପ୍ରତି ୩୭୮ଟି ନଳକୂପ କାର୍ଯ୍ୟକ୍ଷମ ରହିଛି । ଚଳିତ ବର୍ଷ ସହରାଞ୍ଚଳ ପାଇଁ ବରାଦ ହୋଇଥିବା ୩୯ଟି ନଳକୂପ ମଧ୍ୟରୁ ୧୭ଟିର କାର୍ଯ୍ୟ ଇତି ମଧ୍ୟରେ ଶେଷ ହୋଇଛି ।

—o—

# ଶିଶୁ ବିକାଶ ପ୍ରକଳ୍ପ

କଳାହାଣ୍ଡି ଜିଲ୍ଲାରେ ଆଉ ଦୁଇଟି ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପ ପାଇଁ କେନ୍ଦ୍ର ସରକାର ମଞ୍ଜୁର କରିଛନ୍ତି । ଏହା କୋମନା ଓ ଖଡ଼ିଆଳ ବ୍ଲକ୍ ଦୁଇଟିରେ କାର୍ଯ୍ୟକାରୀ ହେବ । ଏହି ନୂତନ ପ୍ରକଳ୍ପ ଦୁଇଟିକୁ ମିଶାଇ ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପର ସଂଖ୍ୟା ସମଗ୍ର ଜିଲ୍ଲାରେ ୮ ଓ ସମଗ୍ର ରାଜ୍ୟରେ ୬୦କୁ ବୃଦ୍ଧି ପାଇଛି । ଏହାଦ୍ୱାରା ଉପରୋକ୍ତ ଦୁଇଟି ବ୍ଲକ୍‌ର ୬ ବର୍ଷରୁ କମ୍ ବୟସର ଶିଶୁ, ଗର୍ଭବତୀ ଓ ପ୍ରସୂତି ମହିଳାଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଣ, ଶିଶୁମାନଙ୍କର ପ୍ରାକ୍‌ବିଦ୍ୟାଳୟ ଶିକ୍ଷା, ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା ଇତ୍ୟାଦିର ସୁବିଧା ଯୋଗାଇ ଦିଆଯାଇ ପାରିବ । ଜାତିସଂଘର ଶିଶୁ କଲ୍ୟାଣ ସଂସ୍ଥା ଦ୍ୱାରା ସାହାଯ୍ୟପ୍ରାପ୍ତ ଏହି କାର୍ଯ୍ୟକ୍ରମଗୁଡ଼ିକ କୋମନାର ୧୩୯ଟି ଓ ଖଡ଼ିଆଳର ୭୫ଟି, ଏପରି ମୋଟ୍ ୨୧୪ଟି ଅଙ୍ଗନବାଡ଼ି କେନ୍ଦ୍ର ଜରିଆରେ କାର୍ଯ୍ୟକାରୀ କରାଯିବ ଏବଂ ପ୍ରତ୍ୟେକ ଅଙ୍ଗନବାଡ଼ି କେନ୍ଦ୍ରରେ ଜଣେ ଲେଖାଏଁ ସ୍ଥାନୀୟ ମହିଳାଙ୍କୁ ନିଯୁକ୍ତି ଦିଆଯିବ ।

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ନିକଟରେ ପ୍ରଧାନମନ୍ତ୍ରୀ କଳାହାଣ୍ଡି ଗସ୍ତ ସମୟରେ ସେହି ଅଞ୍ଚଳର ଶିଶୁ ଓ ମହିଳାମାନଙ୍କ ପାଇଁ ଉପରୋକ୍ତ ବ୍ୟବସ୍ଥାର ଆବଶ୍ୟକତା ଉପଲବ୍ଧି କରି କେନ୍ଦ୍ର ସରକାର ତାହା ମଞ୍ଜୁର କରିଛନ୍ତି । କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି ଜାଣିବା ପରେ ରାଜ୍ୟ ସରକାର ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି ।

—o—

# ପରିବେଶର ସୁରକ୍ଷା ପାଇଁ

ସେପ୍ଟେମ୍ବର ୧୧ ତାରିଖରେ ସମ୍ବଲପୁର ଜିଲ୍ଲା ପରିବେଶ ସମିତିର ଏକ ବୈଠକ ଜିଲ୍ଲାପାଳ ଶ୍ରୀ ଉଜ୍ଜ୍ୱଳ ସିଂହ ଭାଟିଆଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ଯାଇଛି । ଜନସାଧାରଣଙ୍କ ଭିତରେ ପରିବେଶ ସଚେତନତା ଆଣିବାପାଇଁ ସମିତିର କାର୍ଯ୍ୟପନ୍ଥା ସଂପର୍କରେ ଏହି ବୈଠକରେ ଆଲୋଚନା କରାଯାଇଥିଲା । ରାଜ୍ୟ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗର ବରିଷ୍ଠ ବୈଜ୍ଞାନିକ ଡ଼ଃ ରାଧାମୋହନ ଏହି ଆଲୋଚନାରେ ଅଂଶ ଗ୍ରହଣ କରି ପ୍ରକୃତି ଓ ପରିବେଶର ଉନ୍ନୟନ ପାଇଁ ବେସରକାରୀ ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷଙ୍କ ଉଦ୍ୟମର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପରିବେଶ ଉନ୍ନୟନ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟପାଇଁ ପ୍ରତି ଜିଲ୍ଲାରେ ସର୍ବୋତ୍‌କୃଷ୍ଟ ବିବେଚିତ ଦୁଇଟି ବେସରକାରୀ ସଂସ୍ଥାକୁ ରାଜ୍ୟ ସରକାରଙ୍କ ପକ୍ଷରୁ ପ୍ରତିବର୍ଷ ଜୁନ୍ ୫ ତାରିଖ ବିଶ୍ୱ ପରିବେଶ ଦିବସ ଉତ୍ସବରେ 'ପ୍ରକୃତି ମିତ୍ର' ପୁରସ୍କାର ପ୍ରଦାନ କରାଯିବ ବୋଲି ସେ ପ୍ରକାଶ କରିଥିଲେ । ଏଥିପାଇଁ ନଗଦ ୫ ହଜାର ଟଙ୍କା ଓ ଗୋଟିଏ ମାନପତ୍ର ଦିଆଯିବ । ଜିଲ୍ଲାପାଳ ପରିବେଶ ଉନ୍ନୟନ ଦିଗରେ ବେସରକାରୀ ସଂସ୍ଥାମାନଙ୍କୁ ଜଡ଼ିତ କରାଯିବା ଆବଶ୍ୟକ ବୋଲି କହିଥିଲେ ।

—o—

# ସ୍ୱାମୀ ବିବେକାନନ୍ଦ ଓ ଜାତୀୟ ସଂହତି

ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିକୁ ଅନ୍ଧଭାବେ ଅନୁକରଣ ନକରି ଭାରତୀୟ ଚିନ୍ତା ଓ ଚେତନାର ବାହକ ହେବାକୁ ଯୁବ ସଂପ୍ରଦାୟକୁ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ଆହ୍ୱାନ ଜଣାଇଛନ୍ତି ।

ଗତ ସେପ୍ଟେମ୍ବର ୧୨ ସଂଧ୍ୟାରେ ସ୍ଥାନୀୟ ରାମକୃଷ୍ଣ ମିଶନଠାରେ "ସ୍ୱାମୀ ବିବେକାନନ୍ଦ ଓ ଜାତୀୟ ସଂହତି" ସଂପର୍କରେ ଭାଷଣ ଦେଇ ରାଜ୍ୟପାଳ କହିଲେ ଯେ ବୈଜ୍ଞାନିକ ତଥା ଭୌତିକ ପ୍ରଗତି ସତ୍ତ୍ୱେ ପାଶ୍ଚାତ୍ୟ ଜଗତରେ ଏବେ ନୈରାଶ୍ୟ ଓ ହତାଶା ଦେଖାଦେଇଛି । ଐକାନ୍ତିକମୟ ସଂପଦଭିତ୍ତିକ ଜୀବନ ସାମାଜିକ ଅଶାନ୍ତିର କାରଣ ହୋଇଛି । ସଂପଦର ପ୍ରାଚୁର୍ଯ୍ୟ ପରିବର୍ତ୍ତେ ଶାନ୍ତି ଓ ସଂହତି ପାଇଁ ପାଶ୍ଚାତ୍ୟ ଦେଶବାସୀ ପ୍ରାଚ୍ୟ ସଭ୍ୟତା ଓ ସଂସ୍କୃତି ପ୍ରତି ଆକୃଷ୍ଟ ହେଉଛନ୍ତି । ଆଧ୍ୟାତ୍ମିକ ଚେତନାର ଅଭାବ ଏହାର ମୁଖ୍ୟ କାରଣ ବୋଲି ରାଜ୍ୟପାଳ ଦର୍ଶାଇଥିଲେ ।

ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ରାଜ୍ୟପାଳ କହିଲେ, ଏହି

ଉଭୟ ମହାପୁରୁଷ ଭାରତ ଇତିହାସରେ ଏକ ଘଡିସନ୍ଧିପୂର୍ଣ୍ଣ ମୁହୂର୍ତ୍ତରେ ଆବିର୍ଭାବ ହୋଇଥିଲେ । ବେଦ ଉପନିଷଦର ଦେଶ ଭାରତବର୍ଷର ଅଧିବାସୀଙ୍କ ମନରୁ ହୀନମନ୍ୟତା ଦୂରକରି ଏକ ଶ୍ରେଷ୍ଠ ସଭ୍ୟତା ଓ ସଂସ୍କୃତିର ଉତ୍ତରାଧିକାରୀ ଭାବରେ ସେମାନଙ୍କ ମନରେ ଗଭୀର ଆସ୍ଥା ଓ ଆତ୍ମବିଶ୍ୱାସ ଜନ୍ମାଇଥିଲେ ।

ରାଜ୍ୟପାଳ କହିଲେ ଯେ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ପୂର୍ବରୁ ମଧ୍ୟ ବହୁ ସାଧୁ ଓ ସନ୍ଥ ଭାରତ ବର୍ଷରେ ଆବିର୍ଭାବ ହୋଇ ମାନବ ସମାଜରେ ଐକ୍ୟ ଓ ମୈତ୍ରୀ ଭାବ ପ୍ରସାର କରିଥିଲେ । ମାତ୍ର ରାମକୃଷ୍ଣ ପରମହଂସ ସମସ୍ତ ତତ୍ତ୍ୱ ଓ ଚିନ୍ତାଧାରା ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରି ଭାରତୀୟ ଜନଜୀବନ ଓ ଆଧ୍ୟାତ୍ମିକ ଜଗତକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ଭାରତର ବୁଦ୍ଧିଜୀବୀମାନଙ୍କୁ ସେ ନୂତନ ମାର୍ଗ ପ୍ରଦର୍ଶନ କରିଥିଲେ । ସନ୍ଥ କବୀର, ଗୁରୁ ନାନକ, ଶ୍ରୀ ଚୈତନ୍ୟ, ସନ୍ଥ ତୁକାରାମ, ଶ୍ରୀ ବାସବେଶ୍ୱରଙ୍କ ପ୍ରଭୃତି ରଚନା ସେ ଗଭୀରଭାବେ ଅଧ୍ୟୟନ କରିଥିଲେ । ସାଂସ୍କୃତିକ ଐକ୍ୟ ଓ ଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠାର ସେ ପ୍ରତୀକ ଥିଲେ । କୋରାନ, ବାଇବଲ, ଗୁରୁ ଗ୍ରନ୍ଥସାହିବ ମଧ୍ୟ ସେ ଗଭୀରଭାବେ ଅଧ୍ୟୟନ କରିଥିଲେ । କେବଳ ରାଜନୈତିକ ବା ଭୌଗୋଳିକ ସ୍ତରରେ ନୁହେଁ, ଆଧ୍ୟାତ୍ମିକ କ୍ଷେତ୍ରରେ ସଂହତି ପ୍ରତିଷ୍ଠା ପାଇଁ ତାଙ୍କର ଅତୁଳନୀୟ ଅବଦାନ ଥିଲା ।

ରାମକୃଷ୍ଣ ପରମହଂସଙ୍କ ଆଧ୍ୟାତ୍ମିକ ବାର୍ତ୍ତାର ବାହକଭାବେ ସ୍ୱାମୀ ବିବେକାନନ୍ଦ ଆବିର୍ଭାବ ହେଲେ । ମାତ୍ର ୨୦ ବର୍ଷ ବୟସରେ ସେ ରାମକୃଷ୍ଣ ପରମହଂସଙ୍କ ସଂସ୍ପର୍ଶରେ ଆସିଥିଲେ । ପରବର୍ତ୍ତୀ ୪ ବର୍ଷ କାଳ ସ୍ୱାମୀ ବିବେକାନନ୍ଦ ଅପୂର୍ବ ସାଧନା ବଳରେ ସାଂପ୍ରତିକ ସମସ୍ୟା ଓ ତହିଁର ସମାଧାନ ସଂପର୍କରେ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଭାରତୀୟ ସଂସ୍କୃତି, ଆଧ୍ୟାତ୍ମିକତା ଓ ପୁନର୍ଜାଗରଣର ବାର୍ତ୍ତା ଉପସ୍ଥାପନ କରିବାରେ ସେ ଅଦ୍ୱିତୀୟ ସ୍ଥାନ ଗ୍ରହଣ କଲେ । ସ୍ୱାମୀ ବିବେକାନନ୍ଦ ଭାରତ ବର୍ଷର ଚତୁର୍ଦ୍ଦିଗ ପରିଭ୍ରମଣ କରିଥିଲେ । ଲୋକଙ୍କ ଦୁଃଖ, ଦୈନ୍ୟ, ରୋଗ ଓ ଅନ୍ଧବିଶ୍ୱାସ ଦେଖି ସେ ଅଭିଭୂତ ହୋଇ ପଡିଥିଲେ । ଭାରତ ଭଳି ମୁନି ଋଷିଙ୍କ ଦେଶର କ'ଣ ଏଭଳି ଅବସ୍ଥା ହୋଇ ପାରେ ? ପରାଧୀନତା ସତ୍ତ୍ୱେ, ଭାରତବାସୀ ଅନ୍ୟ ଦେଶବାସୀଙ୍କଠାରୁ ନ୍ୟୂନ ନୁହନ୍ତି, ଆଧ୍ୟାତ୍ମିକ ଚିନ୍ତା ଓ ଚେତନାରେ ସେମାନେ ଉନ୍ନତତର, ଏହା ସ୍ୱାମୀଜୀ ଦେଶବାସୀଙ୍କୁ ବୁଝାଇଥିଲେ ।

ଚିକାଗୋଠାରେ ଅନୁଷ୍ଠିତ ବିଶ୍ୱଧର୍ମ ସମ୍ମିଳନୀରେ ଯୋଗ ଦେଇ ସେ ଯେଉଁ ଉଦ୍‌ବୋଧନ ଦେଇଥିଲେ, ତାହା ବିଶ୍ୱବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା । ସାରା ବିଶ୍ୱରେ ତାଙ୍କ ଭାଷଣ ଚହଳ ପକାଇ ଦେଇଥିଲା । ରାଜ୍ୟପାଳ କହିଲେ ଯେ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଭାରତବାସୀଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା । ଦେଶ ପ୍ରେମ ଓ ଦେଶାତ୍ମବୋଧରେ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । ରାମକୃଷ୍ଣ ମିଶନର ସନ୍ନ୍ୟାସୀମାନେ ଦେଶବାସୀଙ୍କ ସେବାରେ ସବୁବେଳେ ନିୟୋଜିତ କରନ୍ତି । ପ୍ରାକୃତିକ ଦୁର୍ବିପାକ ବେଳେ ସେମାନଙ୍କ ସେବାକାର୍ଯ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ରାଜ୍ୟପାଳ କହିଲେ ଯେ ସ୍ୱାମୀ ବିବେକାନନ୍ଦଙ୍କ ବିଦେଶରେ ଝଡ ସୃଷ୍ଟି କରିଥିଲା । ମାତ୍ର ଏବେ ବି... ଅପସଂସ୍କୃତିର ଝଡ ଆମ ଦେଶରେ ବୋହିବାରୁ ଆରମ୍ଭ ... କାମୋଦ୍ଦୀପକ ଉପନ୍ୟାସ, ନଗ୍ନ ଚଳଚ୍ଚିତ୍ର ଓ ମାଦକ... କାରବାର ଦ୍ୱାରା ଆମ ଯୁବ ସଂପ୍ରଦାୟ ବିଭ୍ରାନ୍ତ ହେଉଛ... ଏଥିରୁ ରକ୍ଷା ପାଇବା ପାଇଁ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ... ସହାୟକ ହେବ ବୋଲି ସେ ଦର୍ଶାଇ ଥିଲେ ଓ ଯୁବସଂପ୍ର... ତାଙ୍କ ବାଣୀରୁ ପ୍ରେରଣା ଗ୍ରହଣ କରି ଦେଶରେ ଶାନ୍ତି ଓ ... ଦୃଢ କରିବାକୁ ସେ ନିବେଦନ କରିଥିଲେ ।

---

## ଯୋଜନାର ବିକେନ୍ଦ୍ରୀକରଣ ଉପରେ ଗୁରୁତ୍ୱ...

ଓଡ଼ିଶା ପରି ଗ୍ରାମବହୁଳ ଓ କୃଷିପ୍ରଧାନ ରାଜ୍ୟ... ଗ୍ରାମାଞ୍ଚଳରେ ପାନୀୟ ଜଳ ଯୋଗାଣ, ରାସ୍ତାଘାଟ, ଚିକିତ୍ସା... କେନ୍ଦ୍ର ଓ ବାସଗୃହ ନିର୍ମାଣ ସମେତ ଜନସାଧାରଣଙ୍କ ସର୍ବନିମ୍ନ... ଆବଶ୍ୟକତା ପୂରଣ କରିବା ସରକାରଙ୍କ ଲକ୍ଷ୍ୟ ବୋଲି ଯୋଜନା ଓ ସମନ୍ୱୟ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶରତ ରାଉତ ପ୍ରକାଶ କରିଛନ୍ତି ।

ସେପ୍ଟେମ୍ବର ୧୨ ତାରିଖରେ ସଚିବାଳୟଠାରେ ଅନୁଷ୍ଠିତ ଜିଲ୍ଲା ଯୋଜନା ସଂସ୍ଥାଗୁଡିକର ସହକାରୀ ନିର୍ଦ୍ଦେଶକମାନଙ୍କର ସମ୍ମିଳନୀରେ ଅଧ୍ୟକ୍ଷତା କରି ଶ୍ରୀ ରାଉତ କହିଲେ ଯେ ସେହି ଲକ୍ଷ୍ୟ ହାସଲ କରିବା ଲାଗି ଯୋଜନାର ବିକେନ୍ଦ୍ରୀକରଣ କରିବାକୁ ସରକାର ଉଦ୍ୟମ କରୁଛନ୍ତି । ଏତଦ୍ୱାରା ଜନସାଧାରଣ ଯୋଜନା କାର୍ଯ୍ୟକ୍ରମଗୁଡିକର ସୁଫଳ ଲାଭ କରିପାରିବେ ବୋଲି ସେ ଆଶା ପ୍ରକାଶ କରିଥିଲେ । ରାଜ୍ୟସ୍ତରରେ ପ୍ରଗତିଶୀଳ ଯୋଜନା ପ୍ରଣୟନ କରିବା ପାଇଁ ଯୋଜନା ବୋର୍ଡକୁ ପୁନର୍ଜୀବନ ଦିଆଯିବା ସଙ୍ଗେ ସଙ୍ଗେ ଜିଲ୍ଲାସ୍ତରରେ ଥିବା ଯୋଜନା କମିଟିଗୁଡିକୁ ମଧ୍ୟ ସକ୍ରିୟ କରାଯିବ ବୋଲି ମନ୍ତ୍ରୀ ସୂଚନା ଦେଇଥିଲେ । ଜିଲ୍ଲାରେ ଥିବା ଅନ୍ୟାନ୍ୟ କମିଟି ତୁଳନାରେ ଯୋଜନା କମିଟିଗୁଡିକର ଆଭିମୁଖ୍ୟ, ଲକ୍ଷ୍ୟ ଓ ଦାୟିତ୍ୱ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଓ ସ୍ୱତନ୍ତ୍ର ଧରଣର ହୋଇଥିବାରୁ ସହକାରୀ ନିର୍ଦ୍ଦେଶକମାନେ ସଂପୃକ୍ତ ଜିଲ୍ଲାପାଳମାନଙ୍କର ପରାମର୍ଶ କ୍ରମେ କାର୍ଯ୍ୟ କରିବାକୁ ଶ୍ରୀ ରାଉତ ପରାମର୍ଶ ଦେଇଥିଲେ । ସେହି କମିଟିଗୁଡିକର କାର୍ଯ୍ୟ ସୁଷ୍ଠୁରୂପେ ସଂପାଦନ କରିବା ଲାଗି ଚଳିତ ବର୍ଷ ୧ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ବୋଲି ସୂଚନା ଦେଇ ସେ ପ୍ରତ୍ୟେକ ଜିଲ୍ଲାରେ ପରିସଂଖ୍ୟାନ ବ୍ୟାଙ୍କ ଗଠନ କରାଯିବ ବୋଲି କହିଥିଲେ । ସେଥିପାଇଁ ଜିଲ୍ଲାର ଜନଶକ୍ତି, ପ୍ରାକୃତିକ ସଂପଦ ଓ ସରକାରୀ ଅନୁଦାନ ଇତ୍ୟାଦି ସଂପର୍କରେ ଆବଶ୍ୟକ ତଥ୍ୟ ସଂଗ୍ରହ କରିବାକୁ ମନ୍ତ୍ରୀ ସହକାରୀ ନିର୍ଦ୍ଦେଶକମାନଙ୍କୁ ପରାମର୍ଶ ଦେଇଥିଲେ ।

ଏହି ବୈଠକରେ ଯୋଜନା ବୋର୍ଡର ଉପାଧ୍ୟକ୍ଷ ଡଃ ବୈଦ୍ୟନାଥ ମିଶ୍ର ଉଦ୍‌ବୋଧନ ଦେଇ ଯୋଜନା ବିକେନ୍ଦ୍ରୀକରଣର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଅର୍ଥନୈତିକ ଅଭିବୃଦ୍ଧିର ହାର ତ୍ୱରାନ୍ୱିତ କରିବା ଏବଂ ଦାରିଦ୍ର୍ୟ...

ଶା ବେକାରୀ ସମସ୍ୟାର ବିଲୋପ କରିବା ଯୋଜନା ବିକେନ୍ଦ୍ରୀକରଣର ଦୁଇଟି ମୌଳିକ ଉଦ୍ଦେଶ୍ୟ ବୋଲି ଡଃ ମିଶ୍ର ପ୍ରକାଶ କରିଥିଲେ । ଏହି ଉଦ୍ଦେଶ୍ୟ ସାଧନ କରିବାକୁ ହେଲେ ଗ୍ରାମାଞ୍ଚଳର ଲୋକପ୍ରତିନିଧି ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ସହାୟତାରେ ଯୋଜନାସବୁ ପ୍ରସ୍ତୁତ କରିବା ଆବଶ୍ୟକ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଯୋଜନା ବୋର୍ଡର ସଦସ୍ୟ ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଭାଷଣ ପ୍ରସଙ୍ଗରେ ୭ମ ଯୋଜନାର ବ୍ୟୟ ଅଟକଳ ୨୭,୦୦କୋଟି ଟଙ୍କା ଧାର୍ଯ୍ୟ ହୋଇଛି ବୋଲି ଦର୍ଶାଇ ଯୋଜନା କାର୍ଯ୍ୟକ୍ରମ-ଗୁଡ଼ିକର ସଫଳ ରୂପାୟନ ପାଇଁ ସମ୍ବଳ ସଂଗ୍ରହ ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ବୈଠକରେ ଯୋଜନା ଓ ସମନ୍ୱୟ ବିଭାଗର ଶାସନ ସଚିବ ତଥା ଅତିରିକ୍ତ ଉନ୍ନୟନ କମିଶନର ଶ୍ରୀ ଅବନୀକାନ୍ତ ରାୟ ଓ ସ୍ୱତନ୍ତ୍ର ଶାସନ ସଚିବ ଡଃ ଚକ୍ରଧର ମିଶ୍ରଙ୍କ ସମେତ ବିଭାଗୀୟ ପଦସ୍ଥ ଅଫିସରମାନେ ଯୋଗ ଦେଇଥିଲେ ।

## ଡାକ୍ତରଖାନାଗୁଡ଼ିକ ପାଇଁ ଅତ୍ୟାଧୁନିକ ଯନ୍ତ୍ରପାତି

୧୯୮୫ ସେପ୍ଟେମ୍ବର ୧୦ ତାରିଖରେ ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ ବ୍ରହ୍ମପୁର ପୌର ପରିଷଦ କାଉନ୍‌ସିଲର-ମାନଙ୍କ ସହିତ ସହରର ପରିଚ୍ଛନ୍ନତା ଓ ପରିବେଶ ସୁରକ୍ଷା ସଂପର୍କରେ ଆଲୋଚନା କରିଥିଲେ । ସେ କାଉନ୍‌ସିଲରମାନଙ୍କୁ ସୂଚନା ଦେଇ କହିଲେ ଯେ ପୌରସଂସ୍ଥା ଓ ସ୍ୱାସ୍ଥ୍ୟ ବିଭାଗର ମିଳିତ ଉଦ୍ୟମରେ ବ୍ରହ୍ମପୁର ସହରର ସ୍ୱାସ୍ଥ୍ୟସେବା କାର୍ଯ୍ୟକ୍ରମରେ ବ୍ୟାପକ ଉନ୍ନତି ଆଣିହେବ । ମ୍ୟାଲେରିଆ, କୁଷ୍ଠ, ଯକ୍ଷ୍ମା, ବସନ୍ତ, ଅନ୍ଧତ୍ୱ ଦୂରୀକରଣ ଏବଂ ପରିବାର କଲ୍ୟାଣ କାର୍ଯ୍ୟ-କ୍ରମକୁ ଯଥାଯଥଭାବରେ ମୁକାବିଲା କରିବା ପାଇଁ ସେ ପୌର ସଂସ୍ଥାର ସହଯୋଗ କାମନା କରିଥିଲେ ।

ସଂଧ୍ୟାରେ ମନ୍ତ୍ରୀ ମହୋଦୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡ଼ିକାଲ କଲେଜର ହାଉସ୍ ଅଫିସର୍ସ ଆସୋସିଏସନ୍‌ର ବାର୍ଷିକ ଉତ୍ସବରେ ପୌରୋହିତ୍ୟ କରି ୭ମ ଯୋଜନା କାଳରେ ମେଡ଼ିକାଲ କଲେଜଗୁଡ଼ିକୁ ଅତ୍ୟାଧୁନିକ ଯନ୍ତ୍ରପାତି ଯୋଗାଇ ଦିଆଯିବାର କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇଥିଲେ । ଏହା ବ୍ୟତୀତ ସଂପ୍ରତି ମେଡ଼ିକାଲ କଲେଜଗୁଡ଼ିକରେ ଦେଖାଦେଇଥିବା ବିଭିନ୍ନ ସମସ୍ୟା ସଂପର୍କରେ ସରକାର ସଚେତନ ଅଛନ୍ତି ଏବଂ ଗ୍ରାମାଞ୍ଚଳରେ ନିଯୁକ୍ତ ଡାକ୍ତରମାନଙ୍କୁ ଗ୍ରାମାଭିମୁଖୀ କରାଇବା ଉଦ୍ଦେଶ୍ୟରେ କେତେକ ପ୍ରୋତ୍ସାହନ ଦେବା ଲାଗି ଚିନ୍ତା କରୁଛନ୍ତି ବୋଲି ସେ ସୂଚନା ଦେଇଥିଲେ ।

୧୧ ତାରିଖରେ ସେ ଭଂଜନଗର ନିର୍ବାଚନ ମଣ୍ଡଳୀର ସାଂସପୁର ଓ ଗୋବରୀ ସ୍ୱାସ୍ଥ୍ୟକେନ୍ଦ୍ର ଏବଂ ଭଞ୍ଜନଗର ଉପଖଣ୍ଡ ଚିକିତ୍ସାଳୟ ପରିଦର୍ଶନ କରି ରୋଗୀମାନଙ୍କ ଭଲ ମନ୍ଦ ବିଷୟ ତଥା ଚିକିତ୍ସା କେନ୍ଦ୍ରର ସମସ୍ୟା ସଂପର୍କରେ ପଚାରି ବୁଝିଥିଲେ ।

ସେଦିନ ସେ ଭଞ୍ଜନଗର ଡାକବଙ୍ଗଳାଠାରେ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ସହିତ ଆଲୋଚନା କରି ଡାକ୍ତରଖାନା ଗୃହର ମରାମତି ନିର୍ମାଣ ଓ ଅନ୍ୟାନ୍ୟ ଉନ୍ନୟନମୂଳକ କାର୍ଯ୍ୟକ୍ରମ ସଂପର୍କରେ ସମୀକ୍ଷା କରିଥିଲେ ।

———

## କାଜୁଚାଷ କାର୍ଯ୍ୟକ୍ରମ

ଫୁଲବାଣୀ ଜିଲ୍ଲାର ଖଜୁରୀପଡ଼ା, ଫୁଲବାଣୀ ଓ ଫିରିଙ୍ଗିଆ ବ୍ଲକରେ ୧,୦୬୪ ଏକର ଜମିରେ କାଜୁଚାଷ କରାଯାଇ ଏ ପର୍ଯ୍ୟନ୍ତ ୫୯୦ଟି ଗରିବ ପରିବାରଙ୍କୁ ଥଇଥାନ କରାଯା(ଇ)ପାରିଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଅଳ୍ପ ପରିଶ୍ରମରେ କାଜୁଚାଷରୁ ବିଶେଷ ଆୟ ହେଉଥିବାରୁ ଏଥିପ୍ରତି ଲୋକମାନଙ୍କ ମଧ୍ୟରେ ବେଶ ଆଗ୍ରହ ଦେଖାଦେଇଛି । ବିଶେଷକରି କାଜୁ ଗଛ ୪ ବର୍ଷ ହେବା ପରଠାରୁ ପ୍ରତି ଗଛରୁ ଅନ୍ୟୂନ ୩ କେ. ଜି. ହିସାବରେ ଏକ ଏକରରୁ ୪୨୦ କେ : ଜି : କାଜୁ ଅମଳ ହୋଇଥାଏ, ଯାହାର ଦାମ୍ ଛଅ ହଜାର ଟଙ୍କାରୁ ଊର୍ଦ୍ଧ୍ୱ । ଏହାଛଡ଼ା ଏହି କାଜୁଚାଷୀମାନ କାଜୁବଗିଚାରେ ମୁଗ, ବିରି, ଡିଲ ଆଦି ଆନ୍ତଃଚାଷକରି ଅଧିକ ଆୟ କରିଥାନ୍ତି । ତେଣୁ ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଚାଷ ନହୋଇ ପତିତ ଅବସ୍ଥାରେ ଥିବା ଜମିର ଉନ୍ନତି ବିଧାନ କରିବା ସଙ୍ଗେ ସଙ୍ଗେ ସେସବୁ ଜମିରେ କାଜୁଚାଷ କରି ଗ୍ରାମାଞ୍ଚଳ ଗରିବ ଆଦିବାସୀ ଓ ହରିଜନ ପରିବାରଙ୍କ ମଧ୍ୟରେ ବଣ୍ଟନ କରାଯାଉଛି । ଗତ ଅଗଷ୍ଟ ୩୧ ତାରିଖରେ ଖଜୁରୀପଡ଼ା ବ୍ଲକର ଗୁଦାରୀ ପଞ୍ଚାୟତରେ ୩୮ଟି ଗରିବ ପରିବାରଙ୍କ ମଧ୍ୟରେ ଯଥାକ୍ରମେ କାଜୁ ଫସଲ ହୋଇଥିବା ।

ଗ୍ରାମାଂଚଳର ଗରିବ ପରିବାରଙ୍କ ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମ ଅନୁଯାୟୀ ସମଗ୍ର ଜିଲ୍ଲାରେ ଏ ପର୍ଯ୍ୟନ୍ତ ୨,୬୭୮ ଏକର ଜମିରେ ମୃତ୍ତିକା ସଂରକ୍ଷଣ ବିଭାଗ ଜରିଆରେ କାଜୁଚାଷ କରାଯାଇ ପ୍ରାୟ ୧,୩୪୦ ଟି ଗରିବ ପରିବାରଙ୍କୁ ଥଇଥାନ କରାଯାଇ ପାରିଛି ।

## 'ଡାନିଡା' ଜଳ ଯୋଗାଣ ପ୍ରକଳ୍ପ

ସେପ୍ଟେମ୍ବର ୫ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବାଲେଶ୍ୱର ଜିଲ୍ଲାର ଉପକୂଳବର୍ତ୍ତୀ ଶ୍ରଦ୍ଧାପୁରଠାରେ ଡେନମାର୍କ ସରକାରଙ୍କ ଆର୍ଥିକ ସହାୟତାରେ ... ସମେତ ପଞ୍ଚପଡ଼ା, ବରେହିପୁର ଓ ସଂପୁର ଗ୍ରାମ ପାଇଁ ଡାନିଡା ସହାୟତାରେ ସଂପୂର୍ଣ୍ଣ ହୋଇଥିବା ପାଇପ୍-ଜଳ ଯୋଗାଣ ପ୍ରକଳ୍ପକୁ ଜନସାଧାରଣଙ୍କ ବିପୁଳ ଉତ୍ସାହ-ଉଦ୍ଦୀପନା ମଧ୍ୟରେ ଉଦ୍‌ଘାଟନ କରିଥିଲେ । ରାଜ୍ୟର ଲୁଣି ଅଞ୍ଚଳ ଅନ୍ତର୍ଭୁକ୍ତ ତଥା ଉତ୍କଟ ଜଳକଷ୍ଟ ୨୦ଟି ବ୍ଲକ୍‌ରେ ୩ଟି ପର୍ଯ୍ୟାୟରେ ପାନୀୟ ଜଳର ବ୍ୟବସ୍ଥା କରିବା ଲାଗି ଡେନମାର୍କ ସରକାର ଗତବର୍ଷ ଯେଉଁ ବ୍ୟାପକ ଯୋଜନାକୁ ଅନୁମୋଦନ କରିଥିଲେ, ତନ୍ମଧ୍ୟରେ ଶ୍ରଦ୍ଧାପୁର ପାଇଁ ନିର୍ଦ୍ଧାରିତ ଏହି ପ୍ରକଳ୍ପ

ଅନ୍ତର୍ଭୁକ୍ତ । ଏଥିପାଇଁ ଗତ ମାସ ୧୬ ତାରିଖରେ ଭାରତ ସରକାର ଓ ଡେନ୍‌ମାର୍କ ସରକାରଙ୍କ ମଧ୍ୟରେ ଦ୍ୱିପାକ୍ଷିକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା ଏବଂ ପ୍ରଥମ ପର୍ଯ୍ୟାୟରେ ଜଳ ଯୋଗାଣ କରିବା ପାଇଁ ଖଇରବାଲି, ରାଜକନିକା ଓ ତେଲଙ୍ଗ ବ୍ଲକ ୩ଟିକୁ ଚିହ୍ନଟ କରାଯାଇଥିଲା ।

ଏହି ଉପଲକ୍ଷେ ଖଇରବାଲିଠାରେ ଆୟୋଜିତ ଏକ ବିରାଟ ଜନ ସମାବେଶରେ ମୁଖ୍ୟ ଅତିଥିରୂପେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ପ୍ରାୟ ୯ କୋଟି ଟଙ୍କା ବ୍ୟୟ ଅଟକଳରେ ଏହି ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏଥିପାଇଁ 'ଡାନିଡା' ୭ କୋଟି ୫୫ଲକ୍ଷ ଟଙ୍କା ଆର୍ଥିକ ସାହାଯ୍ୟ ଦେବେ ଏବଂ ଚୁକ୍ତି ଅନୁସାରେ ଏହାର ସମସ୍ତ କାର୍ଯ୍ୟ ୧୯୮୭ ମସିହା ମାର୍ଚ୍ଚ ମାସ ସୁଦ୍ଧା ସମ୍ପୂର୍ଣ୍ଣ କରାଯିବ । ୧୮ ଲକ୍ଷ ୯୬ ହଜାର ୮୦୦ ଟଙ୍କା ବ୍ୟୟରେ ପୂର୍ଣ୍ଣାଙ୍ଗ ହୋଇଥିବା ଖଇରବାଲି ଜଳ ଯୋଗାଣ ପ୍ରକଳ୍ପ ଦ୍ୱାରା ଦୀର୍ଘଦିନରୁ ଜଳକଷ୍ଟ ଭୋଗୁଥିବା ସ୍ଥାନୀୟ ଅଧିବାସୀମାନେ ଉପକୃତ ହୋଇପାରିବେ । ବର୍ତ୍ତମାନ ସେହିସବୁ ଅଞ୍ଚଳକୁ ଦୈନିକ ୧୦ ଲକ୍ଷ ୮ ହଜାର ଲିଟର ଓ ମୁଣ୍ଡପିଛା ୯୬ ଲିଟର ଜଳ ଯୋଗାଇ ଦିଆଯିବ ବୋଲି ସୂଚନା ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଏହି ଚୁକ୍ତି ଅନୁଯାୟୀ ଖଇରବାଲି ବ୍ଲକ୍‌ର ୨୬୩ଟି ଗ୍ରାମରେ ମଧ୍ୟ ସମୁଦାୟ ୪୪୮ଟି ନୂତନ ନଳକୂପ ବସାଯିବ । ଏହା ବ୍ୟତୀତ ବ୍ଲକ୍‌ରେ ଥିବା ୨୩୩ଟି ପୁରୁଣା ନଳକୂପରେ ହାତପମ୍ପ୍ ବଦଳା ଯାଇ ଉନ୍ନତ ହାତ ପମ୍ପସବୁ ବସାଯିବ । ଏହା ଫଳରେ ସେହିସବୁ ଗ୍ରାମର ଲକ୍ଷାଧିକ ଲୋକ ଉପକୃତ ହୋଇପାରିବେ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ ପୁଣି କହିଲେ ଯେ ଓଡ଼ିଶା ପରି ଏକ ଗ୍ରାମବହୁଳ ରାଜ୍ୟରେ ଦାରିଦ୍ର୍ୟ ଓ ବେକାରୀ ସମସ୍ୟା ଯେପରି ପୁଞ୍ଜିଭୂତ ହୋଇ ରହିଥିଲା, ତାହାର ବିଲୋପ ଦିଗରେ ଗତ ଷଷ୍ଠ ଯୋଜନା କାଳଠାରୁ ସରକାର ଯୋଜନାବଦ୍ଧ ଉଦ୍ୟମ କରିଆସୁଛନ୍ତି । ଉପକୂଳବର୍ତ୍ତୀ ଲୁଣି ଅଞ୍ଚଳରେ ପାନୀୟ ଜଳ ଯୋଗାଣ, ଜଳସେଚନ, ଜଳ ନିଷ୍କାସନ, ବୃକ୍ଷ ରୋପଣ ଓ ଲୁଣିବନ୍ଧ ଗୁଡ଼ିକର ଦୃଢ଼ୀକରଣ, ଏହିପରି ୫ଟି ମୁଖ୍ୟ ସମସ୍ୟା ରହିଛି । ଏହିସବୁ ଅଞ୍ଚଳରେ ଜଳସେଚନ ଲାଗି ଉଠା ଜଳସେଚନ ପଏଣ୍ଟ ପରିବର୍ତ୍ତେ 'ଡ୍ରିପ୍ ଜଳସେଚନ' ହିଁ ଉପାଦେୟ ବୋଲି ମତବ୍ୟକ୍ତକରି ମୁଖ୍ୟମନ୍ତ୍ରୀ କହିଲେ ଯେ ଲୁଣା ଜୁଆରକୁ ପ୍ରତିରୋଧ କରିବା ପାଇଁ ନଦୀମୁହାଣଗୁଡ଼ିକରେ ବନ୍ଧ ଓ କବାଟ ନିର୍ମାଣ କରିବା ଆବଶ୍ୟକ । ସମୁଦ୍ରକୂଳରେ ୫ ମାଇଲ ଓସାରର ଝାଉଁଗଛ ଇତ୍ୟାଦି ରୋପଣ କରିବା, ପ୍ରତ୍ୟେକ ବ୍ଲକରେ ଅର୍ଦ୍ଧ-ଶିକ୍ଷିତ ଯୁବକମାନଙ୍କୁ ଧନ୍ଦାମୂଳକ ଶିକ୍ଷା ଦେବା ଲାଗି ତାଲିମ କେନ୍ଦ୍ର ଖୋଲିବା ଏବଂ ଛୋଟ କଳକାରଖାନା ବସାଇବା ଦିଗରେ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ସ୍ଥାନୀୟ କଲେଜକୁ ଚଳିତବର୍ଷଠାରୁ ସାହାଯ୍ୟ ଦିଆଯିବ ଏବଂ କଲେଜ ରାସ୍ତାର ଉନ୍ନତି କରାଯିବା ସଙ୍ଗେ ସଙ୍ଗେ ସମଗ୍ର ରାଜ୍ୟରେ ଜଳପଥର ବିକାଶ କରାଯିବ ବୋଲି ସେ ପ୍ରକାଶ କରିଥିଲେ ।

ଉତ୍ସବରେ ପୌରୋହିତ୍ୟ କରି ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜନମେଜୟ... ଶ୍ରୀ ଜଗନ୍ନାଥ ଭଲାକା କହିଲେ ଯେ ବିଦ୍ୟୁତଶକ୍ତି ଅଭାବରେ ଖଇରବାଲି ଅଞ୍ଚଳରେ ଜଳ ଯୋଗାଣ ଅବ୍ୟାହତ ରହି... ଦେଢଲକ୍ଷ ଟଙ୍କା ବ୍ୟୟରେ ଏକ ଡିଜେଲ ଜେନେ... ବସାଯିବ । ଓଡ଼ିଶାର ଗ୍ରାମ୍ୟ ଜଳ ଯୋଗାଣ ଯୋ... ଅଗ୍ରଗତି ଉଲ୍ଲେଖନୀୟ ବୋଲି ଦର୍ଶାଇ ଶ୍ରୀ ଭଲାକା କହି... ଗତ ମଇ ମାସ ଶେଷ ସୁଦ୍ଧା ଉଭୟ ଚିହ୍ନିତ ଓ ଅଣ... ଗ୍ରାମଗୁଡ଼ିକରେ ସର୍ବମୋଟ ୬୪,୮୪୫ଟି ନଳକୂପ ବସାଯା... ତନ୍ମଧ୍ୟରେ ଖଇରବାଲି ବ୍ଲକରେ ବସାଯାଇଥିବା ୬୭୫ଟି ନ... ଅନ୍ତର୍ଭୁକ୍ତ ।

ପୂର୍ବରୁ ସ୍ୱାଗତ ଭାଷଣ ଦେଇ ବିଭାଗୀୟ ଶାସନ ... ଶ୍ରୀ ପ୍ରସନ୍ନ କୁମାର ମିଶ୍ର କହିଲେ ଯେ ରାଜ୍ୟର ୨୦ଟି ବ୍ଲ... ପର୍ଯ୍ୟାୟକ୍ରମେ ଏହି 'ଡାନିଡା' ଯୋଜନା କାର୍ଯ୍ୟକାରୀ ହେ... ଯାଉଥିବାରୁ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥାରୂପେ ଆଦୌ ଜଳ... ନଥିବା ଗ୍ରାମମାନଙ୍କରେ ଅନ୍ତତଃ ୧ଟି ଲେଖାଏଁ ନଳ... ବସାଇବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି । ଏଥିର... ଚଳିତ ବର୍ଷ ଅର୍ଥ ମଞ୍ଜୁର କରାଯାଇଛି ଏବଂ ଇତିମଧ୍ୟରେ ୭୪ଟି ନଳକୂପ ବସାଯାଇ ସାରିଲାଣି ।

ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ଶିକ୍ଷା ଓ ଯୁ... କଲ୍ୟାଣ ମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ଏବଂ ଡେନ୍‌ମାର୍କ ସରକାରଙ୍କ ପ୍ରତିନିଧି ଶ୍ରୀ ଷ୍ଟିଫେନ୍ ଭାମ୍ ପ୍ରମୁଖ ବ୍ୟକ୍ତି-ମାନେ ମଧ୍ୟ ଭାଷଣ ଦେଇଥିଲେ ।

## କେନ୍ଦୁଝର ଗ୍ରାମ୍ୟ ଉନ୍ନୟନ ସଂସ୍ଥା

ଗତ ୫ ବର୍ଷ ମଧ୍ୟରେ କେନ୍ଦୁଝର ଜିଲ୍ଲାରେ ଅର୍ଥ-ନୈତିକ ଥଇଥାନ କାର୍ଯ୍ୟକ୍ରମାନୁଯାୟୀ ୧୫,୧୪୧ଟି ପରିବାର ଉପକୃତ ହୋଇଛନ୍ତି ଏବଂ ଏଥିନିମନ୍ତେ ୧ କୋଟି ୪୨ ଲକ୍ଷ ୨୦ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି । ସଂପ୍ରତି ଜିଲ୍ଲାପାଳ ଶ୍ରୀ ଜୟନ୍ତ କୁମାର ଦେବଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ଏକ ସମୀକ୍ଷା ବୈଠକରୁ ଏହା ପ୍ରକାଶ ପାଇଛି ।

ସମୀକ୍ଷାରୁ ପ୍ରକାଶ ଯେ ଗତ ଆର୍ଥିକ ବର୍ଷ ମଧ୍ୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମାନୁଯାୟୀ ୭,୮୦୦ ପରିବାରର ବିଭିନ୍ନ ଧନ୍ଦା ମାଧ୍ୟମରେ ଅର୍ଥନୈତିକ ଉନ୍ନତି କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ସ୍ଥଳେ ୧୦,୦୧୫ ପରିବାରର ଅର୍ଥନୈତିକ ଉନ୍ନତି କରାଯାଇଛି । ତନ୍ମଧ୍ୟରେ ୧,୫୨୫ଟି ତଫସିଲଭୁକ୍ତ ଜାତି ପରିବାର ଓ ୪,୬୭୫ଟି ତଫସିଲଭୁକ୍ତ ଉପଜାତି ପରିବାର ଅନ୍ତର୍ଭୁକ୍ତ । ଏ ବାବଦରେ ୯୯ ଲକ୍ଷ ୩ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି । ସେହିପରି ଉକ୍ତ ବର୍ଷରେ ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମାନୁଯାୟୀ ଜିଲ୍ଲାର ୩,୮୭୦ଟି ପରିବାରର ଅର୍ଥନୈତିକ ଉନ୍ନତି କରାଯାଇଛି ।

ପ୍ରଧାନମନ୍ତ୍ରୀଙ୍କ ବହୁଳ କାର୍ଯ୍ୟକ୍ରମାନୁଯାୟୀ ୧୪,୭୬୭ଜଣ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ସାର ଓ ବିହନ ମିନି କିଟ୍ ଏବଂ ଜଳସେଚନର ସୁବିଧା ଯୋଗାଇ ଦେଇ ଜମିର ମାନ ଉନ୍ନତି ଓ ଉତ୍ପାଦନ ବୃଦ୍ଧି କରାଯାଉଛି । ଏ ବାବଦରେ ୪୮ ଲକ୍ଷ

୨୬ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି । ଗ୍ରାମ୍ୟ ଶ୍ରମିକ କର୍ମ ଯୋଗାଣ କାର୍ଯ୍ୟକ୍ରମରେ ସମୁଦାୟ ଖର୍ଚ୍ଚର ଶତକଡ଼ା ୫୦ଭାଗ ରାସ୍ତା ନିର୍ମାଣ, ଶତକଡ଼ା ୨୦ ଭାଗ ସାମାଜିକ ବନୀକରଣ ଓ ଅବଶିଷ୍ଟ ଅର୍ଥ ସ୍କୁଲଗୃହ ନିର୍ମାଣ ବାବଦରେ ଖର୍ଚ୍ଚ କରାଯାଇଛି ।

୧୯୮୨-୮୩ରୁ ଏପର୍ଯ୍ୟନ୍ତ ଜିଲ୍ଲାରେ ୧,୮୧୬ ଜଣ ଗୋଷ୍ଠି ଶ୍ରମିକଙ୍କୁ ଚିହ୍ନଟ କରାଯାଇ ସେମାନଙ୍କ ମଧ୍ୟରୁ ୧,୧୪୩ ଜଣଙ୍କୁ ଉତ୍ଥାନ କରାଯାଇଛି ଓ ସେ ବାବଦରେ ୩୯ ଲକ୍ଷ ୨୬ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି । ଗତ ଆର୍ଥିକ ବର୍ଷରେ ୧୭୫ଟି ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣ କରିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ୧୮୨ଟି ପ୍ଲାଣ୍ଟ ନିର୍ମାଣ କରାଯାଇଛି ଏବଂ ଚଳିତ ବର୍ଷରେ ୨୫୦ଟି ପ୍ଲାଣ୍ଟ ନିର୍ମାଣ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

୭ମ ଯୋଜନା କାଳ ମଧ୍ୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମାନୁଯାୟୀ ପ୍ରତ୍ୟେକ ବ୍ଲକ୍‌ରେ ନୂଆକରି ୨୦୦ଟି ପରିବାରଙ୍କୁ ଚିହ୍ନଟ କରାଯାଇ ସେମାନଙ୍କ ଅର୍ଥନୈତିକ ଉନ୍ନତି ନିମନ୍ତେ ସମସ୍ତ ପ୍ରକାର ବ୍ୟବସ୍ଥା କରିବାକୁ ବୈଠକରେ ସ୍ଥିର କରାଯାଇଛି ଏବଂ ଗତ ୫ବର୍ଷ ମଧ୍ୟରେ ଅର୍ଥନୈତିକ ଉନ୍ନତି କାର୍ଯ୍ୟକ୍ରମାନୁଯାୟୀ ଯେଉଁ ପରିବାରଗୁଡ଼ିକ ସାହାଯ୍ୟ ପାଇଛନ୍ତି, ସେଗୁଡ଼ିକୁ ସମୀକ୍ଷା କରାଯାଇ ଦରକାର ପଡ଼ିଲେ ସେମାନଙ୍କର ଅର୍ଥନୈତିକ ଉନ୍ନତି ନିମନ୍ତେ ଅଧିକ ସାହାଯ୍ୟ ଯୋଗାଇ ଦେବାର ମଧ୍ୟ ବୈଠକରେ ସିଦ୍ଧାନ୍ତ କରାଯାଇଛି ।

ଏହା ବ୍ୟତୀତ ଏହି ବୈଠକରେ ଜିଲ୍ଲାର ସାମାଜିକ ବନୀକରଣ, ସେଚକୂପ ଖନନ ଓ ବିଦ୍ୟୁତ୍‌କରଣ, ଉଠା ଜଳସେଚନ, ତପସିଲଭୁକ୍ତ ଜାତିମାନଙ୍କ ଅର୍ଥନୈତିକ ଉନ୍ନତି ନିମନ୍ତେ ଆର୍ଥିକ ସାହାଯ୍ୟ, ଜାତୀୟ କର୍ମ ଯୋଗାଣ ପ୍ରଭୃତି କାର୍ଯ୍ୟକ୍ରମଗୁଡ଼ିକର ଅଗ୍ରଗତି ସଂପର୍କରେ ସମୀକ୍ଷା କରାଯାଇଥିଲା ।

ଏହି ବୈଠକରେ ବିଧାୟକ ସର୍ବଶ୍ରୀ ଜୟଦେବ ଜେନା, ହୃଷିକେଶ ନାୟକ, ଛୋଟରାୟ ମାଝୀ, ପ୍ରାଣ ବଲ୍ଲଭ ନାୟକ ଓ ଧନୁର୍ଜୟ ଲଗୁରୀ ଏବଂ ଜିଲ୍ଲାସ୍ତରୀୟ ଅଫିସରମାନେ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ନେହେରୁ ଯୁବକେନ୍ଦ୍ର ରାଜ୍ୟ ସାଂଗଠନିକ ବୈଠକ

ନେହେରୁ ଯୁବକେନ୍ଦ୍ରଗୁଡ଼ିକୁ ରାଜ୍ୟର ଗ୍ରାମ୍ୟ ଅଣ-ଛାତ୍ର ଯୁବକମାନଙ୍କ କଲ୍ୟାଣ ନିମନ୍ତେ ଆହୁରି ଅଧିକ ସକ୍ରିୟ କରାଯାଉଛି ବୋଲି ଶିକ୍ଷା ଓ ଯୁବ କଲ୍ୟାଣ ମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ପ୍ରକାଶ କରିଛନ୍ତି ।

ସେପ୍ଟେମ୍ବର ୬ତାରିଖରେ ସଚିବାଳୟଠାରେ ଅନୁଷ୍ଠିତ ନେହେରୁ ଯୁବକେନ୍ଦ୍ର ରାଜ୍ୟ ସଂଗଠନିକ କମିଟି ବୈଠକରେ ଅଧ୍ୟକ୍ଷତା କରି ଶ୍ରୀ ଦାଶ ମହାପାତ୍ର ଏହି ମନ୍ତବ୍ୟ ଦେଇଥିଲେ । ରାଜ୍ୟରେ କେନ୍ଦ୍ର ଅନୁଦାନରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ବ୍ୟତୀତ ଅନ୍ୟ ୧୦ଟି ଜିଲ୍ଲାରେ ନେହେରୁ ଯୁବକେନ୍ଦ୍ର କାର୍ଯ୍ୟକ୍ରମ ଖୋଲା କରାଯାଇଛି । ଅବଶିଷ୍ଟ ୩ଟି ଜିଲ୍ଲାରେ ଏହା କାର୍ଯ୍ୟକାରୀ କରିବାକୁ ଭାରତ ସରକାରଙ୍କୁ ଅନୁରୋଧ କରାଯାଇଛି । ସର୍ବଶ୍ରେଷ୍ଠ ଜିଲ୍ଲା ସଂଯୋଜକମାନଙ୍କୁ ସେମାନଙ୍କ ଉଲ୍ଲେଖନୀୟ କାର୍ଯ୍ୟ ପାଇଁ ପୁରସ୍କାର ଦେବାକୁ ଏହି ବୈଠକରେ ସ୍ଥିର କରାଯାଇଛି । ଜିଲ୍ଲାରେ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ନିଯୁକ୍ତି, ନେହେରୁ ଯୁବକେନ୍ଦ୍ର ଦ୍ୱାରା ବିଭିନ୍ନ ଧନ୍ଦାରେ ତାଲିମପ୍ରାପ୍ତ ଯୁବକ ଓ ଯୁବତୀମାନଙ୍କୁ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଜରିଆରେ ଆତ୍ମ ନିଯୁକ୍ତି ସୁବିଧା ଦେବା ପାଇଁ ପଦକ୍ଷେପ ନେବାକୁ ମଧ୍ୟ ସ୍ଥିର କରାଯାଇଛି । ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ପକ୍ଷରୁ କରାଯାଉଥିବା 'ପ୍ରକୃତି ମିତ୍ର' ପ୍ରତିଯୋଗିତାରେ ଗ୍ରାମ୍ୟ ଯୁବକମାନେ ଯେପରି ଭାଗ ନେଇ ପାରିବେ, ସେଥିପାଇଁ କେନ୍ଦ୍ରମାନଙ୍କ ପକ୍ଷରୁ ଯୁବକ ସଂଘ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ପ୍ରବର୍ତ୍ତାଇବା ସଂପର୍କରେ ସ୍ଥିର ହୋଇଛି । ଗାଁଗହଳରେ 'ବାୟୋଗ୍ୟାସ' ସ୍ଥାପନ ଏବଂ ପରିବାର କଲ୍ୟାଣ କାର୍ଯ୍ୟକ୍ରମରେ କେନ୍ଦ୍ରମାନେ ଉଦ୍ୟମ କରିବାକୁ ଜିଲ୍ଲା ସଂଯୋଜକମାନଙ୍କୁ ପରାମର୍ଶ ଦିଆଯାଇଥିଲା । ପାତିଆଲାସ୍ଥିତ ଜାତୀୟ କ୍ରୀଡ଼ା ଅନୁଷ୍ଠାନ ପକ୍ଷରୁ ନେହେରୁ ଯୁବକେନ୍ଦ୍ରମାନଙ୍କୁ ପ୍ରତ୍ୟେକଙ୍କୁ ୨ଜଣ ଲେଖାଏଁ ବିଭିନ୍ନ ଜିଲ୍ଲାର ଆବଶ୍ୟକତା ଅନୁଯାୟୀ କ୍ରୀଡ଼ା ତାଲିମ ଶିକ୍ଷକ ଯୋଗାଇ ଦିଆଯାଏ । ଯେଉଁ ଜିଲ୍ଲାରେ ୨ ଜଣ କ୍ରୀଡ଼ା ତାଲିମ ଶିକ୍ଷକ ନାହାନ୍ତି, ତାହା ଶୀଘ୍ର ପୂରଣ ନିମନ୍ତେ ସଂପୃକ୍ତ ସଂସ୍ଥାକୁ ଅନୁରୋଧ କରିବାକୁ ବୈଠକରେ ସ୍ଥିର କରାଯାଇଛି ।

ଗତବର୍ଷ ନେହେରୁ ଯୁବକେନ୍ଦ୍ର ପକ୍ଷରୁ କାର୍ଯ୍ୟ କରାଯାଇଥିବା ବିଭିନ୍ନ କାର୍ଯ୍ୟକ୍ରମ, ଯଥା—ପୌଢ଼ଶିକ୍ଷା କେନ୍ଦ୍ରରେ ୨୪୦ ଜଣ ପ୍ରୌଢ଼ଙ୍କୁ ଶିକ୍ଷାଦାନ, ବିଭିନ୍ନ କେନ୍ଦ୍ର ପକ୍ଷରୁ ୩୩ଟି ଧନ୍ଦାମୂଳକ ତାଲିମ କେନ୍ଦ୍ରଦ୍ୱାରା ୯୫୨ ଜଣଙ୍କୁ କାଠକାମ, ସାଇକେଲ ମରାମତି, ଦରଜି ଓ ଏମ୍ବ୍ରୋଡରୀ ଇତ୍ୟାଦି କାର୍ଯ୍ୟରେ ତାଲିମ ଦିଆଯାଇଛି । କେନ୍ଦ୍ର ପକ୍ଷରୁ ୧୦୩ଟି ସାଂସ୍କୃତିକ କାର୍ଯ୍ୟକ୍ରମ, କ୍ରୀଡ଼ା ତାଲିମ କେନ୍ଦ୍ର ପକ୍ଷରୁ ୪୭ଟି ତାଲିମ, ଶିବିର ପ୍ରତିଷ୍ଠା କରାଯାଇଥିବା କଥା ବୈଠକରେ ପ୍ରକାଶ ପାଇଥିଲା ।

ଏହି ବୈଠକରେ ଶିକ୍ଷା ଓ ଯୁବ କଲ୍ୟାଣ ବିଭାଗର ଯୁଗ୍ମ ଶାସନ ସଚିବ ଶ୍ରୀ ସୁଶୀଲ କୁମାର ଦାସ; ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗର ବରିଷ୍ଠ ବୈଜ୍ଞାନିକ ଶ୍ରୀ ରାଧାମୋହନଙ୍କ ସମେତ ବିଭିନ୍ନ ଜିଲ୍ଲାର ନେହେରୁ ଯୁବକେନ୍ଦ୍ର ଜିଲ୍ଲା ସଂଯୋଜକମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଅଧିକ ମାଛଧରା କୌଶଳ

ସଂପ୍ରତି ପୁରୀ ପେଣ୍ଟକଟାଠାରେ ଜନ୍‌ସନ୍ ଏଣ୍ଡ ଜନ୍‌ସନ୍ କଂପାନୀ ତରଫରୁ ସମୁଦ୍ରରୁ ମାଛଧରା କୌଶଳ ପ୍ରଦର୍ଶନ କରାଯାଇଛି । ଉକ୍ତ କଂପାନୀ ଦ୍ୱାରା ନିର୍ମିତ କାଟାମାରାନ୍ ଡଙ୍ଗାରେ ୧୦ ଅଶ୍ୱଶକ୍ତି କ୍ଷମତା ବିଶିଷ୍ଟ କିରୋସିନ୍ ଚାଳିତ ଇଂଜିନ୍ ସଂଯୋଗ କରି ପ୍ରଥମ ଥର ୫୦୦ ଟଙ୍କା ମୂଲ୍ୟର ୨୦୦ କିଲୋଗ୍ରାମ୍ ମାଛ ଧରାଯାଇ ପାରିଛି । ପ୍ରଦର୍ଶନ ବେଳେ

ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ଲିଭିନସ୍ କିଣ୍ଡୋଙ୍କ ସମେତ ସ୍ଥାନୀୟ ମାଛ ଧରାଳୀ, ନୋଳିଆ, ଆଗ୍ରହୀ ମତ୍ସ୍ୟଜୀବୀ ଓ କଂପାନୀର ଉଚ୍ଚପଦସ୍ଥ କର୍ମକର୍ତ୍ତାମାନେ ଉପସ୍ଥିତ ଥିଲେ । ଦ୍ୱିତୀୟ ଥର ପରୀକ୍ଷାମୂଳକଭାବେ ମାତ୍ର ୬ ଘଣ୍ଟାରେ ୧୫୦ କି. ଗ୍ରାମ୍ ମାଛ ଧରାଯାଇଛି । ମାଛ ଧରାଳୀମାନେ ସାଧାରଣ ଇଂଜିନ୍‌ବିହୀନ ଡଙ୍ଗାରେ ୧୦ ଘଣ୍ଟା ପରିଶ୍ରମ କରି ୫୦ କି. ଗ୍ରା. ମାଛ ଧରୁଥିବା ସ୍ଥଳେ ଜନ୍‌ସନ୍ କଂପାନୀର ବାହ୍ୟ ଇଂଜିନ୍‌ଯୁକ୍ତ କାଟାମାରାନ୍ ନୌକାରେ ଅଳ୍ପ ପରିଶ୍ରମରେ ଅଧିକ ମାଛ ଧରାହୋଇ ପାରୁଥିବାର କୌଶଳ ଦେଖି ନୋଳିଆମାନେ ୧୦୦ଟି ଏହି ପ୍ରକାର ଡଙ୍ଗା ଋଣ ସୂତ୍ରରେ ସେମାନଙ୍କୁ ତୁରନ୍ତ ଯୋଗାଇ ଦେବାକୁ ଅନୁରୋଧ କରିଛନ୍ତି । ସେମାନେ ମଧ୍ୟ ଉକ୍ତ ଇଂଜିନ୍ ଚାଳିତ କାଟାମାରାନ୍ ଡଙ୍ଗା ଚାଳନା କରି ପ୍ରତ୍ୟକ୍ଷ ଜ୍ଞାନ କୌଶଳ ଅର୍ଜନ କରିଛନ୍ତି । ଏହି ଉନ୍ନତ ଧରଣର ଡଙ୍ଗା ଦ୍ୱାରା ଭବିଷ୍ୟତରେ ବେଶୀ ମାଛ ଧରି ସେମାନଙ୍କ ଜୀବିକାରେ ସାଫଲ୍ୟ ଅର୍ଜନ କରିପାରିବେ ବୋଲି ଆଶା କରାଯାଉଛି ।

ଆହୁରି ଜଣାପଡ଼ିଛି ଯେ ଉକ୍ତ ଇଂଜିନ୍‌ଯୁକ୍ତ କାଟାମାରାନ୍ ଡଙ୍ଗା ଘଣ୍ଟାରେ ୩୫ ନଟିମାଇଲ ବେଗରେ ଯାଇପାରେ । ପ୍ରଦର୍ଶନ ସମୟରେ ୨୫ ଟଙ୍କା ମୂଲ୍ୟର ୧୦ ଲିଟର କିରୋସିନି ଇନ୍ଧନ ବାବଦକୁ ଖର୍ଚ୍ଚ ହୋଇଥିଲା । ଏଣୁ, ସ୍ୱଳ୍ପ ବ୍ୟୟତା ସଙ୍ଗେ ସଙ୍ଗେ ଅଧିକ ମାଛ-ଧରା ଯୋଗୁଁ କାଟାମାରାନ୍ ଡଙ୍ଗା ପ୍ରତି ଉପସ୍ଥିତ ମତ୍ସ୍ୟଜୀବୀଙ୍କ ଆଗ୍ରହ ପ୍ରକାଶ ପାଇଛି ।

ଏହି ଯୋଜନା ଅନୁଯାୟୀ ଯେଉଁ ଗ୍ରାମର ଲୋକମା... ପାଇଖାନା କରିବେ, ସେମାନେ ନିଜ ପକ୍ଷରୁ ଗାତ ଓ ... କରିବେ । ଅନ୍ୟାନ୍ୟ ଖର୍ଚ୍ଚ ବାବଦକୁ ରାଜ୍ୟ ... ପ୍ରତ୍ୟେକଟି ପାଇଁ ୪୩୦ ଟଙ୍କା ଖର୍ଚ୍ଚ କରିବେ । ଯୋଜ... ଅନ୍ତର୍ଭୁକ୍ତ ପ୍ରତ୍ୟେକ ବ୍ଲକରେ ୧୦ଟି ଗ୍ରାମରେ ଏହା କାର୍ଯ୍ୟକା... ହେବ । ପ୍ରତ୍ୟେକ ଗ୍ରାମରେ ୫୦ଟି ପାଇଖାନା ବସାଇବ... ପାଇଁ ସ୍ଥିର କରାଯାଇଛି । ଏହା ବ୍ୟତୀତ ଉକ୍ତ ୧୧ଟି ବ୍ଲକ... ଥିବା ଅଂଗନୱାଡ଼ି କେନ୍ଦ୍ରଗୁଡ଼ିକରେ ଏହି କାର୍ଯ୍ୟକ୍ରମ ହାତ... ନିଆଯିବ । ପ୍ରତ୍ୟେକ ବ୍ଲକର ୧୦ଟି ଅଙ୍ଗନୱାଡ଼ି କେନ୍ଦ୍ରରେ ୭୫ ଜଣ ବ୍ୟବହାର ଉପଯୋଗୀ ଗୋଟିଏ ଲେଖାଏଁ ଉନ୍ନତ... ଧରଣର ପାଇଖାନା ବସାଯିବ । ଏହାଛଡ଼ା ପ୍ରତ୍ୟେକ... ବ୍ଲକରେ ୨୦ଟି ପ୍ରାଥମିକ ଓ ବାଳିକା ସ୍କୁଲରେ ୨୫୦ ଜଣ... ପିଲା ବ୍ୟବହାର ଉପଯୋଗୀ ପାଇଖାନା କରାଯିବ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ଏହି ଯୋଜନାରେ ସଂଶ୍ଳିଷ୍ଟ... କରାଯାଇ ସେମାନଙ୍କ ଜରିଆରେ କିମ୍ବା ବ୍ଲକ୍ ଜରିଆରେ... ପାଇଖାନା କରାଯିବ ।

ଏହିସବୁ କାର୍ଯ୍ୟ ତଦାରଖ କରିବାପାଇଁ ରାଜ୍ୟ ସ୍ତରରେ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏବଂ ସଂପୃକ୍ତ ଜିଲ୍ଲାରେ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ କମିଟିମାନ ଗଠନ କରିବା ପାଇଁ ସ୍ଥିର କରାଯାଇଛି ।

## ଗ୍ରାମ୍ୟ ପରିମଳ ଯୋଜନା

ସରକାର ରାଜ୍ୟରେ ଶିଶୁ ବିକାଶ ଯୋଜନା କାର୍ଯ୍ୟକାରୀ ହେଉଥିବା ବ୍ଲକ୍‌ଗୁଡ଼ିକ ମଧ୍ୟରୁ ୧୧ଟି ବ୍ଲକରେ ଚଳିତ ବର୍ଷରୁ ଏକ ନୂତନ ଗ୍ରାମ୍ୟ ପରିମଳ ଯୋଜନା କାର୍ଯ୍ୟକାରୀ କରିବେ । ସେହି ବ୍ଲକ୍‌ଗୁଡ଼ିକ ହେଲା—କଟକ ଜିଲ୍ଲାର ସାଲେପୁର ଓ ଆଠଗଡ଼, ପୁରୀ ଜିଲ୍ଲାର ବ୍ରହ୍ମଗିରି ଓ ଦଶପଲ୍ଲା, ସମ୍ବଲପୁର ଜିଲ୍ଲାର ପଦ୍ମପୁର ଓ ପାଇକମାଲ, ବାଲେଶ୍ୱର ଜିଲ୍ଲାର ନୀଳଗିରି, ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ଓ ଦିଗପହଣ୍ଡି ଏବଂ ଢେଙ୍କାନାଳ ଜିଲ୍ଲାର ଆଠମଲ୍ଲିକ ଓ ପାଲଲହଡ଼ା ଯୋଜନା ବାବଦରେ ପ୍ରାୟ ୪୫ ଲକ୍ଷ ଟଙ୍କା ବ୍ୟୟ କରାଯିବାର ବ୍ୟବସ୍ଥା ଅଛି । ରାଜ୍ୟ ସରକାର ଏ ସଂପର୍କରେ 'ୟୁନିସେଫ୍‌ଙ୍କ' ସଙ୍ଗେ କଥାବାର୍ତ୍ତା କରିଛନ୍ତି । 'ୟୁନସେଫ୍' ସଂସ୍ଥା ମୋଟ ଖର୍ଚ୍ଚର ୬୦ ଭାଗ ଅର୍ଥ ଯୋଗାଇ ଦେବାକୁ ରାଜି ହୋଇଛନ୍ତି । ଅବଶିଷ୍ଟ ୪୦ ଭାଗ ଟଙ୍କା ରାଜ୍ୟ ସରକାର ବହନ କରିବେ ।

ଗାଁ ଗହଳରେ ବସବାସ କରୁଥିବା ଲୋକମାନଙ୍କ ପାଇଁ ପାଇଖାନା ସୁବିଧା ନଥିବାରୁ ସେମାନେ ଏଣେତେଣେ ମଳତ୍ୟାଗ କରିଥାନ୍ତି । ଏହା ଫଳରେ ଜଳ ଦୂଷିତ ହୋଇଥାଏ ଓ ଜଳର ଜୀବାଣୁ ଦ୍ୱାରା ଜନସାଧାରଣ, ବିଶେଷକରି ଶିଶୁମାନେ ରୋଗାକ୍ରାନ୍ତ ହୋଇ ମୃତ୍ୟୁ ମୁଖରେ ପଡ଼ନ୍ତି । ଏହାର ନିରାକରଣ ପାଇଁ ଏପରି ଏକ ଯୋଜନା ପ୍ରସ୍ତୁତ କରାଯାଇ ଗାଁ ଗହଳରେ ଉନ୍ନତ ଧରଣର ପାଇଖାନା ବସାଯିବ ।

## ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା

ରାଜ୍ୟରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ୨୧ଟି ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର କାର୍ଯ୍ୟକ୍ରମଗୁଡ଼ିକୁ ସକ୍ରିୟ ଓ ସଫଳୀକୃତ କରିବା ପାଇଁ ଉକ୍ତ ସଂସ୍ଥାର ନିର୍ଦ୍ଦେଶକମାନଙ୍କୁ ଅତିରିକ୍ତ ଜିଲ୍ଲାପାଳ (ଉନ୍ନୟନ)ଙ୍କ କ୍ଷମତା ପ୍ରଦାନ କରାଯାଇଛି । ସେମାନେ ଯଥାଯଥଭାବେ ବ୍ଲକ୍‌ଗୁଡ଼ିକରେ କାର୍ଯ୍ୟକାରୀ ହେଉଥିବା ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର କାର୍ଯ୍ୟକ୍ରମ ତଦାରଖ କରିବେ ଏବଂ ବ. ଡ଼ି. ଓ ମାନଙ୍କ କାର୍ଯ୍ୟର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଗୁପ୍ତ ଚରିତ୍ର ଚିତ୍ରଣ ମଧ୍ୟ କରିପାରିବେ । ଆଦିବାସୀମାନଙ୍କୁ ଶୋଷଣରୁ ରକ୍ଷା ଓ ଅଞ୍ଚଳର ଉନ୍ନୟନ ପାଇଁ ଆବଶ୍ୟକୀୟ କ୍ଷମତା ପ୍ରଦାନ କରାଯାଇଛି । ଯେଉଁଠାରେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଓ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଏକତ୍ର କାର୍ଯ୍ୟ କରୁଛନ୍ତି, ସେଠାରେ ଉଭୟ ସଂସ୍ଥା ମଧ୍ୟରେ ସମନ୍ୱୟ ରକ୍ଷା କରିବା ପାଇଁ ନିର୍ଦ୍ଦେଶକମାନେ ଦୃଷ୍ଟି ଦେବେ ।

ରାଜ୍ୟର ଯେଉଁ ସବ୍‌ଡ଼ିଭିଜନମାନଙ୍କରେ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଅବସ୍ଥାପିତ, ଉକ୍ତ ସଂସ୍ଥାର ନିର୍ଦ୍ଦେଶକ ସେହି ସବ୍‌ଡ଼ିଭିଜନ ପାଇଁ ଅତିରିକ୍ତ ଜିଲ୍ଲାପାଳ (ଉନ୍ନୟନଭାବେ) ଘୋଷିତ ହୋଇ ସରକାରଙ୍କ ନୂତନ ନିଷ୍ପତ୍ତି ଅନୁଯାୟୀ କାର୍ଯ୍ୟ କରିବେ ।

## ଆଦିବାସୀ ଯୁବକ ମାନଙ୍କୁ ତାଲିମ୍

ଆଦିବାସୀ ଓ ହରିଜନ ଗବେଷଣା ତଥା ତାଲିମ ଅନୁଷ୍ଠାନଠାରେ ରାଜ୍ୟର ୨୧ଟି ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାରୁ ୨୫ ଜଣ ଆଦିବାସୀ ଯୁବକଙ୍କୁ ଅଗଷ୍ଟ ମାସ ୨୯ ତାରିଖଠାରୁ ସେପ୍ଟେମ୍ବର ମାସ ୨ ତାରିଖ ପର୍ଯ୍ୟନ୍ତ ବିଭିନ୍ନ ବିଷୟରେତାଲିମ ପ୍ରଦାନ କରାଯାଇଥିଲା । ଆନ୍ତର୍ଜାତିକ ଯୁବବର୍ଷ ପାଳନ ଦୃଷ୍ଟିରୁ ଏହି ତାଲିମ ତାତ୍ପର୍ଯ୍ୟପୂର୍ଣ୍ଣ । ଆଦିବାସୀ ଯୁବକମାନେ ସେମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ଯଥାଯଥଭାବେ ପାଳନ କରି ସୁନାଗରିକଭାବେ ନିଜକୁ ଗଠନ କରିବା, ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକରେ ସକ୍ରିୟଭାବେ ଯୋଗଦାନ, ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଲୋକହିତକର ଯୋଜନା ସଂପର୍କରେ ସେମାନଙ୍କର ମତାମତ ଓ ଆବଶ୍ୟକସ୍ଥଳେ ଦୋଷତ୍ରୁଟିର ସଂଶୋଧନ ପାଇଁ ପଦକ୍ଷେପ ପ୍ରଭୃତି ବିଷୟରେ ତାଲିମ ପ୍ରଦାନ କରାଯାଇଥିଲା ।

ବିଭାଗୀୟ ମନ୍ତ୍ରୀ ଶ୍ରୀ ଭଜମନ ବେହେରା ଏବଂ ଶାସନ ସଚିବ ଡଃ ସୀତାକାନ୍ତ ମହାପାତ୍ର ପ୍ରମୁଖ କର୍ମକର୍ତ୍ତା ଉକ୍ତ ତାଲିମପ୍ରାପ୍ତ ଯୁବକମାନଙ୍କୁ ଆନ୍ତର୍ଜାତିକ ଯୁବବର୍ଷର ତାତ୍ପର୍ଯ୍ୟ ଏବଂ ଉପଯୁକ୍ତ ନାଗରିକଭାବେ ନିଜକୁ ଗଠନ କରି ସେମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ପାଳନ କରିବା ଦିଗରେ ଉଦ୍‌ବୋଧନ ଦେଇଥିଲେ ।

## ଚକନାଳୀ କାର୍ଯ୍ୟ ଶେଷ ହେଲା

ଚକବନ୍ଦୀ ଯୋଜନାରେ ଚକ କରାଯାଇଥିବା ଜମିଗୁଡ଼ିକରେ ଜଳସେଚନର ସୁବିଧା ପାଇଁ ଜଳସେଚନ କ୍ଷେତ୍ର ଉନ୍ନୟନ ନିଗମ ଦ୍ୱାରା ଚକନାଳୀର ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ସୁଦ୍ଧା ଏହି ସଂସ୍ଥା ଦ୍ୱାରା ମୋଟ୍ ୧,୩୪୫ଟି ମୌଜାର ୯୩,୪୬୭ ହେକ୍ଟର ଜମିରେ ଚକନାଳୀ ସଂପୂର୍ଣ୍ଣ କରାଯାଇଛି ତନ୍ମଧ୍ୟରୁ କଟକ ଜିଲ୍ଲାର ୯୫ଟି ମୌଜାର ୩୧,୧୩୯ ହେକ୍ଟର, ପୁରୀ ଜିଲ୍ଲାର ୩୦୦ଟି ମୌଜାର ୨୬,୪୩୨ ହେକ୍ଟର, ବାଲେଶ୍ୱର ଜିଲ୍ଲାର ୨୬୧ଟି ମୌଜାର ୧୫,୫୪୧ ହେକ୍ଟର, ସମ୍ବଲପୁର ଜିଲ୍ଲାର ୧୧୧ଟି ମୌଜାର ୧୧,୭୨୩ ହେକ୍ଟର ଏବଂ ବଲାଙ୍ଗୀର ଜିଲ୍ଲାର ୭୮ଟି ମୌଜାର ୮,୬୩୨ ହେକ୍ଟର ଚକବନ୍ଦୀ କରାଯାଇଥିବା କୃଷିଜମି ଅନ୍ତର୍ଭୁକ୍ତ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଜଳସେଚନ ବିଭାଗ ପ୍ରାୟ ୪୦–୫୦ ହେକ୍ଟର ଜମି ପାଇଁ ଗୋଟିଏ ଗୋଟିଏ ଫୁକାରର ବ୍ୟବସ୍ଥା କରିଛନ୍ତି । ଏହି ଫକାରରୁ ପାଣି କିଆରୀକୁ କିଆରୀ ମାଡ଼ି ଜଳସେଚନ କରିଥାଏ । ଏହାଦ୍ୱାରା ଆବଶ୍ୟକତାଠାରୁ ଅଧିକ ପାଣି ମାଡୁଥିବାରୁ ଆଶାନୁରୂପ ଫସଲ ଉତ୍ପାଦନ ହୁଏ ନାହିଁ । କିନ୍ତୁ ଚକନାଳୀର ପ୍ରବର୍ତ୍ତନ ଦ୍ୱାରା ପ୍ରତ୍ୟେକ ଚକକୁ ସ୍ୱତନ୍ତ୍ରଭାବରେ ପାଣି ଯୋଗାଇ ଦିଆଯାଏ ।

## ଗୃହ ନିର୍ମାଣ ଯୋଜନାର ଅଗ୍ରଗତି

ଗତ ସେପ୍ଟେମ୍ବର ୧୭ ତାରିଖରେ ଗୃହ ନିର୍ମାଣ ରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଦମ୍ବରୁଧର ଉଲକା ପୁରୀଠାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ଆଲୋଚନା ବୈଠକରେ ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଗୃହ ନିର୍ମାଣ ଯୋଜନାର ଅଗ୍ରଗତି ସଂପର୍କରେ ସମୀକ୍ଷା କରିଛନ୍ତି ।

ସମୀକ୍ଷାରୁ ପ୍ରକାଶ ଯେ, ସମନ୍ୱିତ ଗୃହ ନିର୍ମାଣ ଯୋଜନା ଅନୁଯାୟୀ ଜିଲ୍ଲାର ୨୯ଟି ବ୍ଲକର ଗ୍ରାମାଞ୍ଚଳରେ ସମୁଦାୟ ୨,୩୫୦ଟି ଗୃହ ନିର୍ମିତ ହୋଇଛି ଏବଂ ୬୯୩ଟି ଗୃହ ନିର୍ମାଣାଧୀନ ଅଛି । ଫଳରେ ଆଦିବାସୀ-ହରିଜନଙ୍କ ସମେତ ଆର୍ଥିକ ଦୁର୍ବଳ ଶ୍ରେଣୀର ୨,୩୫୦ଟି ବାସହୀନ ପରିବାର ଉପକୃତ ହୋଇଛନ୍ତି । ଏ ବାବଦରେ ସମୁଦାୟ ୨୫ ଲକ୍ଷ ୧୮ ହଜାର ୩୧୮ ଟଙ୍କା ବିନିଯୋଗ କରାଯାଇଛି । ନିର୍ମାଣାଧୀନ ଥିବା ସେହିସବୁ ଗୃହର କାର୍ଯ୍ୟ ଯଥାଶୀଘ୍ର ସଂପୂର୍ଣ୍ଣ କରିବାଲାଗି ଶ୍ରୀ ଉଲକା ଜିଲ୍ଲାପାଳଙ୍କୁ ପରାମର୍ଶ ଦେଇଛନ୍ତି ।

ଏହି ବୈଠକରେ ପୁରୀ–କୋଣାର୍କ ଆଞ୍ଚଳିକ ଉନ୍ନୟନ ସଂସ୍ଥାର ଉଦ୍ୟମରେ 'ବାଲୁଖଣ୍ଡ'ଠାରେ କାର୍ଯ୍ୟକାରୀ ହେବାକୁ ଯାଉଥିବା ସିଦ୍ଧ ମହାବୀର ଗୃହ ନିର୍ମାଣ ଯୋଜନା ସଂପର୍କରେ ଆଲୋଚନା କରାଯାଇଥିଲା । ଏହି ଯୋଜନା ଅନୁଯାୟୀ ପ୍ରାୟ ୧ କୋଟି ୫୬ ହଜାର ଟଙ୍କା ବ୍ୟୟ ଅଟକଳରେ ସମୁଦାୟ ୫୬୩ଟି ବିଭିନ୍ନ କିସମର ଗୃହ ନିର୍ମାଣ କରିବା କାର୍ଯ୍ୟକ୍ରମ ରହିଛି । ସେଥି ମଧ୍ୟରେ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କ ପାଇଁ ୨୬୨ଟି ଗୃହ ଓ ନିମ୍ନ ଆୟକାରୀ ବ୍ୟକ୍ତିଙ୍କ ପାଇଁ ୨୨୩ଟି ଗୃହ ଉଦ୍ଦିଷ୍ଟ । ସେହି ଅଟକଳ ମଧ୍ୟରେ 'ହୁଡ୍‌କୋ' ସଂସ୍ଥାଠାରୁ ପ୍ରାୟ ୭୯ ଲକ୍ଷ ଟଙ୍କା ଋଣ ସୂତ୍ରରେ ସଂଗ୍ରହ କରାଯିବ ।

ଏହା ବ୍ୟତୀତ ସମନ୍ୱିତ ସହରାଞ୍ଚଳ ଉନ୍ନୟନ ଯୋଜନା ଅନୁଯାୟୀ ୯ ଲକ୍ଷ ୧୪ ହଜାର ଟଙ୍କା ବ୍ୟୟ ଅଟକଳରେ ବାଲୁଖଣ୍ଡ ନିକଟରେ ୧୦୧ଟି ଉନ୍ନତ ଘରଡ଼ିହ ପ୍ରସ୍ତୁତ କରାଯାଇଛି ; ଏଗୁଡ଼ିକୁ ବାସଗୃହ ନିର୍ମାଣ ପାଇଁ ବିଭିନ୍ନ ଆୟକାରୀ ଗୋଷ୍ଠୀଙ୍କୁ ବିକ୍ରୟ ସୂତ୍ରରେ ଯୋଗାଇ ଦିଆଯିବ । ସେହିପରି 'ବଳିଆପଣ୍ଡା'ଠାରେ ରାଜ୍ୟ ଗୃହ ନିର୍ମାଣ ସଂସ୍ଥା ଦ୍ୱାରା ବିଭିନ୍ନ ଆୟକାରୀ ଗୋଷ୍ଠୀର ଲୋକଙ୍କ ପାଇଁ ବାସଗୃହ ନିର୍ମାଣର କାର୍ଯ୍ୟକ୍ରମ ରହିଅଛି ।

କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟକାରୀ ହେଉଥିବା ସହରାଞ୍ଚଳ ଉନ୍ନୟନ ଯୋଜନାନୁଯାୟୀ ପୁରୀ ସହର ମଧ୍ୟରେ ୪ଟି ପ୍ରଧାନ ରାସ୍ତାର ଉନ୍ନତି ତଥା ସଂପ୍ରସାରଣ କରାଯାଇଛି ଏବଂ ଏ ବାବଦରେ ଗତ ଅଗଷ୍ଟ ମାସଶେଷ ସୁଦ୍ଧା ସମୁଦାୟ ୨୧ଲକ୍ଷ ୨୨ ହଜାର ଟଙ୍କା ବ୍ୟୟ କରାଯାଇଛି । ସେହିପରି ବସ୍‌ଷ୍ଟାଣ୍ଡ ଓ ଦୋକାନଘର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ଓ ଏ ବାବଦରେ ୧୮ଲକ୍ଷ ୩୬ ହଜାର ଟଙ୍କା ବ୍ୟୟ ହୋଇଛି । ଏହି କାର୍ଯ୍ୟ ଯଥା ଶୀଘ୍ର ଶେଷ କରିବା ନିମନ୍ତେ ମନ୍ତ୍ରୀ ମହୋଦୟ ପରାମର୍ଶ ଦେଇଥିଲେ ।

ଏହି ଆଲୋଚନା ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଜିଲ୍ଲାପାଳ, ଟାଉନ ପ୍ଲାନିଂର ନିର୍ଦ୍ଦେଶକ, ପୌର ସଂସ୍ଥାର ନିର୍ବାହୀ

ଅଧିକାରୀ ଏହି ଗୃହ ନର୍ମାଣ ନିର୍ଦ୍ଦେଶକ ପ୍ରମୁଖ ପଦସ୍ଥ ଅଫିସରମାନେ ଯୋଗ ଦେଇଥିଲେ ।

ବୈଠକପରେ ଶ୍ରୀ ଉଲକା ସମୁଦ୍ର ଉପକୂଳରେ ସ୍ୱର୍ଗଦ୍ୱାରଠାରୁ ଦାଣ୍ଡୀ ମୁହାଣ ପର୍ଯ୍ୟନ୍ତ ୩୨ ଲକ୍ଷ ୩୫ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେଉଥିବା ଭୂତଳ ନର୍ଦ୍ଦମା କାର୍ଯ୍ୟ ବୁଲି ଦେଖିଥିଲେ । ବଡ଼ଦାଣ୍ଡର ଉଭୟ ପାର୍ଶ୍ୱରେ ସିଂହଦ୍ୱାରଠାରୁ ଶ୍ରୀ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ନର୍ଦ୍ଦମା କାର୍ଯ୍ୟ ୩୫ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ କାର୍ଯ୍ୟକାରୀ କରିବା ପାଇଁ ପ୍ରସ୍ତାବ ରହିଛି । ଏହା ବ୍ୟତୀତ ଶ୍ରୀ ଉଲକା ଜିଲ୍ଲାପାଳଙ୍କ ସହିତ ଗୃହ ନର୍ମାଣ ହେବାକୁ ଯାଉଥିବା 'ବଳିଆ ପଣ୍ଡା' ଓ ବାଲୁଖଣ୍ଡ ଅଞ୍ଚଳ ଏବଂ ସମନ୍ୱିତ ସହରାଞ୍ଚଳ ଉନ୍ନୟନ ଯୋଜନା ଆନୁକୂଲ୍ୟରେ ନିର୍ମାଣ ହେଉଥିବା ବସ୍ ଷ୍ଟାଣ୍ଡ ଓ ରାସ୍ତା ପରିଦର୍ଶନ କରିଥିଲେ ।

## ସମନ୍ୱିତ ଗ୍ରାମାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ

ସମନ୍ୱିତ ଗ୍ରାମାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୫-୮୬ ବର୍ଷର ଜୁଲାଇ ଶେଷ ସୁଦ୍ଧା ଢେଙ୍କାନାଳ ଜିଲ୍ଲାରେ ୧୩୨ଟି ତଫସିଲଭୁକ୍ତ ଜାତି ଓ ୩୬ଟି ତଫସିଲଭୁକ୍ତ ସଂପ୍ରଦାୟର ପରିବାରଙ୍କୁ ମୋଟ୍ ୭୨୩ଟି ପରିବାର ଉପକୃତ ହୋଇଛନ୍ତି । ଏ ମଧ୍ୟରେ ୨୨ ଜଣ ମହିଳା ଅନ୍ତର୍ଭୁକ୍ତ ।

ଏ ବାବଦରେ ୧୦ ଲକ୍ଷ ୧୦ ହଜାର ଟଙ୍କା ସରକାରୀ ସାହାଯ୍ୟ ଦିଆଯାଇଥିବା ବେଳେ ଉପରୋକ୍ତ ପରିବାରମାନଙ୍କ ଲାଗି ବିଭିନ୍ନ ଧନ୍ଦା ପାଇଁ ବ୍ୟବସାୟିକ ଓ ସମବାୟ ବ୍ୟାଙ୍କଗୁଡ଼ିକରୁ ୬୯ ହଜାର ଟଙ୍କାର ଋଣ ମଞ୍ଜୁର କରାଯାଇଛି ।

## ପାନୀୟ ଜଳ ଯୋଗାଣ

ପୁରୀ ଜିଲ୍ଲାରେ ଜଳକଷ୍ଟ ସ୍ୱରୂପେ ଚିହ୍ନିତ ହୋଇଥିବା ୩,୧୨୧ଟି ଗ୍ରାମ ମଧ୍ୟରୁ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୨,୯୦୬ଟି ଗ୍ରାମରେ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା କରାଯାଇଛି । ସେହିପରି ୧,୨୧୫ଟି ଅଣ ଚିହ୍ନିତ ଗ୍ରାମ ମଧ୍ୟରୁ ୫୧୦ଟି ଗ୍ରାମରେ ଅନ୍ୟୂନ ଗୋଟିଏ କରି ନଳକୂପ ବସାଯାଇଛି ବୋଲି ଏକ ସମୀକ୍ଷାରୁ ପ୍ରକାଶ ।

ଗତ ୧୭ ତାରିଖରେ ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଡମରୁଧର ଉଲକା ପୁରୀଠାରେ ଜିଲ୍ଲାର ପାନୀୟ ଜଳ ଯୋଗାଣ ଯୋଜନାର ଅଗ୍ରଗତି ସଂପର୍କରେ ସମୀକ୍ଷା କରିଥିଲେ । ସମୀକ୍ଷାରୁ ପ୍ରକାଶ ଯେ, ଉଭୟ ଚିହ୍ନିତ ଓ ଅଣ ଚିହ୍ନିତ ଗ୍ରାମଗୁଡ଼ିକରେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୭,୬୧୭ଟି ନଳକୂପ ବସାଯାଇ ସାରିଛି । ଚଳିତ ଆର୍ଥିକ ବର୍ଷରେ ସମଗ୍ର ଜିଲ୍ଲାରେ ୪୭୫ଟି ନଳକୂପ ବସାଇବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ସେହି ସମୟ ସୁଦ୍ଧା ୨୬୮ଟି ନଳକୂପ ବସାଯାଇ ସାରିଲାଣି । ଅବଶିଷ୍ଟ ୨୦୭ଟି ନଳକୂପ ନିର୍ଦ୍ଧାରିତ ସମୟରେ ବସାଇବାକୁ ଶ୍ରୀ ଉଲକା ବିଭାଗୀୟ ଯନ୍ତ୍ରୀମାନଙ୍କୁ ପରାମର୍ଶ ଦେଇଛନ୍ତି । ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବାପାଇଁ ୪୧ଟି କାର୍ଲିକ୍ସ ରିଗ୍ ଓ ୮ଟି ଅତ୍ୟାଧୁନିକ ରିଗ୍‌କୁ କାର୍ଯ୍ୟରେ ଲଗାଯାଇଛି ।

ସେହିପରି ପୁରୀ, ଖୋର୍ଦ୍ଧା, ଜଟଣୀ, ନୟାଗଡ଼, ବାଣପୁର ଓ ବାଲୁଗାଁ ସହରାଞ୍ଚଳରେ ପାନୀୟ ଜଳ ଯୋଗାଣ ସଂପର୍କରେ ମଧ୍ୟ ଏହି ବୈଠକରେ ସମୀକ୍ଷା କରାଯାଇଥିଲା । ନୟାଗଡ଼ ଓ ଜଟଣୀ ପୌରାଞ୍ଚଳରେ ବିଶେଷ କରି ଗ୍ରୀଷ୍ମ କାଳରେ ପାନୀୟ ଜଳର ଅଭାବ ପରିଲକ୍ଷିତ ହେଉଥିବା ପ୍ରକାଶ କରି ଏଥିପାଇଁ ଅଧିକ ସଂଖ୍ୟକ ନଳକୂପ ବସାଇବା ଲାଗି ଜିଲ୍ଲାପାଳ ଶ୍ରୀ ନରେନ୍ଦ୍ର କୁମାର ମହାପାତ୍ର ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଏହି ଜିଲ୍ଲାର କଣାସ, ବ୍ରହ୍ମଗିରି, ସତ୍ୟବାଦୀ, ପୁରୀ ସଦର, କୃଷ୍ଣ ପ୍ରସାଦ, ଗୋପ, କାକଟପୁର, ଅସ୍ତରଙ୍ଗ ଓ ଡେଲଙ୍ଗ ସମେତ ୨ଟି ବ୍ଲକ୍ 'ଡାନିଡା' ଜଳ ଯୋଗାଣ ପ୍ରକଳ୍ପର ଅନ୍ତର୍ଭୁକ୍ତ ହୋଇଛି । ଏହି ପ୍ରକଳ୍ପର ପ୍ରଥମ ପର୍ଯ୍ୟାୟରେ ଡେଲଙ୍ଗ ବ୍ଲକର ୧୩୦ଟି ଗ୍ରାମରେ ୪୩୦ଟି ନଳକୂପ ବସାଇବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । ତନ୍ମଧ୍ୟରୁ ଚଳିତ ଆର୍ଥିକ ବର୍ଷରେ ୮୫ଟି ଗ୍ରାମରେ ୨୭୮ଟି ନଳକୂପ ବସାଇବାର କାର୍ଯ୍ୟ ହାତକୁ ନିଆଯାଇଛି ବୋଲି ଏହି ବୈଠକରେ ପ୍ରକାଶ ପାଇଛି । ଅବଶିଷ୍ଟ ୮ଟି ବ୍ଲକ୍‌ରେ ପରୀକ୍ଷାମୂଳକଭାବେ ପର୍ଯ୍ୟାୟକ୍ରମେ ନଳକୂପ ଖନନ କାର୍ଯ୍ୟ କରିବା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଛି । ସେହି ସବୁ ବ୍ଲକ୍‌ରେ ଥିବା ନଳକୂପଗୁଡ଼ିକର ପୁରୁଣା ହ୍ୟାଣ୍ଡ ପଂପ୍ ବଦଳାଇ ଉନ୍ନତଧରଣର ହ୍ୟାଣ୍ଡ୍ ପମ୍ପ ଲଗାଇବାକୁ ନିଷ୍ପତ୍ତି କରାଯାଇଛି ।

ଏହି ସମୀକ୍ଷା ବୈଠକରେ ଜିଲ୍ଲାପାଳ, ଜନସ୍ୱାସ୍ଥ୍ୟ ମୁଖ୍ୟଯନ୍ତ୍ରୀ, ଅଧିକ୍ଷଣଯନ୍ତ୍ରୀ, ଡାନିଡା ପ୍ରକଳ୍ପର ନିର୍ଦ୍ଦେଶକ, ମ୍ୟୁନିସିପାଲିଟିର ନିର୍ବାହୀ ଅଧିକାରୀ ଓ ଉପଶାସନ ସଚିବଙ୍କ ସମେତ ସଂପୃକ୍ତ କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ । ○

ବୃକ୍ଷ ଠାରୁ ଶିଖ – "ଏକଥା ମନେରଖିବା ଉଚିତ୍ ବୃକ୍ଷ ସୂର୍ଯ୍ୟଙ୍କ ତାପ ଆପେ ସହେ ଓ ଆମକୁ ଶୀତଳ ଛାୟା ଦାନ କରେ । କିନ୍ତୁ ଆମେ କରୁଥାଉଁ କଣ ?"

"ଗାନ୍ଧୀଜୀ" ୧.୧୨.୧୯୪୭

# ଶକ୍ତି ଉପାସନା

ଶ୍ରୀ କାଳନ୍ଦୀ ଚରଣ ସେନାପତି

ଭାରତୀୟ ସଂସ୍କୃତି ଚିରନ୍ତନ ଆଧ୍ୟାତ୍ମିକ ସଂସ୍କୃତି । ଏହି ପୁଣ୍ୟ ସଂସ୍କୃତିର ଭୂମି ଭାରତବର୍ଷରେ ଯୁଗେ ଯୁଗେ ପ୍ରଚଳିତ ହୋଇ ଆସିଛି ଶକ୍ତି ଉପାସନାର ଚିରନ୍ତନ ଅଧିଷ୍ଠାନ । ଯେଉଁ ଜନନୀ ଅବାଙ୍‌-ମାନସ-ଗୋଚରା, ବିଶ୍ୱାତୀତା, ପରମ ରହସ୍ୟର ଅବଗୁଣ୍ଠନ ତଳେ ନିତ୍ୟ ବିହାରିଣୀ; ସେହି ପୁଣି ବିଶ୍ୱ-ବ୍ୟାପିନୀ, ବିଶ୍ୱରୂପିଣୀ, ସନ୍ତାନ ବତ୍ସଳା ଓ ପତିତପାବନୀ । ସେଥିପାଇଁ ଋଷି କଣ୍ଠରେ ଝଙ୍କୃତ ହୁଏ–

"ଜନନୀ ପୂଜିଲେ ମିଳନ୍ତି ଜନକ
କହି ଯାଇଛନ୍ତି ସନକ ଜନକ" ।

ସକଳ ଯୋଗ ଦର୍ଶନର ନର୍ଯ୍ୟାସ ହିଁ ଏହିଠାରେ । ସାଧକ ପକ୍ଷରେ ଏହାହିଁ ସୂର୍ଯ୍ୟାଲୋକିତ ପଥ (Sun-lit path) ପ୍ରେମମୟୀ ଦିବ୍ୟଜନନୀଙ୍କ ସହ ସଂଯୁକ୍ତ ହେଲେ ଶାଶ୍ୱତ ପୁରୁଷୋତ୍ତମଙ୍କ ଚେତନା ଲାଭ କରିବା ସହଜ ସାଧ୍ୟ । ସେଥିପାଇଁ କୃପାମୟୀ ତାଙ୍କର ସନ୍ତାନମାନଙ୍କ ପ୍ରତି କରୁଣାବଶ ହୋଇ ବିଭିନ୍ନ ରୂପରେ ଓହରି ଆସନ୍ତି ଏହି ତମସାଚ୍ଛନ୍ନ ପୃଥିବୀ ବକ୍ଷରେ ଦିବ୍ୟଜୀବନର ସୂତ୍ରପାତ କରିବା ପାଇଁ ।

ଦିବ୍ୟ ଜନନୀଙ୍କର ଚାରୋଟି ଦିବ୍ୟ ମହାରୂପ ସାଧକ ନିକଟରେ ପ୍ରତିଭାତ ହୁଏ । ପାର୍ଥିବଲୀଳାରେ ଯେଉଁ ମହାଶକ୍ତି ଚିରନ୍ତନ ଭାବେ କାର୍ଯ୍ୟରତା, ତାହା କେତେବେଳେ ଅନୁଭୂତ ହୁଏ ବିଶାଳତା ମଧ୍ୟରେ, କେବେ ପୁଣି ଭାସ୍ୱର ବୀର୍ଯ୍ୟ ମଧ୍ୟରେ, କେତେବେଳେ ଶାଶ୍ୱତ ସୌନ୍ଦର୍ଯ୍ୟର ପରମ ଇନ୍ଦ୍ରଜାଲ ମଧ୍ୟରେ ଆଉ ପୁଣି କେତେବେଳେ ଦିବ୍ୟ ପରିପୂର୍ଣ୍ଣତା ମଧ୍ୟରେ । ଶ୍ରୀ ଅରବିନ୍ଦ କହନ୍ତି:

"She ia Maheshwari, goddess of the supreme knowledge, and brings to us her vision for all kinds of widenesses of truth, her rectitude of the spiritual will, the calm and passion of her supramental largeness, her felicity of iluumina-tions; She is Mahakali, Goodess of the supreme sfrength, and with her are all mignts and spirittual force and severest austerity of Tapas and swiftness to the battle and the victory and the langnter, the attahasya, that makes light of defeat and death and the powers of the ignorance. She is Mahalakshmi, the goddess of the supreme love and delight, and her gifts are the spirit's grace and the charm and beauty of the Ananda and protection and every divine and human blessing. She is Mahasaraswati' the goddess of divine skill and of the works of the spirit, and hers in the yoga that is skill in works, yogah karmasu kausalam, and the utilities of divine knowledge and the self application of the spirit to life and the happiness of its harmonies.'

ଅର୍ଥାତ୍, "ସେହି ଶକ୍ତି ହେଉଛନ୍ତି ମହେଶ୍ୱରୀ, ପରମ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ, ସେଇହିଁ ଆମକୁ ତାଙ୍କର ଯାବତୀୟ ଦୃଷ୍ଟି ଓ ସତ୍ୟର ପ୍ରଶସ୍ତତା ଆଣି ଦେଉଛନ୍ତି, ଆଧ୍ୟାତ୍ମିକ ସଂକଳ୍ପର ଯଥାର୍ଥତା ଆଣି ଦେଉଛନ୍ତି, ତାଙ୍କ ଅତିମାନସିକ ବିଶାଳତାର ଶାନ୍ତି ତଥା ଆବେଗ ଏବଂ ଆଲୋକମୟ ପରମ ସୁଖ ଆଣି ଦେଉଛନ୍ତି । ସେହି ମହାକାଳୀ, ପରମ ସାମର୍ଥ୍ୟର ଅଧିଷ୍ଠାତ୍ରୀ ଦେବୀ; ସକଳ ଶକ୍ତିମତ୍ତା, ଅଧ୍ୟାତ୍ମ ସାମର୍ଥ୍ୟ ଏବଂ ସକଳ ତପଶ୍ଚର୍ଯ୍ୟାର କଠୋରତମ ସାଧନା ତଥା ସମରକ୍ଷେତ୍ର ଏବଂ ବିଜୟଲାଗି ସକଳ କ୍ଷିପ୍ର ବେଗତା କେବଳ ତାଙ୍କରି ପାଖରେ ରହିଛି; ଯାବତୀୟ ପରାଜୟ, ମୃତ୍ୟୁ ଏବଂ ଅଜ୍ଞାନ ଶକ୍ତିକୁ ପରିହାସ କରୁଥିବା ଅଟ୍ଟହାସ୍ୟ ମଧ୍ୟ ସେହିଠାରେ ରହିଛି । ସେ ମହାଲକ୍ଷ୍ମୀ, ପରମ ପ୍ରେମ ଏବଂ ଆନନ୍ଦର ଅଧିଶ୍ୱରୀ ଦେବୀ, ଆତ୍ମାର ସୁଷମା, ଆନନ୍ଦର ଆକର୍ଷଣ ଏବଂ ସୌନ୍ଦର୍ଯ୍ୟ, ଅଭୟଦାନ ଏବଂ ଯାବତୀୟ ଦିବ୍ୟ ତଥା ମାନବୀୟ ଆଶୀର୍ବାଦ- ଏ ଗୁଡ଼ିକୁ ଆମେ ତାଙ୍କରି ଦ୍ୱାରା ଦତ୍ତ ସମ୍ପଦ ବୋଲି ଜାଣବା । ସେ ହେଉଛନ୍ତି ମହା ସରସ୍ୱତୀ, ଦିବ୍ୟ କୌଶଳ ଏବଂ ପରମ ଚିଦ୍‌ଗତତାର ଯାବତୀୟ କର୍ମର ଅଧିଶ୍ୱରୀ ଦେବୀ; ଯେଉଁ ଯୋଗକୁ 'କର୍ମସୁ କୌଶଳମ୍' ବୋଲି କୁହାଯାଏ, ସେଇଟି ହେଉଛି ତାଙ୍କରି ଯୋଗ । ସେହିପରି, ଦିବ୍ୟଜ୍ଞାନର ନାନା ଉପଯୋଗ, ଜୀବନର କ୍ଷେତ୍ରରେ ଆତ୍ମାର ଆପେ ଆପଣାକୁ ନିୟୋଜିତ କରିବା ଏବଂ ତଦୁପଲବ୍ଧ ଯାବତୀୟ ସୌଷମ୍ୟର ଆନନ୍ଦ; ଏସବୁ କେବଳ ତାଙ୍କରି ଗୁଣ ଓ କାର୍ଯ୍ୟ" ।

ମହେଶ୍ୱରୀ ଦୁର୍ବଳମାନବ ସମ୍ମୁଖରେ ବହୁ ଦୂରର ଚିନ୍ମୟ ଶମ୍ଭ ଭାବେ ପ୍ରତିଭାତ ହୁଅନ୍ତି; ପାର୍ଥିବ ପ୍ରକୃତିର ଦୁର୍ବଳତା ମହାକାଳୀଙ୍କ ପ୍ରାଚୁର୍ଯ୍ୟ ସହ୍ୟ କରିବାକୁ ଅସମର୍ଥ ହୁଏ; କିନ୍ତୁ ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କ ଆଡ଼କୁ ସମସ୍ତେ ସାଗ୍ରହରେ ଲକ୍ଷୁଶ । କାରଣ, ମହାଲକ୍ଷ୍ମୀ ବିକୀର୍ଣ୍ଣ କରନ୍ତି ଭଗବାନଙ୍କ ଆହ୍ଲାଦକାରୀ ମାଧୁର୍ଯ୍ୟର ଯାଦୁମନ୍ତ୍ର ଏବଂ ମହାସରସ୍ୱତୀ ଦିବ୍ୟ ପରିପୂର୍ଣ୍ଣତାର ସୁଶ୍ରୀଯୁକ୍ତ କାରୁଶିଳ୍ପ ରଚନା କରନ୍ତି ।

ସର୍ବଚେତନାମୟୀ ପରମାଜନନୀ ତାଙ୍କର ସୃଜନଶୀଳ ସଂକଳ୍ପ ଅନୁସାରେ ବିଶ୍ୱରେ କାର୍ଯ୍ୟ କରନ୍ତି । କର୍ମଯୋଗୀ ତା'ର ସାଧନାରେ ଅନୁଭବ କରେ ଯେପରି ମା'ଙ୍କର ଚିନ୍ମୟୀଶକ୍ତି ତାର ଆଧାର ମଧ୍ୟରେ ନିତ୍ୟ କ୍ରୀୟାଶୀଳ ଏବଂ ନବ ରୂପାନ୍ତର କାର୍ଯ୍ୟରେ ଚିର ଉନ୍ନିଦ୍ର । ଈଶ୍ୱର ଓ ଶକ୍ତି ଏକହିଁ ଭଗବାନଙ୍କର ଦ୍ୱୈତ୍ୟ ବିଭାବ । ଦେବ ଓ ଦେବୀ, ଶିବ ଓ କାଳୀ, ଶ୍ରୀକୃଷ୍ଣ ଓ ଶ୍ରୀରାଧା ସକଳହିଁ ଏକଇ ଚେତନା । ଈଶ୍ୱରୀ ଶକ୍ତି ତାଙ୍କର ସୃଜନଶୀଳ ଦୃଷ୍ଟିରେ ସୃଷ୍ଟିର ଯାବତୀୟ କାର୍ଯ୍ୟ ସମ୍ପାଦନ କରନ୍ତି । ଲୀଳାର ଅନ୍ତରାଳରେ ପରମେଶ୍ୱର ଅଧିଷ୍ଠିତ ରହି ପରମେଶ୍ୱରୀଙ୍କ ସକଳ କାର୍ଯ୍ୟକୁ ଅନୁମୋଦନ କରିଥାନ୍ତି । ସେଥିପାଇଁ ଯୁଗେ ଯୁଗେ ଭିନ୍ନ ଭିନ୍ନ ନାମରେ ଏହି ଦ୍ୱୈତ ଚେତନା ଅବତରଣ କରି ସୃଷ୍ଟିକୁ ନବରୂପ ପ୍ରଦାନ କରନ୍ତି ଓ ପୂର୍ଣ୍ଣତାର ପଥରେ ଆଗେଇ ନିଅନ୍ତି । ମନୁଷ୍ୟ ଯାହାକୁ ପୂର୍ଣ୍ଣତା କୁହେ, ତାହାହେଲା ମାନସିକ ଉତ୍କର୍ଷ, ନୈତିକ ସାଧୁତା, ଚିରବୃତ୍ତିର ଲଳିତ ବିକାଶ, ଚରିତ୍ରର ତେଜ ଓ ପ୍ରାଣର ସାମର୍ଥ୍ୟ; କିନ୍ତୁ ସେ ସବୁ ଦିବ୍ୟ ପରିପୂର୍ଣ୍ଣତା ନୁହେଁ । ମନୁଷ୍ୟ ରୂପକ କଳିକାରେ ଭଗବତ-ପଦ୍ମର ପୂର୍ଣ୍ଣତା ଲୁକକାୟିତ । ଆତ୍ମାର ପୂର୍ଣ୍ଣତାରେ, ମାନସାତୀତ ବିଜ୍ଞାନଶକ୍ତିର ପୂର୍ଣ୍ଣତାରେ ପ୍ରକୃତ ଅଖଣ୍ଡ ପୂର୍ଣ୍ଣତା ଆସେ । ମାନସ ପରଦାର ପଶ୍ଚାତରେ ଆତ୍ମା ଲୁକ୍କାୟିତ ହୋଇ ରହିଛି, ପରଦା ଅପସାରିତ ହେଲେ ଆତ୍ମାର ସ୍ୱରୂପ ଦେଖାଯାଏ । ଏହି ଆତ୍ମାର ଆଲୋକ ଲାଭ କରିବାକୁ ହେଲେ ଦିବ୍ୟଜନନୀଙ୍କ ପ୍ରତି ଉନ୍ମୀଳନ ଅପରିହାର୍ଯ୍ୟ, କାରଣ ମାତୃକୃପା ବ୍ୟତୀତ ଏହି ଦିବ୍ୟରୂପାନ୍ତର ସମ୍ଭବ ନୁହେଁ ।

ସେଥିପାଇଁ ଯୁଗେ ଯୁଗେ କୃପାମୟୀଙ୍କ ଆରାଧନା କରାଯାଇଛି ଆଧ୍ୟାତ୍ମିକ ସିଦ୍ଧିର ଅମୃତମୟ ଫଳ ଲାଭ କରିବା ପାଇଁ । ଯୋଗୀ ଋଷୀମାନଙ୍କର ତପଃଶକ୍ତିର ପ୍ରଭାବ ଆଜି ମ୍ଳାନ ହୋଇ ଯାଇନାହିଁ । ସେହିମାନଙ୍କର ତପସ୍ୟା ବଳରେ ଭାରତଭୂମିରେ ଆଧ୍ୟାତ୍ମିକ ବନ୍ୟାର ପ୍ଲାବନ ଘଟିଛି । ବିବର୍ତ୍ତନର ସର୍ବୋଚ୍ଚ ସୋପାନରେ ମାନବ ସତ୍ତାକୁ ଉତ୍ତୋଳନ କରିବା ପାଇଁ ଅବିଶ୍ରାନ୍ତ ଭାବେ ଜଗଜ୍ଜନନୀ କାର୍ଯ୍ୟରତା । ନିଶ୍ଚେତନାର ବୁକୁରେ ଆଲୋକର ସନ୍ଦୀପନ କରି ଯୁଗଯୁଗାନ୍ତର ସଞ୍ଚିତ ବକ୍ଷକୁ ଏହି ପରମାଜନନୀ ବିଦୀର୍ଣ୍ଣ କରୁଛନ୍ତି । ଏହାହିଁ ଅବିଦ୍ୟାର ମୂଳୋତ୍ପାଟନର ପର୍ବ । ଶ୍ରୀ ଅରବିନ୍ଦ କହନ୍ତି–

( "Night is the darkest before dawn" )
"ପ୍ରଭାତ ପୂର୍ବରୁ ରାତ୍ରିର ଅନ୍ଧକାର ଘନତର ହୋଇଉଠେ ।

ଶ୍ରୀ ଅରବିନ୍ଦ ଘୋଷଣା କରିଛନ୍ତି, 'ବକ୍ତୃତାର ଉତ୍ତେଜନା ନୁହେଁ, ମେଣ୍ଟଳଦର ବିଦ୍ୟା ନୁହେଁ, ସଭା ସମିତିର ଭାବ ସଞ୍ଚାରିଣୀ ଶକ୍ତି ନୁହେଁ, ନିଜ ମଧ୍ୟରେ ଆତ୍ମାର ବିଶାଳ ନୀରବତାରେ, ଭଗବାନ ଓ ଜୀବର ସଂଯୋଗରେ ଯେଉଁ ଗଭୀର ଅବିଚଳିତ ଅକ୍ଳାନ୍ତ ଶୁଦ୍ଧ ସୁଖଦୁଃଖଜୟୀ ପାପପୁଣ୍ୟ ବର୍ଜିତ ଶକ୍ତି ସମ୍ଭୂତ ହୁଏ, ସେହି ମହା ସୃଷ୍ଟିକାରିଣୀ, ମହାପ୍ରଳୟଙ୍କରୀ, ମହାସ୍ଥିତିଶାଳିନୀ, ଜ୍ଞାନଦାୟିନୀ ମହାସରସ୍ୱତୀ, ଐଶ୍ୱର୍ଯ୍ୟଦାୟିନୀ ମହାଲକ୍ଷ୍ମୀ, ଶକ୍ତିଦାୟିନୀ ମହାକାଳୀ, ସେହି ସହସ୍ର ତେଜର ସଂଯୋଗରେ ଏକୀଭୂତା ଚଣ୍ଡୀ ପ୍ରକଟ ହୋଇ ଭାରତର କଲ୍ୟାଣରେ ଓ ଜଗତର କଲ୍ୟାଣରେ କୃତୋଦ୍ୟମ ହେବେ ।।'

ସୁତରାଂ, ହେ ମନୁପୁତ୍ର! ସ୍ୱର୍ଗ ତୁମର ବାଞ୍ଛିତ ସଂପଦ, ଆନନ୍ଦ ତୁମର ସର୍ବଶ୍ରେଷ୍ଠ ଆସ୍ୱଦ । ତେବେ କାହିଁକି ଧାବିତ ହେଉଛି ବସ୍ତୁବାଦର ଶ୍ୱାସରୁଦ୍ଧକାରୀ ଆବେଗରେ ? ଚକ୍ଷୁ ଖୋଲି ଚାହଁ, ନିଜ ଅନ୍ତର ମଧ୍ୟକୁ ସିଧା ଦୃଷ୍ଟିପାତ କର । ଦେଖିବ, ସେଠାରେ ଆତ୍ମାର ପ୍ରଦୀପ ଚିରଦେଦୀପ୍ୟମାନ । ଅବାରିତ ଭାବେ ଝରି ଆସୁଛି ପ୍ରେମର ନିର୍ଝର । ଆତ୍ମସ୍ଥ ହୋଇ ଆବାହନ କର–

"ମାତଃ ଦୁର୍ଗେ ! ଆମ୍ଭମାନଙ୍କ ମଧ୍ୟରେ ଯୋଗବଳରେ ପ୍ରବେଶ କର । ଆମ୍ଭେମାନେ ହୋଇଉଠିବୁ ତୋର ଯନ୍ତ୍ର, ଅଶୁଭ ବିନାଶୀ ତରବାରୀ, ଅଜ୍ଞାନବିନାଶୀ ପ୍ରଦୀପ, ଭାରତର ଯୁବକଗଣଙ୍କର ଏହି ବାସନା ପୂର୍ଣ୍ଣକର । ଯନ୍ତ୍ରୀ ହୋଇ ଯନ୍ତ୍ର ଚଳାଅ, ଅଶୁଭ ହନ୍ତୀ ହୋଇ ତରବାରୀ ଘୁରାଅ, ଜ୍ଞାନଦୀପ୍ତି ପ୍ରକାଶିନୀ ହୋଇ ପ୍ରଦୀପ ଧର, ପ୍ରକାଶ ହୁଅ ।

ମାତଃ ଦୁର୍ଗେ ! ତୋତେ ପାଇଲେ ଆଉ ବିସର୍ଜନ କରିବୁ ନାହିଁ, ଶ୍ରଦ୍ଧା ଭକ୍ତି ପ୍ରେମର ଡ଼ୋରରେ ବାନ୍ଧି ରଖିବୁ । ଆସ ମାତଃ, ଆମ୍ଭମାନଙ୍କର ମନ-ପ୍ରାଣ-ଶରୀରରେ ପ୍ରକାଶ ହୁଅ ।

ବୀରମାର୍ଗ ପ୍ରଦର୍ଶନି ! ଆସ, ଆଉ ବିସର୍ଜନ କରିବୁ ନାହିଁ । ଆମ୍ଭମାନଙ୍କର ସମଗ୍ର ଜୀବନ ହେଉ ଏକ ନିରବଚ୍ଛିନ୍ନ ମାତୃପୂଜା, ଆମ୍ଭମାନଙ୍କର ସକଳ କାର୍ଯ୍ୟ ଅବିରତ ପବିତ୍ର ପ୍ରେମମୟ ଶକ୍ତିମୟ ମାତୃସେବାବ୍ରତ ହେଉ, ଏହାହିଁ ପ୍ରାର୍ଥନା ମାତଃ, ଭାରତରେ ଆବିର୍ଭୂତ ହୁଅ, ପ୍ରକାଶ ହୁଅ" ।

ଗ୍ରା: ବହଳପଡ଼ା, ପୋ: ବେଣ୍ଟକାର
ବୟାଳିଶ ମୌଜା
କଟକ

"ଶ୍ରଦ୍ଧା ଦ୍ୱାରା ମନୁଷ୍ୟ କ'ଣ କରି ନପାରେ ? ଶ୍ରଦ୍ଧା ଥିଲେ ସବୁ ସହଜରେ କରି ହେବ" 'ଗାନ୍ଧୀଜୀ' ୯.୧୨.୧୯୪୪




ଡକ୍ଟର ରବିନାରାୟଣ ମହାନ୍ତି

ଆମ ରାଜ୍ୟର ଲୋକ ସଂଖ୍ୟାର ଶତକଡ଼ା ୭୫ ଭାଗ କୃଷି ଉପରେ ନିର୍ଭରଶୀଳ । ତେଣୁ ଏକଥା ନିଃସଂଦେହରେ କୁହାଯାଇ ପାରେ ଯେ କୃଷିର ଉନ୍ନତିରେ ହିଁ ରାଜ୍ୟର ସମୃଦ୍ଧ ବିକାଶ ସମ୍ଭବ । ଏହି ପରିପ୍ରେକ୍ଷୀରେ ରାଜ୍ୟର ଚାଷ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବା ଦ୍ୱାରା କୃଷକମାନଙ୍କର ତଥା ରାଜ୍ୟର ଆର୍ଥିକ ଅବସ୍ଥାର ଉନ୍ନତି ତ୍ୱରାନ୍ୱିତ ହୋଇ ପାରିବ ।

ଏହି ରାଜ୍ୟରେ ବାରମ୍ବାର ଘଟୁଥିବା ପ୍ରାକୃତିକ ବିପର୍ଯ୍ୟୟ କୃଷି ଉତ୍ପାଦନ କ୍ଷେତ୍ରରେ ଏକ ମୁଖ୍ୟ ପ୍ରତିବନ୍ଧକ । ଏହା ବ୍ୟତୀତ କ୍ଷୁଦ୍ର ଓ ନାମ ମାତ୍ର ଚାଷୀମାନଙ୍କର ଆର୍ଥିକ ଅସ୍ୱଚ୍ଛଳତା ଏବଂ ଜମିର ପୃଥକ୍ ଅବସ୍ଥିତି, ଉତ୍ପାଦନ ବୃଦ୍ଧିରେ ମଧ୍ୟ ଅନ୍ତରାୟ ସୃଷ୍ଟି କରୁଛି । ରାଜ୍ୟର ମୋଟ କୃଷି ଜମିର ଶତକଡ଼ା ୮୦ ଭାଗ ବର୍ଷା ଉପରେ ନିର୍ଭରଶୀଳ ଥିବାରୁ ଏହି ପ୍ରକାର ଜମିରେ ଉନ୍ନତ କୃଷି ପ୍ରଣାଳୀ ଅବଲମ୍ବନ କରିବାକୁ ଚାଷୀମାନେ ସାଧାରଣତଃ ଅନିଚ୍ଛୁକ ।

ଉପରୋକ୍ତ କାରଣଗୁଡ଼ିକ ଦୃଷ୍ଟିରେ ରଖି କୃଷି ଉତ୍ପାଦନ ବୃଦ୍ଧି ପାଇଁ ନିମ୍ନଲିଖିତ କାର୍ଯ୍ୟପନ୍ଥା ଓ ଆଭିମୁଖ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି ।

(୧) ବିଭିନ୍ନ ଫସଲ ପାଇଁ ଫସଲ ପର୍ଯ୍ୟାୟ ଅବଲମ୍ବନ ।

(୨) ଜଳସେଚିତ ଅଞ୍ଚଳରେ ବହୁବିଧ ଫସଲ ଉତ୍ପାଦନ ବୃଦ୍ଧି କରିବା ।

(୩) ମରୁଡ଼ି ପ୍ରପିଡ଼ିତ ଅଞ୍ଚଳରେ ଓ ବର୍ଷା ଉପରେ କରୁଥିବା ଚାଷ ଜମିରେ ଆଧୁନିକ ଶୁଷ୍କ ଚାଷ ପ୍ରଣାଳୀ ଅ… କରି ଉତ୍ପାଦନର ଦୃଢ଼ୀକରଣ ।

(୪) ବିଶେଷ ପରିମାଣରେ ଅଧିକ ଅମଳକ୍ଷମ ଧାନ, … ଧରଣର ଡାଲି ଜାତୀୟ, ତୈଳ ଜାତୀୟ ବିହନ ବ୍ୟବହାର ଓ … ଚାଷ ସଂପ୍ରସାରଣ ଏବଂ ସମୁଚିତ ହାରରେ ସାର ପ୍ରୟୋଗ ବୃ…

(୫) ଅଧିକ ଉତ୍ପାଦନ ପାଇଁ ଅତ୍ୟାଧୁନିକ ବୈଜ୍ଞାନିକ ପ୍ରଣା… ପ୍ରୟୋଗ ।

(୬) ସମସ୍ତ ପ୍ରକାର କୃଷି ସାମଗ୍ରୀଗୁଡ଼ିକର ସୁନିଶ୍ଚି… ଯୋଗାଣ ବ୍ୟବସ୍ଥା ।

ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ଧାନ ଏବଂ ଖାଦ… ଶସ୍ୟ ଉତ୍ପାଦନ କ୍ଷେତ୍ରରେ ଯଥେଷ୍ଟ ସଫଳତା ହାସଲ ହୋ… ପାରିଛି ।

ଅଧିକ ଉତ୍ପାଦନକ୍ଷମ ଧାନ ଚାଷର ବହୁଳ ସଂପ୍ରସାରଣ କରାଯାଇ ପାରିଛି । ଓଡ଼ିଶାରେ ସମୁଦାୟ ୪୧.୪୪ ଲକ୍ଷ ହେକ୍ଟର ଜମିରେ ଧାନ ଚାଷ ହେଉଅଛି । ଅଧିକ ଅମଳକ୍ଷମ ଧାନ ବିହନର ସଂପ୍ରସାରଣ ୧୦,୪୨,୦୦୦ ହେକ୍ଟରରୁ ୧୬,୧୦,୦୦୦ ହେକଟରକୁ ବୃଦ୍ଧି କରାଯାଇ ପାରିଛି ।

ସେହିପରି ଡାଲି ଜାତୀୟ ଫସଲର ସଂପ୍ରସାରଣ ୧୭,୨୫,୦୦୦ ହେକ୍ଟରରୁ ୨୦,୩୭,୦୦୦ ହେକ୍ଟରକୁ ହୋଇପାରିଛି ।

ତୈଳ ଜାତୀୟ ଫସଲ ମଧ୍ୟରେ ଚିନାବାଦାମ ଚାଷର ସଂପ୍ରସାରଣ ବିଶେଷ ସନ୍ତୋଷଜନକ ହୋଇଅଛି । ଏହି ଚାଷ ୧,୭୨,୦୦୦ ହେକ୍ଟରରୁ ୨,୮୦,୦୦୦କୁ ବୃଦ୍ଧି ପାଇଛି ।

ଧାନ ଆମର ପ୍ରଧାନ ଫସଲ । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଚାଉଳ ଉତ୍ପାଦନ ବୃଦ୍ଧି ପାଇଁ ଅଧିକ ଅମଳକ୍ଷମ ଧାନ ଚାଷର ସଂପ୍ରସାରଣ ୨୦,୫୦,୦୦୦ ହେକ୍ଟରକୁ ବଢ଼ାଇ ଅଧିକ ସାର ବ୍ୟବହାର ଏବଂ ଫଳପ୍ରଦ ପୋକ ରୋଗ ପ୍ରତିରୋଧ ବ୍ୟବସ୍ଥା ଅବଲମ୍ବନ କରି ଏହି ଉତ୍ପାଦନ ବୃଦ୍ଧି ପାଇଁ ଯୋଜନା କରାଯାଇ ଅଛି । ଚାଷୀମାନେ ଯେପରି ବିଶେଷ ଭାବରେ ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ଚାଷ କରି ପାରିବେ ସେ ବିଷୟରେ ତାଙ୍କୁ ତାଲିମ ଦେବା ଏବଂ ନୂତନ ତଥ୍ୟ ପହଞ୍ଚାଇବା ପାଇଁ ପ୍ରଶିକ୍ଷଣ ଏବଂ ପରିଦର୍ଶନ (Training and Visit) ମାଧ୍ୟମରେ ସମୁଚିତ ପଦକ୍ଷେପ ନେବା ପାଇଁ ବ୍ୟବସ୍ଥା କରାଯାଇଅଛି ।

ସେହିପରି ଡାଲି ଜାତୀୟ ଏବଂ ମୋଟ ଖାଦ୍ୟ ଶସ୍ୟ ଚାଷ ଆୟତନ ଓ ଉତ୍ପାଦନ ବୃଦ୍ଧି, ତୈଳବୀଜ ଉତ୍ପାଦନ ବୃଦ୍ଧି ଷଷ୍ଠ ଯୋଜନା ତୁଳନାରେ ସପ୍ତମ ଯୋଜନା ସୁଦ୍ଧା ଏବଂ ୧୯୮୫ ମସିହାରେ ଏହାର ଲକ୍ଷ୍ୟ ଧାର୍ଯ୍ୟ ନିମ୍ନ ପ୍ରକାରରେ ସ୍ଥିର କରାଯାଇଅଛି ।

(୦୦୦ ମେଟ୍ରିକ ଟନରେ)

| କ୍ରମିକ ନମ୍ବର | ଷଷ୍ଠ ଯୋଜନା ଶେଷସୁଦ୍ଧା ଉତ୍ପାଦନ । | ସପ୍ତମ ଯୋଜନା ଶେଷ ସୁଦ୍ଧା ଲକ୍ଷ୍ୟ ଧାର୍ଯ୍ୟ | ୧୯୮୫-୮୬ ମସିହା ପାଇଁ ଉତ୍ପାଦନ ଲକ୍ଷ୍ୟ । |
|---|---|---|---|
| (୧) | (୨) | (୩) | (୪) |
| ଚାଉଳ ଉତ୍ପାଦନ | ୪,୫୨୬ | ୬,୫୧୨ | ୫,୫୬୬ |
| ଡାଲି ଜାତୀୟ ଫସଲ | ୯୭୫ | ୧,୨୦୦ | ୧,୦୧୭ |
| ଅନ୍ୟାନ୍ୟ ଖାଦ୍ୟ ଶସ୍ୟ ଫସଲ | ୨୦୦ | ୯୭ | ୧୩୮ |
| ମୋଟ ଖାଦ୍ୟ ଶସ୍ୟ ଫସଲ | ୬,୩୨୬ | ୮,୫୦୦ | ୭,୨୭୩ |
| ମୋଟ ତୈଳବୀଜ ଫସଲ | ୭୮୩ | ୧,୦୦୦ | ୮୮୯ |
| ଚିନାବାଦାମ .. | ୪୩୪ | ୫୯୫ | ୫୪୦ |
| ସୋରିଷ .. | ୭୫ | ୮୧ | ୭୫ |

ଆଗରୁ ବର୍ଣ୍ଣିତ ହୋଇଥିବା ଆଭିମୁଖ୍ୟ ଅନୁସରଣ କରି ଉତ୍ପାଦନ ବୃଦ୍ଧି ପାଇଁ ଗତ ବର୍ଷ ନିମ୍ନଲିଖିତ କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ କରାଯାଇଥିଲା ।

## କୃଷି ଉତ୍ପାଦନ ପାଇଁ ବିଭିନ୍ନ ବ୍ୟବସ୍ଥା

(କ) କୃଷି ଶିକ୍ଷା, ଗବେଷଣା ଓ କୃଷି ସଂପ୍ରସାରଣ ବ୍ୟବସ୍ଥା :—

୨୯ଟି ଉଚ୍ଚ ମାଧ୍ୟମିକ ସ୍କୁଲସ୍ତରରେ କୃଷି ଶିକ୍ଷାର ବ୍ୟବସ୍ଥା କରାଯାଇଥିଲା । ୪ଟି କୃଷି ତାଲିମ କେନ୍ଦ୍ରରେ ୪୫୧ ଜଣ ପ୍ରାକ୍ ନିଯୁକ୍ତି ତାଲିମ ପାଇଥିଲେ ଏବଂ ଚଳିତ ବର୍ଷ ୨୫୬ ଜଣ ତାଲିମ ପାଉଛନ୍ତି । ମହିଳା କୃଷକମାନଙ୍କୁ ଫସଲ ଉତ୍ପାଦନ ଓ ଫସଲ ଅମଳର ପରବର୍ତ୍ତୀ ଯତ୍ନ ପାଇଁ ତାଲିମ ଓ କୃଷି ସଂପ୍ରସାରଣ କର୍ମୀଙ୍କ ପାଇଁ ତାଲିମ ବ୍ୟବସ୍ଥା ଗ୍ରାମ୍ୟ ମଣ୍ଡଳ ଓ ଜିଲ୍ଲାସ୍ତରରେ ସ୍ଥିର ରଖାଯାଇଥିଲା । ଜାତୀୟ କୃଷି ସଂପ୍ରସାରଣ ପ୍ରକଳ୍ପ ମାଧ୍ୟମରେ ବିଶ୍ୱ ବ୍ୟାଙ୍କ ସହାୟତା ନିଆଯାଇ ସ୍ଥାନୀୟ କୃଷି ସମସ୍ୟା ଉପରେ ପ୍ରୟୋଗାତ୍ମକ ଗବେଷଣାର ସଂପ୍ରସାରଣ କରିବା ପାଇଁ ପ୍ରସ୍ତାବ କରାଯାଉଛି । ପ୍ରଦର୍ଶନ କ୍ଷେତ୍ର ମାଧ୍ୟମରେ କୃଷକମାନଙ୍କୁ ଆଧୁନିକ କୃଷି ପ୍ରଣାଳୀ ଶିକ୍ଷା ଦିଆଯିବା ସହିତ ରିହାତି ଦରରେ କୃଷି ସାମଗ୍ରୀ ଯୋଗାଇ ଦେବା ଦ୍ୱାରା ଚାଷୀଙ୍କୁ ଉତ୍ସାହିତ କରାଯାଉଛି । ଅଧିକ ଅମଳ ପାଇଁ ଧାନର ଆଗୁଆ ତଳିଘରା ବ୍ୟବସ୍ଥା, ଧାନ, ଡ଼ାଲି ଓ ତୈଳବୀଜ ପ୍ରଭୃତି ବିହନ ପୁଡ଼ିଆ ବଣ୍ଟନ ତଥା ଏକଚକିଆ ଚାଷ କାର୍ଯ୍ୟକ୍ରମ କୃଷକଙ୍କ ନିକଟରେ ବିଶେଷ ଆଦୃତ ହୋଇପାରିଛି । ଏହିସବୁ ଚଳିତ ବର୍ଷରେ ମଧ୍ୟ କାର୍ଯ୍ୟକାରୀ କରାଯାଉଛି ।

(ଖ) କୃଷି ସାମଗ୍ରୀ :—

ବିହନ—ଉତ୍କୃଷ୍ଟ ବିହନ କୃଷି ଉତ୍ପାଦନ ବୃଦ୍ଧିରେ ଅତଗୁରୁତ୍ୱପୂର୍ଣ୍ଣ ସ୍ଥାନ ହାସଲ କରିଛି । ଅଧିକନ୍ତୁ ଅଧିକତର ଉତ୍କୃଷ୍ଟ ପରୀକ୍ଷିତ ବିହନ ବ୍ୟବହାର କରି ଉତ୍ପାଦନ ବୃଦ୍ଧି କରିବା ପାଇଁ କୃଷକମାନଙ୍କୁ କୃଷି ସଂପ୍ରସାରଣ କାର୍ଯ୍ୟକ୍ରମ ଜରିଆରେ ଉତ୍ସାହିତ କରାଯାଉଛି । ଆବଶ୍ୟକ ହେଉଥିବା ବିଭିନ୍ନ କିସମର ପରୀକ୍ଷିତ ବିହନ, ବିହନ ନିଗମ ଓ କୃଷି ବିହନ ଫାର୍ମ ଜରିଆରେ ଉତ୍ପାଦନ କରାଯାଉଛି । ପ୍ରତ୍ୟେକ ବ୍ଲକର ସଦରମହକୁମାରେ ଗୋଟିଏ ଲେଖାଏଁ ବିହନ ବିକ୍ରୟ କେନ୍ଦ୍ର ଖୋଲାଯାଇଛି । ୧୯୮୪-୮୫ ବର୍ଷରେ ହୋଇଥିବା ବିହନ ବିତରଣ ଓ ୧୯୮୫-୮୬ରେ ବିହନ ବିତରଣର ଲକ୍ଷ୍ୟ ନିମ୍ନରେ ଦିଆଗଲା ।

(ପରିମାଣ କ୍ୱିଣ୍ଟାଲରେ)

| | ୧୯୮୪-୮୫ | | | ୧୯୮୫-୮୬ | | |
|---|---|---|---|---|---|---|
| | ଖରିଫ | ରବି | ମୋଟ | ଖରିଫ | ରବି | ମୋଟ |
| ଧାନ | ୨୪୦୫୭ | ୧୦୬୬୦ | ୩୪୭୧୭ | ୪୧୯୨୮ | .. | .. |
| ଗହମ | .. | ୧୩୬୨୭ | ୧୩୬୨୭ | .. | .. | .. |
| ଡାଲିଜାତିୟ ବିହନ । | ୧୮୦୭ | ୪୭୪୦ | ୬୫୪୭ | ୩୭୧୯ | .. | .. |
| ତୈଳବୀଜ | ୬୩୩୪ | ୧୧୩୦୨ | ୧୮୬୩୬ | ୧୦୨୨୪ | .. | .. |
| ଅନ୍ୟାନ୍ୟ | ୮୫୫ | ୩୦ | ୮୮୫ | ୨୦୦୫ | .. | .. |
| ମୋଟ— | ୩୩୦୫୩ | ୪୦୨୮୯ | ୭୩୩୧୨ | ୫୭୯୨୬ | .. | .. |

### ସାର

ସମବାୟ ସମିତି, କୃଷି ଶିଳ୍ପ ନିଗମ, ଓଡ଼ିଶା ସମବାୟ ତୈଳବୀଜ ଉତ୍ପାଦକ ମହାସଂଘ ଓ ଘରୋଇ ବ୍ୟବସାୟୀ ସଂସ୍ଥା ଜରିଆରେ ରାସାୟନିକ ସାର ଯୋଗାଣର ସୁବନ୍ଦୋବସ୍ତ କରାଯାଉଛି ୧୯୮୪-୮୫ ବର୍ଷରେ ରାସାୟନିକ ସାର ବ୍ୟବହାରର ଅଗ୍ରଗତି ଓ ୧୯୮୫-୮୬ ବର୍ଷର ଲକ୍ଷ୍ୟଧାର୍ଯ୍ୟ ନିମ୍ନରେ ପ୍ରଦତ୍ତ ହେଲ ।

(ଉଦ୍ଭିଦ ଖାଦ୍ୟ ଆକାରରେ ୦୦୦' ଟନ୍)

| | ୧୯୮୪-୮୫ | | | ୧୯୮୫-୮୬ | | |
|---|---|---|---|---|---|---|
| | ଖରିଫ | ରବି | ମୋଟ | ଖରିଫ | ରବି | ମୋଟ |
| ଯବକ୍ଷାରଜାନ | ୩୭ | ୩୩ | ୭୦ | ୫୦ | ୫୦ | ୧୦୦ |
| ଫସଫରସ୍ | ୧୪ | ୧୩ | ୨୭ | ୧୭ | ୧୮ | ୩୫ |
| ପଟାସ୍ | ୮ | ୯ | ୧୭ | ୮ | ୧୭ | ୨୫ |
| ମୋଟ | ୫୯ | ୫୫ | ୧୧୪ | ୭୫ | ୮୫ | ୧୬୦ |

ରାସାୟନିକ ସାର ବ୍ୟବହାର ୧୯୮୩-୮୪ରେ ମୋଟ ପରିମାଣ ୧.୦୩ ଲକ୍ଷ ଟନ୍ ତୁଳନାରେ ଗତବର୍ଷ (୧୯୮୪-୮୫) ୧.୧୪ ଲକ୍ଷ ଟନ୍ ହୋଇଥିଲା । ଚଳିତ ବର୍ଷ ମୋଟ ୧.୬୦ ଲକ୍ଷ ଟନ୍ ବ୍ୟବହାର କରିବା ପାଇଁ ଲକ୍ଷ୍ୟ ନିର୍ଦ୍ଧାରିତ କରାଯାଇଛି । ଗତବର୍ଷ ସାର ଯୋଗାଣର ବ୍ୟବସ୍ଥା ପ୍ରାୟ ୨୦୦୦ ବିକ୍ରୟକେନ୍ଦ୍ର ଜରିଆରେ କରଯାଇଥିଲା । ଚଳିତ ବର୍ଷ ଅଧିକ ସଂଖ୍ୟାରେ ବିକ୍ରୟ କେନ୍ଦ୍ର ଖୋଲଯାଇ ଚାଷୀଙ୍କ ସାର ଚାହିଦା ମେଣ୍ଟାଇବା ପାଇଁ ଚେଷ୍ଟା କରାଯାଉଛି । ଏହା ବ୍ୟତୀତ ହେକ୍ଟର ପିଛା ସାର ବ୍ୟବହାର ହାରରେ ମଧ୍ୟ ଉନ୍ନତି ପରିଲକ୍ଷିତ ହୋଇଛି । ଷଷ୍ଠ ପଞ୍ଚବାର୍ଷିକ ଯୋଜନା ପ୍ରାରମ୍ଭରେ ଏହା ହେକ୍ଟର ପିଛା ୮.୨ କିଲୋଗ୍ରାମ ଥିଲା । ୧୯୮୫-୮୬ରେ ଏହାର ହେକ୍ଟର ପିଛା ବ୍ୟବହାର ୧୫ କିଲୋଗ୍ରାମ ହେବା ପାଇଁ ବ୍ୟାପକ ସଂପ୍ରସାରଣ ମାଧ୍ୟମରେ ପ୍ରଚେଷ୍ଟା କରାଯାଉଛି ।

## ରୋଗ ଓ ପୋକ ନିୟନ୍ତ୍ରଣ

ରୋଗ ଓ ପୋକର ଦାଉରୁ ଫସଲକୁ ବଞ୍ଚାଇବା ପାଇଁ କୃଷକମାନଙ୍କୁ ଆଗୁଆ ସତର୍କ ରହିବା ପାଇଁ ଓ ସମୟୋପଯୋଗୀ ପ୍ରତିଷେଧକ ବ୍ୟବସ୍ଥା ନେବା ପାଇଁ ରୋଗ ପୋକ ଆକ୍ରମଣର ଆଗୁଆ ନିର୍ଣ୍ଣୟ ବ୍ୟବସ୍ଥାର ସୁବନ୍ଦୋବସ୍ତ କରାଯାଉଛି । କୃଷକଙ୍କ ଚାହିଦା ଅନୁଯାୟୀ ବିଭିନ୍ନ ବିକ୍ରୟ କେନ୍ଦ୍ର ଜରିଆରେ ପୋକମରା ଔଷଧ ଯୋଗାଣର ବ୍ୟବସ୍ଥା କରାଯାଉଛି ।

## କୃଷି ଯନ୍ତ୍ରପାତି

କୃଷି କମଣ ପାଇଁ ଉନ୍ନତ ଯନ୍ତ୍ରପାତି, କ୍ଷେତ୍ର ପ୍ରଦର୍ଶନ ଓ ରିହାତି ଦରରେ ବିକ୍ରୟ ବ୍ୟବସ୍ଥା କରି ଲୋକପ୍ରିୟ କରାଯାଉଛି । ୧୯୮୪-୮୫ରେ ଉନ୍ନତ କୃଷି ଯନ୍ତ୍ରପାତିର ବିକ୍ରୟ ପରିମାଣ ନିମ୍ନରେ ପ୍ରଦତ୍ତ କରାଗଲା ।

| | ୧୯୮୪-୮୫ | ୧୯୮୫-୮୬ |
|---|---|---|
| | (ଆନୁମାନିକ) | (ଲକ୍ଷ୍ୟ) |
| | ଟଙ୍କା | ଟଙ୍କା |
| (କ) ଉନ୍ନତ କୃଷି ଯନ୍ତ୍ରପାତି ବିକ୍ରି ପରିମାଣ ଓ ମୂଲ୍ୟ | ୯,୦୪,୯୦୦ | ୧୦,୦୦,୦୦୦ |
| ବିଭିନ୍ନ ଯନ୍ତ୍ରପାତିର ସଂଖ୍ୟା | ୨୯,୩୭୫ | ୬୪,୫୦୦ |
| (ଖ) ଉନ୍ନତ କୃଷି ଯନ୍ତ୍ରପାତି ପ୍ରଦର୍ଶନ ଭ୍ରାମ୍ୟମାଣ ପ୍ରଦର୍ଶନ ସଂଖ୍ୟା । | ୧,୭୯୭ | .. |
| ସାଧାରଣ ପ୍ରଦର୍ଶନ ସଂଖ୍ୟା | ୩୭୦୬ | .. |

## ଧାନର ସମୂହ ତଳଘରା

୧୯୮୪-୮୫ ବର୍ଷରେ ୩୦୩୬ ହେକ୍ଟର ଆଗୁଆ ତଳିଘରା ଚାଷୀଙ୍କ ଜମିରେ କରାଯାଇ ଏହା କୃଷକଙ୍କ ମଧ୍ୟରେ ଲୋକପ୍ରିୟ କରାଯାଇଥିଲା । ଚଳତ ବର୍ଷ ମଧ୍ୟ ଏହା କେନ୍ଦ୍ର ସରକାରଙ୍କ ସଂପୂର୍ଣ୍ଣ ଆର୍ଥିକ ସହାୟତାରେ ୧୦୦୦ ହେକ୍ଟର ଜମିରେ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଛି । ଏହି ପ୍ରକ୍ରିୟା ଦ୍ୱାରା କୃଷକ ଆଗୁଆ ତଳି ଉତାରି ସହଜ ରୋଇବା ଦ୍ୱାରା ନିଜର ଧାନ ଫସଲକୁ ପୋକ ଦାଉରୁ ରକ୍ଷା କରି ପାରିଛନ୍ତି ।

## ବିହନ ପୁଡ଼ିଆ ବଣ୍ଟନ

ସାଧାରଣ ଯୋଜନା ତଥା ପ୍ରଧାନ ମନ୍ତ୍ରୀଙ୍କ ବ୍ୟାପକ କାର୍ଯ୍ୟକ୍ରମାନୁଯାୟୀ ବିଭିନ୍ନ କିସମର ସହଜ ପାଉଥିବା ଧାନ, ଡାଲି ଓ ତୈଳବୀଜ ଜାତୀୟ ବିହନ ପୁଡ଼ିଆମାନ ଚାଷୀଙ୍କ ମଧ୍ୟରେ ବିତରଣ କରାଯାଇଥିଲା । ଗତ ବର୍ଷରେ ବଣ୍ଟା ଯାଇଥିବା ବିହନ ପୁଡ଼ିଆର ପରିମାଣ ଏବଂ ଚଳିତ ବର୍ଷ ପାଇଁ ଲକ୍ଷ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

(ବଣ୍ଟା ଯାଇଥିବା ପୁଡ଼ିଆ ସଂଖ୍ୟା)

| | ଖରିଫ୍ | ରବି | ମୋଟ |
|---|---|---|---|
| (କ) ସାଧାରଣ କାର୍ଯ୍ୟକ୍ରମ:— | | | |
| ଧାନ | ୧୭୦,୦୦୦ | ୨୬,୧୭୧ | ୧୯୬,୧୭୧ |
| ଡାଲି ଜାତୀୟ | ୨୦,୫୦୦ | ୨୩,୩୦୦ | ୪୩,୮୦୦ |
| ତୈଳବୀଜ ଜାତୀୟ | ୪୨୦ | ୧୭,୩୯୦ | ୧୮,୩୧୦ |

ଚଳିତ ବର୍ଷ ଖରିଫ୍ ଋତୁରେ ୧ ଲକ୍ଷ ଧାନ ପୁଡ଼ିଆ ଏବଂ ସ୍ୱତନ୍ତ୍ର ଧାନ ଚାଷ କାର୍ଯ୍ୟକ୍ରମରେ ୬ ଲକ୍ଷ ୩୦ ହଜାର ଧାନ ପୁଡ଼ିଆ ଓ ୪୧୭୦୦ ଡାଲି ଜାତୀୟ ବିହନ ପୁଡ଼ିଆ ଏବଂ ୩୧୪୦୦ ତୈଳବୀଜ ପୁଡ଼ିଆ ବିତରଣ କରିବା ପାଇଁ ଲକ୍ଷ୍ୟ ରଖାଯାଇଛି ।

(ବଣ୍ଟା ଯାଇଥିବା ପୁଡ଼ିଆ)

| | ୧୯୮୪-୮୫ | | | ୧୯୮୫-୮୬ |
|---|---|---|---|---|
| | ଖରିଫ | ରବି | ମୋଟ | ଖରିଫ ଲକ୍ଷ୍ୟ |
| (ଖ) ପ୍ରଧାନ ମନ୍ତ୍ରୀଙ୍କ କାର୍ଯ୍ୟକ୍ରମ:— | | | | |
| ଡାଲିଜାତୀୟ ବିହନ | ୨୦,୩୧୬ | ୩୬,୦୭୨ | ୫୬,୩୮୮ | ୩୧,୪୦୦ |
| ତୈଳବୀଜ | ୨୬,୦୬୨ | ୩୦,୭୪୯ | ୫୬,୮୧୧ | ୩୧,୪୦୦ |

## ଏକଚକିଆ ଚାଷ କାର୍ଯ୍ୟକ୍ରମ

ବିଭିନ୍ନ ଫସଲରେ ଅଧିକ ଉତ୍ପାଦନ ପାଇଁ ଏକଚକିଆ ଚାଷର ଆୟୋଜନ କରାଯାଇଥାଏ । ଏଥିରେ ସମୟୋପଯୋଗୀ କୃଷି ସାମଗ୍ରୀଗୁଡ଼ିକର ଯୋଗାଣ ଓ ବୈଜ୍ଞାନିକ

ଉପଦେଶ ପ୍ରଦାନର ସୁବନ୍ଦୋବସ୍ତ କରାଯାଇଥାଏ । ଏକଚକିଆ ଚାଷର ଅନୁସରଣରେ ଫସଲ ଅମଳର ଫଳାଫଳ ଖୁବ୍ ଆଶାଜନକ ହୋଇଥିବାରୁ ଅଧିକ ଫସଲ ଉତ୍ପାଦନ ପାଇଁ ଚାଷୀମାନଙ୍କ ମଧ୍ୟରେ ଯଥେଷ୍ଟ ଆତ୍ମବିଶ୍ୱାସ ସୃଷ୍ଟି କରିଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୪-୮୫ରେ ଚାଷ କରାଯାଇଥିବା ଜମିର ପରିମାଣ ଓ ଚଳିତ ବର୍ଷ ପାଇଁ ଲକ୍ଷ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

(ଜମିର ପରିମାଣ ହେକ୍ଟରରେ)

ଏକଚକିଆ ଚାଷ କାର୍ଯ୍ୟକ୍ରମ

| ଫସଲର ନାମ | ୧୯୮୪-୮୫ (ହାସଲ) ଖରିଫ | ୧୯୮୫-୮୬ (ଲକ୍ଷ୍ୟ) ଖରିଫ |
|---|---|---|
| (୧) | (୨) | (୩) |
| ଧାନ | ୪,୨୧,୦୯୪ | ୪,୨୭,୦୦୦ |
| ମକା | ୧୫,୨୨୪ | ୧୬,୭୦୦ |
| ମାଣ୍ଡିଆ | ୧୬,୫୩୯ | ୧୬,୩୦୦ |
| ହରଡ଼ | ୧୧,୯୬୭ | ୧୨,୫୦୦ |
| (୧) | (୨) | (୩) |
| ମୁଗ | ୨୧,୭୧୦ | ୨୨,୮୦୦ |
| ବିରି | ୧୩,୪୬୮ | ୧୮,୨୦୦ |
| ଚିନାବାଦାମ | ୩୩,୫୮୭ | ୪୨,୭୦୦ |
| ନଳିତା | ୭,୦୫୦ | ୭,୦୦୦ |
| କପା | ୨୦୩ | ୮୦୦ |
| ଧାନ+ହରଡ଼ | ୧,୨୦୧ | .. |
| ଚିନାବାଦାମ+ହରଡ଼ | ୭୪୫ | .. |
| ମୋଟ ଜମିର ପରିମାଣ | ୫,୪୪,୮୦୮ | ୫,୬୪,୦୦୦ |

## ଅଧିକ ଅମଳକ୍ଷମ ଧାନ ଚାଷ

ଅଧିକ ଅମଳକ୍ଷମ କିସମର ଧାନ ବିହନ ବ୍ୟବହାର କରି ଧାନ ଉତ୍ପାଦନ ବୃଦ୍ଧି କରିବା ପାଇଁ ରିହାତି ଦରରେ ପରୀକ୍ଷିତ ବିହନ ବିକ୍ରୟ କେନ୍ଦ୍ର ଜରିଆରେ କୃଷକଙ୍କୁ ଯୋଗାଇ ଦିଆଯାଇଛି । ସମୂହ ଚଳିସରା ଯୋଜନା, ବିହନ ପୁଡ଼ିଆ ବଣ୍ଟନ ଯୋଜନା ଜରିଆରେ ତଥା କୃଷି ସଂପ୍ରସାରଣ ପ୍ରଚେଷ୍ଟାରେ ଅଧିକ ଅମଳକ୍ଷମ ଧାନ ଜମିର ଆୟତନ କ୍ରମଶଃ ବୃଦ୍ଧି ପାଉଛି । ବିଗତ ବର୍ଷମାନଙ୍କରେ ଆମର ଲକ୍ଷ୍ୟ ହାସଲ ଓ ୧୯୮୫-୮୬ ମସିହା ପାଇଁ ଲକ୍ଷ୍ୟ ନିମ୍ନରେ ପ୍ରଦତ୍ତ ହେଲ ।

(ଜମିର ପରିମାଣ '୦୦୦ ହେକ୍ଟର ଆକାରରେ)

| | |
|---|---|
| ୧୯୮୦-୮୧ | ୧,୨୧୪ |
| ୧୯୮୧-୮୨ | ୧,୧୭୦ |
| ୧୯୮୨-୮୩ | ୧,୩୬୩ |
| ୧୯୮୩-୮୪ | ୧,୪୨୭ |
| ୧୯୮୪-୮୫ (ଆନୁମାନିକ) | ୧,୪୪୭ |
| ୧୯୮୫-୮୬ (ଲକ୍ଷ୍ୟ) | ୧,୪୯୫ |

## ବଂଶସୂତ୍ରୀ କାର୍ଯ୍ୟକ୍ରମ

କୃଷି ଉତ୍ପାଦନରେ ସ୍ଥିରତା ରକ୍ଷା କରିବା ସଙ୍ଗେ ସଙ୍ଗେ ଡାଲି ଓ ତୈଳବୀଜଗୁଡ଼ିକର ଅମଳ ବୃଦ୍ଧି ପାଇଁ ରାଜ୍ୟରେ ବର୍ଷାଧାର ଉପରେ ନିର୍ଭରଶୀଳ ଅଞ୍ଚଳମାନଙ୍କରେ ଶୁଷ୍କ ଚାଷ ପ୍ରଣାଳୀ ପ୍ରବର୍ତ୍ତନ ଉପରେ ଗୁରୁତ୍ୱ ଦିଆଯାଉଛି । ରାଜ୍ୟର ୩୪୧ଟି କ୍ଷୁଦ୍ର ଅବବାହିକା ସୀମାରେ ଏହି ଉନ୍ନୟନ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଏଥିରେ ୫୦୦୦ ହେକ୍ଟର ଜମିର ଭୂମି ଉନ୍ନୟନ କାର୍ଯ୍ୟ ଆରମ୍ଭ କରିବା ପାଇଁ ଏହି ବର୍ଷ ଲକ୍ଷ୍ୟ ରଖାଯାଇଛି । ସେଥିରେ ୨୦୦ ଗୋଟି ଜଳଭଣ୍ଡାର ନିର୍ମାଣ କରାଯିବା ପାଇଁ କାର୍ଯ୍ୟକ୍ରମ ରଖାଯାଇଛି । ୧୯୮୪-୮୫ ଶେଷ ସୁଦ୍ଧା ପ୍ରାୟ ୫ ଲକ୍ଷ ହେକ୍ଟର ଡିପ ଜମିରେ ଧାନ ବଦଳରେ ଡାଲି ଓ ତୈଳବୀଜ ପ୍ରଭୃତି ମରୁଡ଼ି ସହଣୀ ଫସଲ ଚାଷ କରାଯାଇଥିଲା । ୧୯୮୫-୮୬ ବର୍ଷରେ ଏହି ୫ ଲକ୍ଷ ହେକ୍ଟରରେ ଡାଲି ଓ ତୈଳବୀଜ ଫସଲ ଚାଷର ଦୃଢ଼ୀକରଣ କରିବା ପାଇଁ କାର୍ଯ୍ୟକ୍ରମ ରଖାଯାଇଛି । ତା ଛଡ଼ା ୧୯୮୪-୮୫ ବର୍ଷରେ ୯୩,୫୩୦ ହେକ୍ଟର ଜମିରେ ମିଶ୍ରିତ ଫସଲ ଚାଷ କରାଯାଇଛି । ୧୯୮୫-୮୬ ବର୍ଷରେ ୧ ଲକ୍ଷ ହେକ୍ଟର ଜମିରେ ମିଶ୍ରିତ ଫସଲ ଚାଷ କରିବା ପାଇଁ ଲକ୍ଷ୍ୟ ରଖାଯାଇଛି । ଡାଲି ଓ ତୈଳବୀଜ ଉତ୍ପାଦନ ବୃଦ୍ଧି ନିମନ୍ତେ ନିମ୍ନଲିଖିତ କାର୍ଯ୍ୟକ୍ରମଗୁଡ଼ିକ ଗ୍ରହଣ କରାଯାଇଛି ।

୧ । ଡିପ ଜମିମାନଙ୍କରେ ବର୍ଷା ଋତୁରେ ଡାଲି ଓ ତୈଳବୀଜ ଚାଷର ପ୍ରସାର କରାଯିବ ।

୨ । ଅଣଜଳସେଚିତ ଧାନ ଜମିରେ ଧାନ କଟାପରେ ଓ ନଇକୂଳିଆ ପଠା ଜମିରେ ମାଟିରେ ବତର ଥିବା ଅବସ୍ଥାରେ ଡାଲି ଓ ତୈଳବୀଜ ଜାତୀୟ ଫସଲ ଚାଷର ପ୍ରସାର କରାଯିବ ।

୩ । ଉନ୍ନତ ବିହନ, ଫସଫରସ ସାର ଏବଂ ରାଇଜୋବିୟମ୍ କଲଚର ବ୍ୟବହାର କରି ଡାଲି ଜାତୀୟ ଫସଲର ଉତ୍ପାଦନ ବୃଦ୍ଧି କରିବା ।

୪ । ଯଥା ସମୟରେ ରୋଗ ଓ ପୋକର ନିୟନ୍ତ୍ରଣ କରି ଫସଲର ସୁରକ୍ଷା କରିବା ।

## ସ୍ୱତନ୍ତ୍ର ଧାନ ଋଣ କାର୍ଯ୍ୟକ୍ରମ

୧୯୮୪-୮୫ ବର୍ଷରେ କେନ୍ଦ୍ର ସରକାରଙ୍କ ସାହାଯ୍ୟରେ ଆମ ରାଜ୍ୟରେ ୭ ଗୋଟି ବ୍ଲକରେ ଏକ ଆଗୁଆ ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ୧୯୮୫-୮୬ ବର୍ଷରେ ଏହି କାର୍ଯ୍ୟକ୍ରମ ୬୩ଟି ବ୍ଲକରେ କରାଯିବା ପାଇଁ ସ୍ଥିର କରାଯାଇଅଛି । ଏହି କାର୍ଯ୍ୟକ୍ରମରେ କୃଷକଙ୍କୁ ନିମ୍ନଲିଖିତ ସୁବିଧାମାନ ଦିଆଯାଇ ଉକ୍ତ ବ୍ଲକରେ ଧାନ ଉତ୍ପାଦନର ହାର ବୃଦ୍ଧି କରାଯିବ । ଗତ ବର୍ଷ ୭ଟି ବ୍ଲକରେ ପ୍ରତ୍ୟେକ ବ୍ଲକ ପାଇଁ ପ୍ରାୟ ୧୦ ଲକ୍ଷ ଟଙ୍କାର ଖର୍ଚ୍ଚ ଅଟକଳ କରାଯାଇଥିଲା । ଏହି ବର୍ଷ ୬୩ଟି ବ୍ଲକରେ ପ୍ରତ୍ୟେକ ବ୍ଲକ ପାଇଁ ୪ ଲକ୍ଷ ଟଙ୍କା ଖର୍ଚ୍ଚ ଅଟକଳ କରାଯାଇଅଛି । ଏହି ବ୍ୟୟ ବରାଦର ଶତକଡ଼ା ୫୦ ଭାଗ କେନ୍ଦ୍ର ସରକାର ବହନ କରିବେ ।

| | ଲକ୍ଷ ଟଙ୍କା |
|---|---|
| ୧ । ୨ କେଜିଆ ଧାନ ବିହନ ମୁଣି ବିତରଣ (୦,୦୦୦ ଗୋଟି) । | ଟ ୧.୦୦ |
| ୨ । ଶତକଡ଼ା ୨୬ ଭାଗ ରିହାତି ମୂଲ୍ୟରେ ସାର ଯୋଗାଣ । | ଟ ୨.୦୦ |
| ୩ । ଶତକଡ଼ା ୨୫ ଭାଗ ରିହାତି ମୂଲ୍ୟରେ ପୋକମରା ଔଷଧ ଯୋଗାଣ । | ଟ ୦.୪୦ |
| ୪ । ଶତକଡ଼ା ୫୦ ଭାଗ ରିହାତି ମୂଲ୍ୟରେ ଉନ୍ନତ କୃଷି ଯନ୍ତ୍ରପାତି ଏବଂ ୨୫ ଭାଗ ରିହାତି ମୂଲ୍ୟରେ ସ୍ପ୍ରେୟାର ଯୋଗାଣ । | ଟ ୦.୫୦ |
| ୫. ପ୍ରଚାର | ଟ ୦.୧୦ |
| ମୋଟ | ଟ ୪.୦୦ |

## ଶୁଷ୍କ କୃଷି ଉନ୍ନୟନ ଯୋଜନା

କେନ୍ଦ୍ର ସରକାରଙ୍କ ଠାରୁ ଶତକଡ଼ା ୫୦ ହାରରେ ଅର୍ଥ ସାହାଯ୍ୟ ପାଇଁ ଏହି ଯୋଜନାଟି କୋରାପଟ ଜିଲ୍ଲାରେ ୧୯୮୪-୮୫ ବର୍ଷରୁ କାର୍ଯ୍ୟକାରୀ ହେଉଛି । ଏହି ବର୍ଷ ଉକ୍ତ ଯୋଜନା ମୋଟ ୧୪ ଲକ୍ଷ ଟଙ୍କାରେ କାର୍ଯ୍ୟକାରୀ କରାଯାଉଛି । ଏହି କାର୍ଯ୍ୟକ୍ରମରେ କୃଷକଙ୍କୁ କ୍ଷେତ୍ର ପ୍ରଦର୍ଶନ କରିଆରେ ଶୁଷ୍କ ଚାଷର ବୈଷୟିକ ପ୍ରଣାଳୀ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଶତକଡ଼ା ୫୦ ଭାଗ ରିହାତି ଦରରେ ବିହନ ତଥା ସାର ବୁଣା ଯନ୍ତ୍ର ଯୋଗାଇ ଦିଆଯିବ । ତା ଛଡା କ୍ଷେତ୍ର ପ୍ରଦର୍ଶନ ପାଇଁ ଆବଶ୍ୟକ ହେଉଥିବା ବିହନ, ସାର ଓ ପୋକମରା ଔଷଧ ରିହାତି ମୂଲ୍ୟରେ ଯୋଗାଇ ଦିଆଯିବ । ଏହି କାର୍ଯ୍ୟକ୍ରମ କୋରାପଟ ଜିଲ୍ଲାର ଚାଷୀଙ୍କ ମଧ୍ୟରେ ବିଶେଷ ଆଦୃତ ହୋଇପାରିଛି । ଯେଉଁ ଜମିରେ ଏଥି ପୂର୍ବରୁ କୃଷକମାନେ କୋଦ, ସୁଆଁ ଇତ୍ୟାଦି ଚାଷକରି କେବଳ ଟ୨୦୦—୩୦୦ ପାଉଥିଲେ ବର୍ତ୍ତମାନ ସେହି [illegible] ମାଣ୍ଡିଆ ଫସଲ କରି ହେକ୍ଟର ପ୍ରତି ଟ୮୦୦ ପାଉଛନ୍ତି ।

## ଜାତୀୟ ତୈଳବୀଜ ଉନ୍ନୟନ ପରିକଳ୍ପନା

ଏହି ପରିକଳ୍ପନାଟି କେନ୍ଦ୍ର ସରକାରଙ୍କର ପୂର୍ଣ୍ଣ [illegible] ସହାୟତାରେ ୧୯୮୪-୮୫ ଠାରୁ ଆମ ରାଜ୍ୟରେ କାର୍ଯ୍ୟକା[illegible] ହୋଇ ଆସୁଛି । ଚଳିତ ବର୍ଷ ଏହି ପରିକଳ୍ପନା ୧୪୯.୭୬ [illegible] ଟଙ୍କାରେ କାର୍ଯ୍ୟକାରୀ କରିବା ପାଇଁ ସ୍ଥିର କରାଯାଇଛି [illegible] ତୈଳବୀଜ (ଚିନାବାଦାମ, ଅଳସ, ରାଶି, ସୂର୍ଯ୍ୟମୁଖୀ ଓ ସୋରିଷ[illegible]) ଉତ୍ପାଦନ ବୃଦ୍ଧି ପାଇଁ ଏହି ପରିକଳ୍ପନାରେ ନିମ୍ନଲିଖିତ କାର୍ଯ୍ୟକ୍ର[illegible] ସ୍ଥିର କରାଯାଉଅଛି ।

୧ । ବିହନ ମୁଣି ବିତରଣ, (୨ ସାର ମୁଣି ବିତରଣ, ୩[illegible] ଶତକଡା ୫୦ ଭାଗ ରିହାତି ଦରରେ ପୋକମରା ଔଷଧ [illegible] ସ୍ପ୍ରେୟାର ଯୋଗାଣ, ୪) ଶତକଡା ୫୦ ଭାଗ ରିହାତି ଦରରେ କୃଷି ଯନ୍ତ୍ରପାତି ଯୋଗାଣ, ୫) ଶତକଡା ୫୦ ଭାଗ ରିହା[illegible] ଦରରେ ଫସ୍‌ଫେଟ୍ ସାର ଯୋଗାଣ, ୬) ହେକ୍ଟର ପିଛା ଟ୧୨୫ ଜଳସେଚନ ଖର୍ଚ୍ଚ ।

କୃଷି ସଂପ୍ରସାରଣ ଜରିଆରେ ନୂତନ ତୈଳବୀଜ ଉତ୍ପାଦ[illegible] କୌଶଳ ଅବଲମ୍ବନ କରି ବିଶେଷ କରି ଚିନାବାଦାମ, ରାଶି, ଅଳସି ପ୍ରଭୃତିର ଉତ୍ପାଦନ ବୃଦ୍ଧି କରାଯିବା ପାଇଁ ସ୍ୱତନ୍ତ୍ର ଚେଷ୍ଟା କରାଯିବ ।

ଗତବର୍ଷମାନଙ୍କରେ ଖାଦ୍ୟଶସ୍ୟ ଓ ଅର୍ଥକାରୀ ଫସଲର ଉତ୍ପାଦନ ଓ ୧୯୮୫-୮୬ ମସିହାର ଲକ୍ଷ୍ୟ ହାସଲ ସଂପର୍କରେ ନିମ୍ନରେ ଦିଆଗଲା ।

(ଉତ୍ପାଦନ '୦୦୦ ଟନରେ)

| ଖାଦ୍ୟଶସ୍ୟ | ୧୯୮୩-୮୪ (ପ୍ରକୃତ ପରିମାଣ) | ୧୯୮୪-୮୫ (ଆନୁମାନିକ) | ୧୯୮୫-୮[illegible] (ଲକ୍ଷ୍ୟ[illegible] |
|---|---|---|---|
| (କ) ଧାନ | ୫,୧୨୭ | ୪,୫୨୬ | ୫,୫୬୬ |
| (ଖ) ଗହମ | ୧୫୦ | ୧୫୦ | ୧୫୦ |
| (ଗ) ଅନ୍ୟାନ୍ୟ ଶସ୍ୟ | ୬୬୫ | ୬୭୫ | ୫୪୦ |
| (ଘ) ଡାଲିଜାତୀୟ | ୧,୦୫୯ | ୯୭୫ | ୨,୦୧୭ |
| ମୋଟ ଖାଦ୍ୟଶସ୍ୟ | ୭,୦୦୧ | ୬,୩୨୬ | ୭,୨୭୩ |

(ଉତ୍ପାଦନ '୦୦୦ ଟନ୍‌ରେ)

| ଖାଦ୍ୟଶସ୍ୟ | ୧୯୮୩-୮୪ (ପ୍ରକୃତ ପରିମାଣ) | ୧୯୮୪-୮୫ (ଆନୁମାନିକ) | ୧୯୮୫-୮୬ (ଲକ୍ଷ୍ୟ) |
|---|---|---|---|
| ୧ ୨ | ୩ | ୪ | ୫ |
| (ଙ) ତୈଳବୀଜ | ୭୩୬ | ୭୮୩ | ୮୮୯ |
| (ଚ) ନଳିତା ଓ କାଉଁରିଆ ('୦୦୦ ଗାଣ୍ଠି) | ୬୨୭ | ୭୫୫ | ୬୪୪ |
| (ଛ) କପା (୦୦୦ ଗାଣ୍ଠି) | ୨ | ୪ | ୬.୭ |
| (ଜ) ଆଖୁ | ୩,୬୬୦ | ୩,୭୦୦ | ୩,୭୩୦ |



୧୯୮୪-୮୫ ମସିହାରେ ମୌସୁମୀ ବର୍ଷାର ଶୀଘ୍ର ଅପସାରଣ ଓ ରବି ଋତୁରେ ସୀମିତ ଜଳସେଚନର ସୁବିଧା ଯୋଗୁଁ ମୋଟ ଖାଦ୍ୟଶସ୍ୟ ଉତ୍ପାଦନ ପୂର୍ବ ବର୍ଷ ତୁଳନାରେ କମ୍ ହୋଇଛି । ୧୯୮୫-୮୬ ମସିହା ଅନୁକୂଳ ପାଗ ପରିସ୍ଥିତିରେ ଆମର ଉତ୍ପାଦନ ଲକ୍ଷ୍ୟ ପୂରଣ କରାଯାଇ ପାରିବ ବୋଲି ଆଶା କରାଯାଏ ।

କୃଷି ନିର୍ଦ୍ଦେଶକ,
ଓଡ଼ିଶା, ଭୁବନେଶ୍ୱର



ଉତ୍ସାହୀ ଚାଷୀଙ୍କ କୋବି କ୍ଷେତ୍ର .....



# ବିଶ୍ୱଶାନ୍ତି ପାଇଁ ଗାନ୍ଧୀଙ୍କ ଆଦର୍ଶ

**ମୁଖ୍ୟମନ୍ତ୍ରୀ**

ଗତ ବର୍ଷ ଅକ୍ଟୋବର ୨ ତାରିଖ ଦିନ ଓଡ଼ିଶାର ରାଜଧାନୀ ସମେତ ପୁରପଲ୍ଲୀରେ ଗାନ୍ଧୀ ଜୟନ୍ତୀ ପାଳନ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପୌରୋହିତ୍ୟରେ ରାଜଧାନୀ ଭୁବନେଶ୍ୱରଠାରେ ମଧ୍ୟ ଏହି ଉତ୍ସବ ପାଳନ କରାଯାଇଥିଲା । ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ମୁଖ୍ୟମନ୍ତ୍ରୀ ଓଡ଼ିଶା ବିଧାନ ସଭା ପ୍ରାଙ୍ଗଣରେ ଅବସ୍ଥାପିତ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ପ୍ରତିକୃତିରେ ମାଲ୍ୟାର୍ପଣ କରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ଏ ଅବସରରେ ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶରତ ଚନ୍ଦ୍ର ରାଉତଙ୍କ ସମେତ ରାଜଧାନୀର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଗାନ୍ଧୀଜୀ ଓ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ଅମର ଶହୀଦମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଗାନ୍ଧୀ ଜୟନ୍ତୀର ତାତ୍ପର୍ଯ୍ୟ, ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ବାପୁଜୀଙ୍କର ଭୂମିକା ସଂପର୍କରେ ଜନସାଧାରଣଙ୍କୁ ସଚେତନ କରାଇ ଦେଇଥିଲେ ।

ସେ କହିଥିଲେ ମହାତ୍ମା ଗାନ୍ଧୀ ୧୦୬ ବର୍ଷ ତଳେ ଏ ଦେଶରେ ଜନ୍ମଗ୍ରହଣ କରିଥିଲେ ଏବଂ କାଳ ଯେତିକି ଅତୀତ ହୋଇଯାଉଛି ଆମେ ତାଙ୍କର ମହତ୍ତ୍ୱ ଏବଂ ଭାରତ ତଥା ପୃଥିବୀ ପ୍ରତି ଗାନ୍ଧୀଜୀଙ୍କର ମହନୀୟ ଦାନ ସଂପର୍କରେ ସେତିକି ଅନୁଭବ କରିପାରୁଛୁ । ଆଜି ପୃଥିବୀରେ ଏଭଳି କୌଣସି ଦେଶ ନାହିଁ ଯେଉଁଠାରେ କି ଗାନ୍ଧୀଜୀଙ୍କର ପ୍ରଶଂସା କରାଯାଉନାହିଁ । ଗାନ୍ଧୀଜୀଙ୍କ ଜୀବଦ୍ଦଶାରେ ଯେଉଁମାନେ ତାଙ୍କୁ ନୀତି ଓ ଆଦର୍ଶ ଦୃଷ୍ଟିରୁ ବିରୋଧ କରୁଥିଲେ ଆଜି ସେମାନେ ମହାତ୍ମା ଗାନ୍ଧୀଙ୍କ ପୂଜାରୀ । ମହାତ୍ମା ଗାନ୍ଧୀଙ୍କ ଆଦର୍ଶକୁ ବିଂଶ ଶତାବ୍ଦୀର ଶ୍ରେଷ୍ଠ ଆଦର୍ଶ ରୂପେ ଗ୍ରହଣ କରାଯାଇଛି ଏବଂ ବିଶ୍ୱଶାନ୍ତି ପାଇଁ ଏହା ସ୍ୱୀକୃତି ହୋଇଛି ।

ଗାନ୍ଧୀଜୀ ପୃଥିବୀର ଦଳିତ, ଅବହେଳିତ ଜନ ସମାଜର ମୁକ୍ତିଦାତା । ପୃଥିବୀ ପୃଷ୍ଠରେ ହଜାର ହଜାର ବର୍ଷ ପରେ ଏଭଳି ଜଣେ ଲେଖାଏଁ ମହାନ୍ ପୁରୁଷଙ୍କର ଆବିର୍ଭାବ ଘଟେ ଯାହାଙ୍କର ଆଦର୍ଶ ଚିରଦିନ ପାଇଁ ମାନବ ସମାଜ ନିମନ୍ତେ ପଥପ୍ରଦର୍ଶକ ହୋଇଥାଏ । ପରାଧୀନ ଭାରତରେ ଭାରତର ଜନସାଧାରଣ ବହୁ ଦୁଃଖ ଦୁର୍ଦ୍ଦଶାରେ କାଳାତିପାତ କରୁଥିଲେ । ପରାଧୀନତାର ଶୃଙ୍ଖଳାରେ ସେମାନେ ନାନା ଭାବେ ଶୋଷିତ ହେଉଥିଲେ । ମନୁଷ୍ୟକୁ ମାନବୋଚିତ ବ୍ୟବହାର ଦେବା ନିମନ୍ତେ ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରୁ ଫେରି ଆସିବା ପରେ ବିହାରର ଚମ୍ପାରଣଠାରେ ତାଙ୍କର ସତ୍ୟାଗ୍ରହ ଆରମ୍ଭ କରିଥିଲେ । ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର ଭାବେ ସେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନର ଡାକରା ଦେଇଥିଲେ । ଏସବୁ ଆନ୍ଦୋଳନ ସତ୍ୟ ଓ ଅହିଂସା ଉପରେ ଆଧାରିତ । ଶେଷରେ ଗାନ୍ଧୀଜୀଙ୍କ ଏହି ନୈତିକ ଉଦ୍ୟମ, ଅଧ୍ୟବସାୟ ଓ ଅହିଂସା ଆନ୍ଦୋଳନ ଯୋଗୁଁ ଭାରତ ସ୍ୱାଧୀନତା ଲାଭ

ଥିଲେ ! ଦେଶର ସଂହତି ନିମନ୍ତେ ତାଙ୍କୁ ଶେଷରେ ଆତ୍ମବଳି ଦେବାକୁ ପଡିଥିଲା । ଭାରତର ସ୍ୱାଧୀନତା ନିମନ୍ତେ ଗାନ୍ଧୀଜୀଙ୍କର ଅବଦାନ ଚିରଦିନ ଏହି ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଆଜି ପୃଥିବୀ ପୃଷ୍ଠରେ ଦେଶ ଦେଶ ମଧ୍ୟରେ ଆଣବିକ ଅସ୍ତ୍ରଶସ୍ତ୍ର ତୀବ୍ର ପ୍ରତିଯୋଗିତା ଚାଲିଛି । ଯେ କୌଣସି ମୁହୂର୍ତ୍ତରେ ଏହି ପ୍ରତିଯୋଗିତା ମଧ୍ୟରେ ପୃଥିବୀ ଧ୍ୱଂସ ହୋଇଯାଇପାରେ । ଏହି ପରିପ୍ରେକ୍ଷୀରେ ବିଶ୍ୱଶାନ୍ତି ପାଇଁ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ମାର୍ଗ ହିଁ ଏକମାତ୍ର ପନ୍ଥା, ଏହା ଅନସ୍ୱୀକାର୍ଯ୍ୟ । ଗାନ୍ଧୀଜୀଙ୍କ ଆଦର୍ଶକୁ ଗ୍ରହଣ କରି ଭାରତ ତା'ର ବୈଦେଶିକ ନୀତି ଅନୁସରଣ କରୁଥିବାରୁ ତା'ର ସମ୍ମାନ ବିଶ୍ୱ ଦରବାରରେ ବୃଦ୍ଧି ପାଇଛି । ଗାନ୍ଧୀଜୀ ଥିଲେ ଭାରତୀୟ ଜାତୀୟତାର ଜନକ ଓ ଅର୍ଥନୈତିକ ସ୍ୱରାଜ୍ୟର ପ୍ରବକ୍ତା । ଯେତେଦିନ ପର୍ଯ୍ୟନ୍ତ ଗରିବ ଲୋକମାନଙ୍କ ଅଶିକ୍ଷା, ଅଜ୍ଞତା ଓ ଦୁଃଖ ଦୁର୍ଦ୍ଦଶା ଦୂର ନ ହୋଇଛି ସେ ପର୍ଯ୍ୟନ୍ତ ସ୍ୱାଧୀନତାର ଅର୍ଥ କିଛି ନାହିଁ ବୋଲି ସେ ବରାବର କହିଆସୁଥିଲେ । ଦେଶରେ ସ୍ପୃଶ୍ୟ ଓ ଅସ୍ପୃଶ୍ୟତାର ଭେଦଭାବ ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରୁଥିଲେ । ଭାରତ ଯେ ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟିଆନ୍, ପାର୍ଶୀ ପ୍ରଭୃତି ଭିନ୍ନ ଧର୍ମାବଲମ୍ବୀମାନଙ୍କ ଦେଶ ଏହା ହେଉଛି ଗାନ୍ଧୀଜୀଙ୍କର ଅତୁଳନୀୟ ଅବଦାନ ।

ଦେଶର ସ୍ୱାଧୀନତା ପରେ କୁଟୀର ଶିଳ୍ପ, ହସ୍ତଶିଳ୍ପ, ଗ୍ରାମ୍ୟଶିଳ୍ପ ଜରିଆରେ ବେକାର ସମସ୍ୟା ସମାଧାନ କରଯାଇ ଏ ଦେଶର କୋଟି କୋଟି ଲୋକଙ୍କୁ ଅନ୍ନବସ୍ତ୍ର ଯୋଗାଇ ଦେବା ପାଇଁ ସେ ବାରମ୍ବାର ଜୋର ଦେଇ ଆସୁଥିଲେ । ସେଥିପାଇଁ ସେ ବିଦେଶୀ ବସ୍ତ୍ର ଓ ବିଦେଶୀ ଦ୍ରବ୍ୟ ବର୍ଜ୍ଜନ କରି ଖଦୀ ଓ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବା ଉପରେ ଜୋର ଦେଇ ଆସୁଥିଲେ । ତାଙ୍କ ମତରେ ଥିଲା ବଡ଼ ବଡ଼ ଶିଳ୍ପ ଶୋଷଣ ପୂର୍ଣ୍ଣ ଅର୍ଥନୀତି ଏବଂ ତାଦ୍ୱାରା ମଣିଷ ପଶୁରେ ପରିଣତ ହୋଇଯାଉଛି । ସେଥିପାଇଁ ଗାନ୍ଧୀଜୀ ସ୍ୱାବଲମ୍ବନ, ସ୍ୱାଭିମାନ ଏବଂ ସ୍ୱାଧୀନତା ଏହି ତିନି-ଗୋଟି ବିଷୟ ଉପରେ ଗୁରୁତ୍ୱ ଦେଇଥିଲେ । ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥା ଯଦି ଭାରତ ଅନୁସରଣ କରିବ, ତେବେ ଭାରତ ପୃଥିବୀରେ ଏକ ନୂତନ ନେତୃତ୍ୱ ଦେଇ ପାରିବ । ଯଦି ଭାରତ ତହିଁରୁ ବିଚ୍ୟୁତ ରହେ ତେବେ ତା'ର ଧ୍ୱଂସ ଅନିବାର୍ଯ୍ୟ । ତାଙ୍କର ଜନ୍ମଦିବସରେ ତାଙ୍କର ସେହି ଅମର ଆତ୍ମା ସବୁଦିନ ପାଇଁ ଆମମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହୁ ଏହା ହିଁ ଗାନ୍ଧୀଜୟନ୍ତୀ ଅବସରରେ ଆମର ତାଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ।

○○



"ଆମେ ବିଶ୍ୱାସ କରିବା କାହାକୁ ? ଆମ ପ୍ରଶଂସାକୁ ନା ଆମ ନିନ୍ଦାକୁ ? ଉଭୟେ ଭୁଲ ହୋଇପାରେ ତେବେ କ'ଣ ନିଜ କଥାର ମୂଲ୍ୟ ଆମେ ନିଜେ ନିରୂପଣ କରିବା ? ଏପରି କଲେ ବି ତ ବହୁତ ଭୁଲ ହୋଇ ଯାଇପାରେ । ଆମେ ଭଲ ନା ମନ୍ଦ ତା'ତ କେବଳ ଈଶ୍ୱରଙ୍କୁ ଜଣା । କିନ୍ତୁ ସେତ କିଛି କହନ୍ତି ନାହିଁ, ତେଣୁ ଆମ ବିଷୟରେ କିଏ କ'ଣ କହୁଛି ପୁଛିବା ନାହିଁ କି ଯାହା କହୁଛନ୍ତି ତାକୁ ଦେହକୁ ନେବା ନାହିଁ । ଏଇଟା ଶ୍ରେଷ୍ଠ ପନ୍ଥା । ଆମେ ଯାହା ସେଇଆ ଆମେ କ'ଣ ଅପର ମୁହଁରୁ ଶୁଣିଲେ ବା ସେ କଥାରେ ବିଶ୍ୱାସ କଲେ ଆମର କିଛି ଲାଭ ନାହିଁ, ନିଜ କର୍ତ୍ତବ୍ୟ କରିଯିବା ହିଁ ଆମର ଏକମାତ୍ର ଧର୍ମ ।"

(୯।୪।୧୯୪୫) ଗାନ୍ଧୀଜୀ

# ଭ୍ରମଣର ଆନନ୍ଦ ସନ୍ଧ

**ଓଡ଼ିଶାର ଜନଜୀବନ, ଧର୍ମଧାରା, ଶିଳ୍ପକଳା, ବନ୍ୟ ସଂପଦ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରନ୍ତୁ ।**

***ଓଡ଼ିଶା ଦର୍ଶନବେଳେ ଆପଣଙ୍କ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ବସବାସ ପାଇଁ ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମଙ୍କ ଦ୍ୱାରା ପରିଚାଳିତ ନିମ୍ନୋକ୍ତ ପାନ୍ଥ ନିବାସର ସୁଯୋଗ ନିଅନ୍ତୁ ।**

| ପାନ୍ଥ ନିବାସର ଅବସ୍ଥିତି | ବିଭିନ୍ନ ପ୍ରକାର କୋଠରୀର ଦୈନିକ ଭଡ଼ା | |
|---|---|---|
| ଭୁବନେଶ୍ୱର | .. ଦୁଇ ଶଯ୍ୟା | ଟ ୧୦୦'୦୦ |
| | ଦୁଇ ଶଯ୍ୟା (ଶୀତତାପ ନିୟନ୍ତ୍ରିତ) | ଟ ୧୫୦'୦୦ |
| | ପାରିବାରିକ କୋଠରୀ (ଚାରିଶଯ୍ୟା) | ଟ ୧୨୦'୦୦ |
| ପୁରୀ (୧) | .. ଦୁଇ ଶଯ୍ୟା (ଉପର ମହଲା) | ଟ ୧୦୦'୦୦ |
| | ଦୁଇ ଶଯ୍ୟା ବଡ଼ (ତଳ ମହଲା) | ଟ ୯୦'୦୦ |
| | ଦୁଇ ଶଯ୍ୟା (ଛୋଟ) | ଟ ୮୦'୦୦ |
| | ଦୁଇଶଯ୍ୟା (ନୂଆ) | ଟ ୧୦୦'୦୦ |
| | ପାରିବାରିକ କୋଠରୀ (ଚାରି ଶଯ୍ୟା) | ଟ ୧୨୦'୦୦ |
| ପୁରୀ (୨) (ମହୋଦଧି ନିବାସ) | .. ଦୁଇ ଶଯ୍ୟା | ଟ ୧୨୦'୦୦ |
| କୋଣାର୍କ | .. ଦୁଇ ଶଯ୍ୟା (ବଡ଼) | ଟ ୬୦'୦୦ |
| | ଦୁଇ ଶଯ୍ୟା (ଛୋଟ) | ଟ ୫୦'୦୦ |
| | ପାରିବାରିକ କୋଠରୀ (ଚାରି ଶଯ୍ୟା) | ଟ ୬୦'୦୦ |
| ବରକୁଳ | .. ଦୁଇ ଶଯ୍ୟା | ଟ ୫୦'୦୦ |
| | ଦୁଇ ଶଯ୍ୟା (ଶୀତତାପ ନିୟନ୍ତ୍ରିତ) | ଟ ୯୦'୦୦ |
| ରମ୍ଭା | .. ଦୁଇ ଶଯ୍ୟା (ବଡ଼) | ଟ ୬୦'୦୦ |
| | ଦୁଇ ଶଯ୍ୟା (ଛୋଟ) | ଟ ୫୦'୦୦ |
| | ଏକ ଶଯ୍ୟା | ଟ ୩୦'୦୦ |
| ତପ୍ତପାଣି | .. ଦୁଇ ଶଯ୍ୟା (ପୁରୁଣା ବ୍ଲକ୍) | ଟ ୭୫'୦୦ |
| | ଦୁଇ ଶଯ୍ୟା (ନୂଆ ବ୍ଲକ୍) | ଟ ୫୦'୦୦ |
| ଷବିପୁର | .. ଦୁଇ ଶଯ୍ୟା | ଟ ୫୦'୦୦ |
| | ପ୍ରଶସ୍ତ ଶଯ୍ୟାଗାର (Dormitory) (ପ୍ରତି ଶଯ୍ୟା ପାଇଁ) | ଟ ୧୫'୦୦ |
| ସମ୍ବଲପୁର | .. ଦୁଇ ଶଯ୍ୟା (ଶୀତତାପ ନିୟନ୍ତ୍ରିତ) | ଟ ୯୦'୦୦ |
| | ଦୁଇ ଶଯ୍ୟା | ଟ ୫୦'୦୦ |
| ନୃସିଂହନାଥ | .. ଦୁଇ ଶଯ୍ୟା | ଟ ୨୫'୦୦ |
| | ପ୍ରଶସ୍ତ ଶଯ୍ୟାଗାର (Dormitory) (ପ୍ରତି ଶଯ୍ୟା ପାଇଁ) | ଟ ୧୦'୦୦ |
| କଟକ | .. ଦୁଇ ଶଯ୍ୟା (ଶୀତତାପ ନିୟନ୍ତ୍ରିତ) | ଟ ୧୨୦'୦୦ |
| | ଦୁଇ ଶଯ୍ୟା | ଟ ୫୦'୦୦ |
| ପଥଗଡ଼ପୁର | .. ଏକ ଶଯ୍ୟା | ଟ ୧୮'୦୦ |
| ଡାଙ୍ଗିରିପୋଷି | .. ଏକ ଶଯ୍ୟା | ଟ ୧୮'୦୦ |



ଭୁବନେଶ୍ୱର ପାନ୍ଥନିବାସ

* ଅଧିକାଂଶ ପାନ୍ଥନିବାସମାନଙ୍କରେ ଜୁଲାଇଠାରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ୨୦ପର୍ସେଣ୍ଟ୍ ରିହାତି ଦେବାର ବ୍ୟବସ୍ଥା ରହିଛି ।

* ପୁରୀ, ଭୁବନେଶ୍ୱର ଓ କଟକସ୍ଥିତ ପାନ୍ଥନିବାସରୁ ଏହି ନିଗମଦ୍ୱାରା ପରିଚାଳିତ ସଂଦର୍ଶିତ ଭ୍ରମଣ ବ୍ୟବସ୍ଥାର ସୁଯୋଗ ନେଇ ପୁରୀ, କୋଣାର୍କ, ପିପିଲି, ସାକ୍ଷୀଗୋପାଳ, ଭୁବନେଶ୍ୱର ମନ୍ଦିର, ଖଣ୍ଡଗିରି–ଉଦୟଗିରି, ନନ୍ଦନକାନନ, ଚିଲିକା, ବ୍ରହ୍ମପୁର ଓ ଗୋପାଳପୁରକୁ ଦେଖନ୍ତୁ ।

* ଭୁବନେଶ୍ୱରରୁ ଏହି ନିଗମଦ୍ୱାରା ପରିଚାଳିତ ବିଭିନ୍ନ ଟୁର ପ୍ୟାକେଜ୍ ଭ୍ରମଣର ସୁଯୋଗ ନିଅନ୍ତୁ ।

* ସବିଶେଷ ବିବରଣୀ ପାଇଁ ପ୍ରତ୍ୟେକ ଜିଲ୍ଲା ତଥା କଲିକତା ଓ ଦିଲ୍ଲୀଠାରେ ଥିବା ପର୍ଯ୍ୟଟନ କାର୍ଯ୍ୟାଳୟ ସହ ଯୋଗାଯୋଗ ସ୍ଥାପନ କରନ୍ତୁ ।

ଓଡ଼ିଶା ପର୍ଯ୍ୟଟନ



# ଦଶ ମହାବିଦ୍ୟାରେ କାଳୀ

ଇଂଜିନୟର ରଘୁନାଥ ପାତ୍ର

ପରମ ବ୍ରହ୍ମତତ୍ତ୍ୱର ଜ୍ଞାନରୂପ ସାକ୍ଷାତକାରହିଁ ବିଦ୍ୟା । ଶ୍ରୁତି ଶାସ୍ତ୍ରର "ସା ବିଦ୍ୟା ଯା ବିମୁଚ୍ୟେତ୍", "ଅମୃତଂ ତୁ ବିଦ୍ୟା" ଓ" ବିଦ୍ୟା ଶକ୍ତିଃ ସମସ୍ତାନାଂ ଶକ୍ତିରିତ୍ୟଭିଧୀୟତେ" ଶ୍ଳୋକସ୍ଥ ବିଦ୍ୟା ମୋକ୍ଷ ପ୍ରଦାୟିନୀ, ଅମୃତ ତୁଲ୍ୟା ଓ ସର୍ବଶକ୍ତିମୟୀ ରୂପେ ପରିକୀର୍ତ୍ତିତା । ପୁନଶ୍ଚ ସା ବିଦ୍ୟା ପରମ ମୁକ୍ତେ ହେତୁଭୂତା ସନାତନୀ" ଶ୍ଳୋକସ୍ଥ ଉକ୍ତ ବିଦ୍ୟାହିଁ ପରମାରାଧ୍ୟ ଶକ୍ତି ଓ ଭକ୍ତିର ସାଧନ ଅଟେ । ଅଗ୍ନି ସହିତ ତାହାର ପ୍ରଜ୍ୱଳନ ଶକ୍ତି ଓତଃପ୍ରୋତ ଭାବେ ଜଡ଼ିତ ଥିଲାପରି ବ୍ରହ୍ମ ଓ ବିଦ୍ୟାର ସଂପର୍କ ଅବିଚ୍ଛିନ୍ନ ଓ ଘନିଷ୍ଠ ।

ନିଗମ ଓ ଆଗମ ଉଭୟ ଶାସ୍ତ୍ର ସୃଷ୍ଟି ପ୍ରତିପାଦନ କରୁଥିବାରୁ 'ବିଦ୍ୟା' ନାମରେ ଅଭିହିତ । ସୂର୍ଯ୍ୟ, ଚନ୍ଦ୍ର, ତାରକା, ପଶୁ, ପକ୍ଷୀ, ଦେବ ଓ ଦାନବ ସମସ୍ତେ ଉକ୍ତ ବିଦ୍ୟାର ପର୍ଯ୍ୟାୟଭୁକ୍ତ । ଉକ୍ତ ମହାବିଦ୍ୟା ବିଶ୍ୱର ସ୍ୱରୂପ, ଉତ୍ପତ୍ତି ଓ ବିନାଶାଦି ସମସ୍ତ ସମସ୍ୟାର ସଂପୂର୍ଣ୍ଣ ସମାଧାନ ପାଇଁ ପର୍ଯ୍ୟାପ୍ତ । ସତ୍ତ୍ୱ, ରଜ, ଓ ତମଗୁଣକୁ ଅତିକ୍ରମ କରି ପ୍ରଭୁତ୍ୱ ସ୍ଥାପିତ ହେଲେ ଉକ୍ତ ଦୈବୀ-ସଂପତ୍ତି ବା ବିଦ୍ୟାର ବିକାଶ ସାଧନ ହୁଏ ।

ବିଦ୍ୟା ସାଧାରଣତଃ ଦୁଇ ପ୍ରକାର,-ପରା ଓ ଅପରା । କେତେକଙ୍କ ମତରେ ଋକ୍, ଯଜୁ, ସାମ, ଅଥର୍ବ, କଳ୍ପ, ଛନ୍ଦ, ବ୍ୟାକରଣ ଓ ଜ୍ୟୋତିଷ ଶାସ୍ତ୍ର ଅପରାବିଦ୍ୟାର ଅନ୍ତ... ଏଥିରେ ଆତ୍ମତତ୍ତ୍ୱ ବ୍ୟତିରେକ ସମସ୍ତ ବୌଦ୍ଧିକ ଜ୍ଞାନର ... ମିଳିଥାଏ କିନ୍ତୁ ଯେଉଁ ଅବିନାଶୀ ଆତ୍ମତତ୍ତ୍ୱ ଦ୍ୱାରା ନାମ, ଗୋତ୍ର ଓ ଇନ୍ଦ୍ରିୟ ରହିତ ସୂକ୍ଷ୍ମାତିସୂକ୍ଷ୍ମ ନିର୍ବିକାର ପରମ... ଜ୍ଞାନୀ ପୁରୁଷ ଦର୍ଶନ କରେ ତାହାହିଁ ପରାବିଦ୍ୟା, ପରାଶ... ପରାବିଦ୍ୟା ଦ୍ୱାରା ଅବିନାଶୀ ବ୍ରହ୍ମଜ୍ଞାନ ଉଦିତ ହେବା ... ସତ୍ୟ, ପ୍ରେମ, ନ୍ୟାୟ, ଶ୍ରଦ୍ଧା, ମେଧା, ଧୃତି ଓ ସ୍ମୃତି ପ୍ର... ହୁଏ । ଅତଏବ ପରାଶକ୍ତି ହିଁ ବ୍ରହ୍ମର ପ୍ରକାଶମୟୀ ମହାବିଦ୍...

"ବିଦ୍ୟା ସମସ୍ତା ତବ ଦେବଂ ! ମେଦାଃ

ସ୍ତ୍ରୀୟଃ ସମସ୍ତାଃ ସକଳା ଜଗତ୍ସୁ ।"

( ସପ୍ତସତୀ ଚଣ୍ଡୀ

"ହେ ଦେବି ! ହେ ଜଗନ୍ମାତ ! ଏ ଅଖିଳ ବିଶ୍ୱବ୍ରହ୍ମାଣ୍ଡର ବିଦ୍ୟା... ତୁମର ଭେଦ ଓ ସମସ୍ତ ନାରୀ ଜଗତ ତୁମର ବିଭିନ୍ନ ରୂପ... ବିଶେଷ ମାତ୍ର ।"

ଉକ୍ତ ବ୍ରହ୍ମମୟୀ, ଆନନ୍ଦମୟୀ ପରାବିଦ୍ୟା ଦଶମହାବିଦ୍ୟା ନାମରେ ଅଭିହିତ । ଯଥା କାଳୀ, ତାରା, ଷୋଡଶୀ (ତ୍ରିପୁର ସୁନ୍ଦରୀ) ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ (ଅଲକ୍ଷ୍ମୀ), ବଗଳା (ବଗଳାମୁଖୀ), ମାତଙ୍ଗୀ ଓ କମଳା (ଲକ୍ଷ୍ମୀ) । ଉକ୍ତ ମହାମହାବିଦ୍ୟା ସିଦ୍ଧ ବିଦ୍ୟା ନାମରେ ସୁବିଦିତା ।

"କାଳୀ, ତାରା ମହାବିଦ୍ୟା ଷୋଡ଼ଶୀ, ଭୁବନେଶ୍ୱରୀ
ଭୈରବୀ, ଛିନ୍ନମସ୍ତାଚ ବିଦ୍ୟାଧୂମାବତୀ ତଥା ।
ବଗଳା ସିଦ୍ଧବିଦ୍ୟାଚ ମାତଙ୍ଗୀ କମଳାତ୍ମିକା
ଏତାଦଶ ମହାବିଦ୍ୟାଃ ସିଦ୍ଧବିଦ୍ୟା ପ୍ରକୀର୍ତ୍ତିତା ।"

—ଷ୍ମମୁଣ୍ଡା ତନ୍ତ୍ର

ପନଶ୍ଚ

"କାଳୀ, ତାରା ମହାବିଦ୍ୟା, ଷୋଡ଼ଶୀ, ଭୁବନେଶ୍ୱରୀ
ଭୈରବୀ, ଛିନ୍ନମସ୍ତାଚ ସୁନ୍ଦରୀ ବଗଳାମୁଖୀ .
ଧୂମାବତୀଚ ମାତଙ୍ଗୀ ନାମାନ୍ୟନ୍ୟାନି ବୈ ଶିବେ ।"

—ମହାଭାଗବତ ପୁରାଣ

ଉପରୋକ୍ତ ଦଶ ମହାବିଦ୍ୟା ବା ଦଶବିଧ ଶକ୍ତିଙ୍କ ପାଇଁ ବିବିଧ ଶିବଙ୍କ ସୃଷ୍ଟି । କାଳୀ—ମହାକାଳ, ତାରା—ଅକ୍ଷୋଭ୍ୟ ଷୋଡ଼ଶୀ—ପଞ୍ଚବକ୍ତ୍ର, ଭୁବନେଶ୍ୱରୀ—ତ୍ର୍ୟମ୍ବକ, ଭୈରବୀ—ଦକ୍ଷିଣମୂର୍ତ୍ତି, ଛିନ୍ନମସ୍ତା—କବନ୍ଧ, ମାତଙ୍ଗୀ—ମାତଙ୍ଗ, ବଗଳାମୁଖୀ ଏକମଖ ରୁଦ୍ର, କମଳା (ଲକ୍ଷ୍ମୀ)—ସଦାଶିବ ଶ୍ରୀବିଷ୍ଣୁ । ଧୂମାବତୀ ବିଧବା ଅଟନ୍ତି ।

କିନ୍ତୁ ଶକ୍ତି ସଂଗମ ତନ୍ତ୍ରାନୁସାରେ ଦଶମହାବିଦ୍ୟାଙ୍କର ନିମ୍ନୋକ୍ତ ଦଶବିଧ ଭୈରବ ଦୃଷ୍ଟିଗୋଚର ହୁଅନ୍ତି ଯଥା :— କାଳୀକା—ମହାକାଳ, ସୁନ୍ଦରୀ ବା ତ୍ରିପୁର ସୁନ୍ଦରୀ—ଲଳିତେଶ୍ୱର ତାରା—ଅକ୍ଷୋଭ୍ୟ, ଛିନ୍ନମସ୍ତା—ବିକରାଳକ, ଭୁବନେଶ୍ୱରୀ—ମହାଦେବ, ଧୂମାବତୀ—କାଳ ଭୈରବ, କମଳା—ନାରାୟଣ,

ଭୈରବୀ–ବଟୁକ, ମାତଙ୍ଗୀ–ମାତଙ୍ଗ, ବା ସଦାଶିବ ଓ ବଗଳା –ମୃତ୍ୟୁଞ୍ଜୟ ଇତ୍ୟାଦି ।

ବିଷ୍ଣୁ ଓ ଶକ୍ତି ଉପାସନା ମଧ୍ୟରେ ଅଭିନ୍ନତ୍ୱ ସୂଚାଇବାକୁ ଯାଇ କେତେକ ଗ୍ରନ୍ଥକାର ଦେବୀଙ୍କ ଦଶ ମହାବିଦ୍ୟାସହ ବିଷ୍ଣୁଙ୍କ ଦଶବତାରର ସମନ୍ୱୟ ସ୍ଥାପନ କରିଛନ୍ତି । ଏହା ବୈଷ୍ଣବ ଓ ଶାକ୍ତମାନଙ୍କ ମଧ୍ୟରେ ସଂକୀର୍ଣ୍ଣତା ଦୂର କରିବା ସଙ୍ଗେ ପୁରୁଷ ଓ ପ୍ରକୃତି ଉଭୟ ଉପାସନାର ବୈଶିଷ୍ଟ୍ୟ ପ୍ରତିପାଦନ କରିଥାଏ ।

ତୋଡ଼ଲ ତନ୍ତ୍ରର ଦଶମ ଉଲ୍ଲାସରେ, ଦଶ ମହାବିଦ୍ୟା ଭଗବାନ ବିଷ୍ଣୁଙ୍କର ଦଶାବତାର ରୂପେ ବର୍ଣ୍ଣିତ ଯଥା :–ତାରା–ମତ୍ସ୍ୟାବତାର, ବଗଳା–କୂର୍ମାବତାର, ଧୂମାବତୀ–ବରାହାବତାର, ଛିନ୍ନମସ୍ତା–ନୃସିଂହାବତାର, ଭୁବନେଶ୍ୱରୀ–ବାମନାବତାର, ମାତଙ୍ଗୀ–ରାମାବତାର, ତ୍ରିପୁର ସୁନ୍ଦରୀ–ଜାମଦଗ୍ନ୍ୟ, ଭୈରବୀ-ବଳଭଦ୍ର, ମହାଲକ୍ଷ୍ମୀ–ବୁଦ୍ଧ, ଦୁର୍ଗା–କଳ୍କୀ ଅବତାର ରୂପେ ବର୍ଣ୍ଣିତା । ସ୍ୱୟଂ ଭଗବତୀ କାଳୀ କୃଷ୍ଣମୂର୍ତ୍ତି ରୂପେ ପରିକୀର୍ତ୍ତିତା ।

" ତାରା ଦେବୀ ମୀନରୂପା ବଗଳା କୂର୍ମମୂର୍ତ୍ତିକା ।
ଧୂମାବତୀ ବରାହଃ ସ୍ୟାଚ୍ଛିନ୍ନମସ୍ତା ନୃସିଂହିକା ॥
ଭୁବନେଶରୀ ବାମନଃ ସ୍ୟାନ୍ମାତଙ୍ଗୀ ରାମମୂର୍ତ୍ତିକା ।
ତ୍ରିପୁରା ଜାମଦଗ୍ନ୍ୟଃ ସ୍ୟାଦ୍‌ବଳଭଦ୍ରସ୍ତୁ ଭୈରବୀ ॥
ମହାଲକ୍ଷ୍ମୀର୍ଭବେତ୍ ବୁଦ୍ଧୋ ଦୁର୍ଗାସ୍ୟାତ୍ କଳ୍କିରୂପିଣୀ ।
ସ୍ୱୟଂ ଭଗବତୀ କାଳୀ କୃଷ୍ଣମୂର୍ତ୍ତିଃ ସମୁଦ୍‌ଭବା ॥
ଇତି ତେ କଥିତଂ ଦେବ୍ୟବତାରାଂ ଦଶମେବହି ।
ଏତେସାଂ ପୂଜନାଦେବି ମହାଦେବ ସମୋ ଭବେତ୍ ॥"

(ତୋଡ଼ଲ ତନ୍ତ୍ର)

କିନ୍ତୁ 'ନିତ୍ୟତନ୍ତ୍ର' ମତରେ ଆଦ୍ୟାଶକ୍ତିଙ୍କ ଦଶମହାବିଦ୍ୟା ସହିତ ଭଗବାନ ବିଷ୍ଣୁଙ୍କ ଦଶାବତାରର ନିମ୍ନୋକ୍ତ ସାମଞ୍ଜସ୍ୟ ଦ୍ରଷ୍ଟବ୍ୟ । ଏହା ତୋଡ଼ଲ ତନ୍ତ୍ରଠାରୁ କେତେକ ସ୍ଥଳ ବିଶେଷରେ ପୃଥକ ଯଥା :–କାଳୀ–କୃଷ୍ଣ, ତାରା–ଶ୍ରୀରାମ, ଷୋଡ଼ଶୀ (ତ୍ରିପୁର ସୁନ୍ଦରୀ)–ଜାମଦଗ୍ନ୍ୟ, ଭୁବନେଶ୍ୱରୀ–ବାମନ, ବଗଳା-ମତ୍ସ୍ୟ, ଛିନ୍ନମସ୍ତା–ବରାହ, ଧୂମାବତୀ–କୂର୍ମ, ଭୈରବୀ–ନୃସିଂହ ମହାଲକ୍ଷ୍ମୀ–ବୁଦ୍ଧ ଓ ମାତଙ୍ଗୀ–କଳ୍କୀ ଅବତାର ଇତ୍ୟାଦି ।

" କୃଷ୍ଣସ୍ତୁ କାଳିକାଦେବୀ ଶ୍ରୀରାମ ତାରିଣୀ ତଥା
ଭାର୍ଗବଃ ଷୋଡ଼ଶୀ ବିଦ୍ୟା ବାମନୋ ଭୁବନେଶ୍ୱରୀ ।
ମତ୍ସ୍ୟସ୍ତୁ ବଗଳାଦେବୀ ବରହୋଛିନ୍ନ ମସ୍ତିକା
ଧୂମାବତୀ କୂର୍ମରୂପା ନୃସିଂହୋ ଭୈରବୀ ସ୍ୱୟମ୍ ।
ବୁଦ୍ଧରୂପା ମହାଲକ୍ଷ୍ମୀ ମାତଙ୍ଗୀ କଳ୍କୀ ରୂପିଣୀ
ଏତେ ଦଶ ମହାବିଦ୍ୟା ଅବତାରା ହରେର୍ଦ୍ଦଶା ॥ "

–ନିତ୍ୟ ତନ୍ତ୍ର

କେତେକ ଉତ୍ତର ଭାରତୀୟ ଶକ୍ତି ସାଧକଙ୍କ ମତରେ କାଳୀ–କୃଷ୍ଣ, ତାରା–ଶ୍ରୀରାମ, ଛିନ୍ନମସ୍ତୀ–ନୃସିଂହ, ଭୁବନେଶ୍ୱରୀ-ବାମନ, ବଗଳା–କୂର୍ମ, ଧୂମାବତୀ–ମତ୍ସ୍ୟ, ଷୋଡ଼ଶୀ–(ତ୍ରିପୁର ସୁନ୍ଦରୀ)–ଜମଦଗ୍ନ୍ୟ, ଭୈରବୀ–ବଳଭଦ୍ର, ଲକ୍ଷ୍ମୀ–ବୁଦ୍ଧ ଓ ଦୁର୍ଗା–କଳ୍କି ରୂପେ ଆଖ୍ୟାୟିତା । ମହାଦେବୀଙ୍କ ଦଶମହାବିଦ୍ୟା ଭଗବାନ ବିଷ୍ଣୁଙ୍କ ଦଶାବତାର ପରି ଭକ୍ତ ବା ସାଧକଙ୍କୁ ତ୍ରିତାପରୁ ରକ୍ଷା କରିଥାଆନ୍ତି ।

ଦଶ ମହାବିଦ୍ୟାର ଇହରି ବହୁ ମତବାଦ ଓ ପୌରାଣିକ ଆଖ୍ୟାୟିକା ବିଜଡ଼ିତ ।

(୧) ଦକ୍ଷ ପ୍ରଜାପତି ଯଜ୍ଞାନୁଷ୍ଠାନ ପାଇଁ ଅନ୍ୟାନ୍ୟ ଦେବଦେବୀଙ୍କୁ ଆମନ୍ତ୍ରଣ କରିଥିଲେ ମଧ୍ୟ ଭଗବାନ ଶଙ୍କରଙ୍କୁ ଉପେକ୍ଷା କରିଥିଲେ କିନ୍ତୁ ପତିପ୍ରାଣା ସତୀ ଯଜ୍ଞୋତ୍ସବ ଦେଖିବା-ପାଇଁ କୈଳାସପତିଙ୍କ ନିକଟରେ ପ୍ରବଳ ଇଚ୍ଛା ପ୍ରକାଶ କଲେ । ଶଙ୍କର ସତୀଙ୍କୁ ଯିବାପାଇଁ ଅନୁମତି ଦେଲେ ନାହିଁ । ସତୀ ଯିବାପାଇଁ ଜିଦ୍ ଧରି ବସିଲେ ଓ ଶିବଙ୍କୁ ବହୁ ଭୟଙ୍କର ରୂପ ପ୍ରଦର୍ଶନ କଲେ । ଶିବଙ୍କ ସମ୍ମୁଖ ଓ ଉତ୍ତର ଦିଗରେ କାଳୀ-ଊର୍ଦ୍ଧ୍ୱରେ ତାରା, ପୂର୍ବ ଦିଗରେ ଛିନ୍ନମସ୍ତା, ପଶ୍ଚିମରେ ଭୁବନେଶ୍ୱରୀ, ଦକ୍ଷିଣରେ ବଗଳା, ଅଗ୍ନି କୋଣରେ ଉଥାରୂଢ଼ା ବିଧବା ରୂପିଣୀ ଧୂମାବତୀ, ନୈଋତରେ କୋଣରେ ତ୍ରିପୁର ସୁନ୍ଦରୀ, ବାୟୁ କୋଣରେ ମାତଙ୍ଗୀ, ଐଶାନ୍ୟ କୋଣରେ ଷୋଡ଼ଶୀ ଓ ଅଧଃ ଦେଶରେ ଶିବଙ୍କ ସହ କଥୋପକଥନରତା ଭୈରବୀ ଆବିର୍ଭୂତା ହେଲେ । ମହାଦେବଙ୍କ ଉପରୋକ୍ତ ଦଶବିଧ ମୂର୍ତ୍ତି ଦଶମହାବିଦ୍ୟା ବା ସିଦ୍ଧବିଦ୍ୟା ନାମରେ ପ୍ରସିଦ୍ଧ । ଶିବ ଏତାଦୃଶ ଭୟଙ୍କର ରୂପ ଦେଖି ବିଚଳିତ ହୋଇ ପଳାୟନ କରିବା ସମୟରେ ମହାଦେବୀ ଦଶବିଧ (ଦଶମହାବିଦ୍ୟା) ରୂପରେ ଶିବଙ୍କ ଦଶ ଦିଗରେ ଆତ୍ମ ପ୍ରକାଶ କଲେ ।

"ଦଶଦିକ୍ଷୁ ମହାଭୀମା ଯା ଏତୋ ଦଶମୂର୍ତ୍ତୟଃ ।
ସର୍ବମାମେବ ମା ଶମ୍ଭୋ ଭୟଂ କୁରୁ ମହାମତେ ॥

(ମହା ଭାଗବତ ପୁରାଣ)

(୨) କିନ୍ତୁ ତନ୍ତ୍ର ଶାସ୍ତ୍ରରେ ମହାବିଦ୍ୟାର ଏହରି ଭିନ୍ନ ରୂପେ ବର୍ଣ୍ଣିତ । ଭଗବତୀ ପରାମ୍ବା ଗୌରତନ୍ୱୀ ହେଲେ ମଧ୍ୟ କଳିଯୁଗରେ କୃଷ୍ଣତ୍ୱପ୍ରାପ୍ତ ହୋଇ ନୀଳରୂପ ଧାରଣ କରିଛନ୍ତି ଓ ଅବଲୀଳାକ୍ରମେ ବାକ୍‌ଶକ୍ତି ପ୍ରଦାନ କରି ନୀଳ ସରସ୍ୱତୀ ନାମରେ ଅଭିହିତା । ମହାଦେବୀ ସମସ୍ତ ଭୂତ ଜଗତକୁ ପରିତ୍ରାଣ କରୁଥିବାରୁ ତାଙ୍କର ନାମ ତାରା ବା ତାରିଣୀ । ସକଳ ଭୁବନକୁ ପାଳନ କରୁଥିବାରୁ ଭୁବନେଶ୍ୱରୀ ଏବଂ ସୃଷ୍ଟି ସ୍ଥିତିକାରିଣୀ ଭୁବନେଶୀ ନାମରେ ଲୋକ ବିଦିତା । ଜଗନ୍ମୟୀ ଶ୍ରୀ ଦାନକରି ଶ୍ରୀବିଦ୍ୟା ଓ ତ୍ରିଗୁଣାତୀତା ହୋଇ ଷୋଡ଼ଶୀ । ଭଗବାନ ଭୈରବଙ୍କର ସ୍ତ୍ରୀ ରୂପେ ସମସ୍ତ ଦୁଃଖ ଓ ଯନ୍ତ୍ରଣା ଦୂର କରୁଥିବାରୁ ଦେବୀ ଭୈରବୀ । ତ୍ରିଶକ୍ତି ରୂପିଣୀ ମହାଦେବୀ ମସ୍ତକ ଛିନ୍ନ କରି ମୋକ୍ଷ ପ୍ରଦାୟିନୀ ହୋଇଥିବାରୁ ଛିନ୍ନମସ୍ତା । ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାନକାରୀ ଧୂମ୍ରବର୍ଣ୍ଣା ମହାମାୟା ଧୂମ୍ରାସୁର ବିନାଶ କରିଥିବାରୁ ତାଙ୍କ ନାମ ଧୂମାବତୀ । ବ'ରୁ ବାରୁଣୀଦେବୀ ଗ'ରୁ ସକଳ ସିଦ୍ଧି ପ୍ରଦାୟିନୀ ଓ ଲ'ରୁ ପୃଥିବୀ ଅର୍ଥାତ୍ ଚୈତନ୍ୟ-ରୂପିଣୀ ମହାମାୟା ବଗଳା' ନାମରେ ଅଭିହିତା । ମଦଶୀଳା ମହାଦେବୀ ମତଙ୍ଗ ଅସୁରକୁ ବିନାଶ କରି ଜଗତକୁ ଆପଦରୁ ଉଦ୍ଧାର କରିଥିବାରୁ ତାଙ୍କ ନାମ ମାତଙ୍ଗୀ । ମହାଦେବୀ ବୈକୁଣ୍ଠରେ ବାସକରି କମଳା ଓ ପାତାଳରେ

ବାସକରି ଲକ୍ଷ୍ମୀ ନାମରେ ଅଭିହିତା । ଉପରୋକ୍ତ ଦଶ-ମହାବିଦ୍ୟା ସିଦ୍ଧବିଦ୍ୟା ନାମରେ ପ୍ରସିଦ୍ଧ ।

"କଳୌ କୃଷ୍ଣତ୍ୱମାସାଦ୍ୟ ଶୁକ୍ଲାପୀ ନୀଳରୂପିଣୀ ।
ଲୀଳୟା ବାକ୍ ପ୍ରଦାତେତି ତେନ ନୀଳ ସରସ୍ୱତୀ ॥
ତାରକତ୍ୱାତ୍ ସଦା ତାରା ତାରିଣୀ ଚ ପ୍ରକୀର୍ତ୍ତିତା ।
ଭୁବନାନାଂ ପାଳକତ୍ୱାତ୍ ଭୁବନେଶୀ ପ୍ରକୀର୍ତ୍ତିତା ॥
ସୃଷ୍ଟିସ୍ଥିତିକାରୀ ଦେବୀ ଭୁବନେଶୀ ପ୍ରକୀର୍ତ୍ତିତା ।
ଶ୍ରୀ ଦାତ୍ରୀଚ ସଦାବିଦ୍ୟା ଶ୍ରୀବିଦ୍ୟା ଚ ପ୍ରକୀର୍ତ୍ତିତା ॥
ନିର୍ଗୁଣା ଚ ମହାଦେବୀ ଷୋଡ଼ଶୀ ପରିକୀର୍ତ୍ତିତା ।
ଭୈରବୀ ଦୁଃଖ ସଂହନ୍ତ୍ରୀ ଯମ ଦୁଃଖ ବିନାଶିନୀ ॥
କାଳ ଭୈରବ ଭାର୍ଯ୍ୟା ଚ ଭୈରବୀ ପରିକୀର୍ତ୍ତିତା ।
ତ୍ରିଶକ୍ତି କାଳଦା ଦେବୀ ଛିନ୍ନାଚୈବ ସୁରେଶ୍ୱରୀ ॥
ତ୍ରିଗୁଣା ଚ ମହାଦେବୀ ମୋହିନୀ ମୋକ୍ଷଦା ଧ୍ରୁବଂ ।
ଧୂମାବତୀ ମହାମାୟା ଧୂମ୍ରାସୁରନିଂସୂଦନୀ ॥
ଧୂମରୂପା ମହାଦେବୀ ଚତୁର୍ବର୍ଗ ପ୍ରଦାୟିନୀ ।
ଜଗନ୍ମାତା ଜଗଦ୍ଧାତ୍ରୀ ଜଗଦନୁପକାରିଣୀ ॥
'ବ' କାରେ ବାରୁଣୀ ଦେବୀ 'ଗ'କାରେ ସିଦ୍ଧିଦା କୃତା ।
'ଳ'କାରେ ପୃଥିବୀ ଚୈବ ଚୈତନ୍ୟ ମେ ପ୍ରକୀର୍ତ୍ତିତା ॥
ମାତଙ୍ଗୀ ମଦଶୀଳତ୍ୱାନ୍ମାତଙ୍ଗାସୁର ନାଶିନୀ ।
ସର୍ବାପତାରିଣୀ ଦେବୀ ମାତଙ୍ଗୀ ପରିକୀର୍ତ୍ତିତା ॥
ବୈକୁଣ୍ଠବାସିନୀ ଦେବୀ କମଳା ଚ ପ୍ରକୀର୍ତ୍ତିତା ।
ପାତାଳବାସିନୀ ଦେବୀ ଲକ୍ଷ୍ମୀରୂପା ଚ ସୁନ୍ଦରୀ ।
ଏକାଦଶମହାବିଦ୍ୟାଃ ସିଦ୍ଧବିଦ୍ୟାଃ ପ୍ରକୀର୍ତ୍ତିତା ॥

ତେବେ କେତେକ ତନ୍ତ୍ର ଶାସ୍ତ୍ରରେ ଅନ୍ୟ ଏକ ନାମାବଳୀ ଦୃଷ୍ଟିଗୋଚର ହୁଏ ଯଥା;—କାଳୀ, ତାରା, ମହାଦୁର୍ଗା, ତ୍ୱରୀତା, ଛିନ୍ନମସ୍ତା, ବାଗବାଦିନୀ, ଅନ୍ନପୂର୍ଣ୍ଣା ପ୍ରତ୍ୟଙ୍ଗୀରା, କାମାକ୍ଷା ଭାସିନୀ, ବାଳା, ମାତଙ୍ଗୀ ଏବଂ ଶୈଳବାସିନୀ । ବୃହତ୍ ଧର୍ମ ପୁରାଣରେ ବଗଳା ପରିବର୍ତ୍ତେ ବଗଳାମୁଖୀ ଓ କମଳା ପରିବର୍ତ୍ତେ ସୁନ୍ଦରୀ ନାମ ପ୍ରୟୋଗ କରାଯାଇଛି । ଅଭିନବ ଗୁପ୍ତଙ୍କର ତନ୍ତ୍ରାଲୋକରେ ଭଗବତୀଙ୍କର ତ୍ରୟୋଦଶ ରୂପ ବର୍ଣ୍ଣନା ଦେଖାଯାଏ ଯଥା :—ସୃଷ୍ଟିକାଳୀ, ସଂହାରକାଳୀ, ସ୍ଥିତିକାଳୀ, ରକ୍ତକାଳୀ, ସୁକାଳୀ, କାମକାଳୀ, ମୃତ୍ୟୁକାଳୀ, ରୁଦ୍ରକାଳୀ, ଭଦ୍ରାକାଳୀ, ମହାକାଳୀ, ମହାଭୈରବୀ, ଘୋର ଓ ଚଣ୍ଡକାଳୀ ଇତ୍ୟାଦି ।

କେତେକ ତନ୍ତ୍ର ବିଶାରଦ ଦଶ ମହାବିଦ୍ୟାଙ୍କୁ ସାଧନର ବିଭିନ୍ନ ଅବସ୍ଥା ରୂପେ ସ୍ୱୀକାର କରିଛନ୍ତି । ଲକ୍ଷ୍ମୀଠାରୁ କାଳୀ ପର୍ଯ୍ୟନ୍ତ ଜୀବର ଦଶାବସ୍ଥା । ସାଧକ ଧୀରେ ଧୀରେ ସମସ୍ତ ଭୋଗ ବାସନାକୁ ଅତିକ୍ରମ କରି ପରିଶେଷରେ କାଳୀ ତତ୍ତ୍ୱରେ ଉପସ୍ଥିତ ହୁଏ । କାଳୀ ତତ୍ତ୍ୱହିଁ ସାଧନାର ଚୂଡ଼ାନ୍ତାବସ୍ଥା ଓ ଏଥିରେ ପଦାର୍ପଣ କରିବା ମାତ୍ରେ ସାଧକର ସମସ୍ତ ପାର୍ଥିବ ବନ୍ଧନର ପରିସମାପ୍ତି ଘଟେ । ଅତଃ ଦଶ ମହା ସାଧକକୁ ନୀଚାବସ୍ଥାରୁ ଉତ୍ଥିତ କରି ସାଧନାର ସ ସ୍ଥିତିରେ ପହଞ୍ଚାଇ ଥାଆନ୍ତି । ତେଣୁ ବିଦ୍ୟା ପରମତତ୍ତ୍ୱ ସଂଜ୍ଞାରେ ଚିରମଂଗଳ କାରଣ ବିଦ୍ୟାଦ୍ୱାରା ପଶୁ ବଦ୍ଧଜୀବ ଜୀବନ୍ମୁକ୍ତ ହୋଇଥାଏ ।

ପ୍ରଖ୍ୟାତ ତନ୍ତ୍ର ବିଶାରଦ ସାରଜନ୍ ଉଡ୍‌ରଫ୍‌ଙ୍କ ମତ 'ଦଶ ମହାବିଦ୍ୟା' ମଧ୍ୟରେ କାଳିକା ସର୍ବୋଚ୍ଚ ଶୁଦ୍ଧ ସତ୍ତ୍ୱ ପ୍ରଧାନ, ନିର୍ବିକାର, ନିର୍ଗୁଣ ବ୍ରହ୍ମ ଓ ସ୍ୱରୂପ ପ୍ରକାଶି ଅଦ୍ୟାମୂର୍ତ୍ତି । କାମଧେନୁ ତନ୍ତ୍ର ମତରେ କୈବଲ୍ୟ ପ୍ରଦାୟି ତାରା ସତ୍ତ୍ୱ ଗୁଣାତ୍ମିକା ଓ ତତ୍ତ୍ୱବିଦ୍ୟା ପ୍ରଦାୟିନୀ କାର ତତ୍ତ୍ୱଜ୍ଞାନ ଦ୍ୱାରା କୈବଲ୍ୟ ପ୍ରାପ୍ତି ହୋଇଥାଏ। ଷୋଡ଼ଶ ଭୁବନେଶ୍ୱରୀ ଓ ଛିନ୍ନମସ୍ତା ରଜପ୍ରଧାନ ସତ୍ତ୍ୱଗୁଣାତ୍ମିକା ଏବ ଗୌଣ ମୁକ୍ତି ଓ ସ୍ୱର୍ଗ ପ୍ରଦାନକାରିଣୀ । ଧୂମାବତୀ, ବଗଳା କମଳା ଓ ମାତଙ୍ଗୀ ତମ ପ୍ରଧାନ ଶକ୍ତି ଅଟନ୍ତି ଓ ଅଭିଚାରି ଷଟ୍‌କର୍ମଗୁଡ଼ିକରେ ଉକ୍ତ ଦେବୀଙ୍କୁ ପ୍ରାର୍ଥନା କରାଯାଇଥାଏ ।

Of those forms Kaiika in the highest or Adyamurti as being Sudhasettvaguna Pradhana, Nirvikara, Nirguna Brahma suaruna Prakasika, as the kamadhenu Tantra says directly Kaivalyv dayini Tara is Sattvaguhatmika. Tattva Vidya dayini, for by Tattvajdana one attaine Kaivalya, Sodasi, Bhuhaneswari Cinnamasta are Rajapradhain Settvaqunatmrka, the givers of Gaunamukti and Suarpa. Bhumavati, Kamala, Magala, Mattangi are Tamapradhana whose action is invoked in the magical Satkarma "Sir John Woodroffe.

ଶିବ ପାର୍ବତୀ ଓ ଭୈରବ ଭୈରବୀ ଏକ ଓ ଅଭିନ୍ନ । ଶିବ ବ୍ରହ୍ମ ସଦୃଶ ଓ ପାର୍ବତୀ ସର୍ବଶକ୍ତିମୟୀ । ମହାତ୍ମା ଲାଓ—ତ୍ସେ ( Lao-tze ) ଙ୍କ ପ୍ରବର୍ତ୍ତିତ ତାଓ ଧର୍ମ (Taoism) ରେ ମଧ୍ୟ ଏତାଦୃଶ ଅନୁଶୀଳନ ଦ୍ରଷ୍ଟବ୍ୟ । ତାଙ୍କ ମତରେ ସର୍ବଶକ୍ତିମାନ ବ୍ରହ୍ମ ( Tas )ଙ୍କ ଠାରୁ ସମସ୍ତ ଶକ୍ତି ( Tei ) ର ସୃଷ୍ଟି ।

"It is Tai, the virtue or power which Tas encits from itself ("Ce principe se mit a emettre Tei sa vertu") that we should attribute what is apparently unconcious and material. But the two are one. Just as Siva the professor of power (Saktiman) and Sakti or power one, and this being so distinctions are apt to be lost".

(Sakti & Sakta P, 148)

ଶିବ ପାର୍ବତୀଙ୍କ କମନୀୟ ରୂପାକୃ ମୂର୍ତ୍ତି ସହିତ ବହୁ ଭୟଙ୍କର ଭୈରବ ଓ ଭୈରବୀ ମୂର୍ତ୍ତିର ଉପାସନା ତନ୍ତ୍ର ଶାସ୍ତ୍ରରେ ଦୃଷ୍ଟି ଗୋଚର ହୁଏ । ଦଶ ମହାବିଦ୍ୟା ଓ ନଟ ଧ୍ୱଂଳମ୍ବ ଭୈରବ ଏହାର ପ୍ରକୃଷ୍ଟ ଉଦାହରଣ । ଭୈରବ ଓ ଭୈରବୀଙ୍କର ଭୟଙ୍କର ମୂର୍ତ୍ତି ସାଧକଙ୍କ ମନରେ ଭୟ ସଂସ୍କାର

କରିବା ପରିବର୍ତ୍ତେ ଦେବତ୍ୱଭାବ ସୃଷ୍ଟି କରିଥାଏ । ସାଧକ କେବେହେଁ ସାଧ୍ୟଙ୍କୁ ରାକ୍ଷସ ଓ ରାକ୍ଷସୀ ରୂପେ ଦେଖେ ନାହିଁ । ପ୍ରକୃତିରୂପିଣୀ ଭଗବତୀଙ୍କର ଦଶମହାବିଦ୍ୟାରେ ଷୋଡ଼ଶୀ, କମଳା ଓ ଭୁବନେଶ୍ୱରୀ ଇତ୍ୟାଦି ଶାନ୍ତକାନ୍ତ ମୂର୍ତ୍ତି ସହିତ ଛିନ୍ନମସ୍ତା ଓ କାଳୀଙ୍କ ଭୀମରୂପ ଉପାସିତ ହେବାପରି ପୁରୁଷ ଉପାସନାରେ ବିଷ୍ଣୁଙ୍କ ଦଶାବତାର ମଧ୍ୟରେ ରାମ, ବଳରାମ, ବାମନ ଓ ବୁଦ୍ଧଙ୍କ ଶାନ୍ତକାନ୍ତ ମୂର୍ତ୍ତି ସହିତ ବରାହ, ନୃସିଂହାଦି ପ୍ରଳୟଙ୍କରୀ ଭୀମ ରୂପର ଉପାସନ ଦୃଷ୍ଟି ଗୋଚର ହୁଏ । ବୈଷ୍ଣବମାନଙ୍କର ଭୟଙ୍କର ନୃସିଂହଙ୍କ ସହିତ ଲକ୍ଷ୍ମୀ ଦେବୀଙ୍କ ଆରାଧନା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ସାଧକ ପାଇଁ ସାଧ୍ୟର ଭୀମକାନ୍ତ ଉଭୟରୂପ ଚିର ଈପ୍‌ସିତ, ଚିର ସୁନ୍ଦର । କେବଳ ହିନ୍ଦୁ ବା ବୌଦ୍ଧ ଧର୍ମ କାହିଁକି ବିଶ୍ୱ ଅନ୍ୟାନ୍ୟ ଧର୍ମରେ ବିଶ୍ୱନିୟନ୍ତାଙ୍କ କମନୀୟ ରୂପ ସଂଗେ ଉଗ୍ରରୂପର ଚିନ୍ତନ ଓ ମନନ ଦୃଷ୍ଟିଗୋଚର ହୁଏ । ଏପରିକି ଖ୍ରୀଷ୍ଟଧର୍ମାବଲମ୍ବୀଗଣ ଭଗବାନଙ୍କର ଶାନ୍ତକାନ୍ତ ରୂପ ସହିତ ଭୀମ ରୂପର ପରିକଳ୍ପନା କରିଥାଆନ୍ତି ।

I may point out that in Budhism the Devatas are given both peaceful (Zhi) and wrathful (Khro) aspects. The larter denotes the terrible (what in India is calles Bhairava) aspects of the Divinity, but docs not change Him or her in to Demon, at least in Budhist or Indians belief. Even tn the Christian God has both a terrible and bening aspect,"—(Sir John Woodroffe.)

ଅଗ୍ନି ଓ ତାର ଦାହିକା ଶକ୍ତି ପରସ୍ପର ଓତଃପ୍ରୋତ ଭାବେ ଜଡ଼ିତ, ଏକ ଅଭିନ୍ନ ଥିଲା ପରି ପୁରୁଷ ଓ ପ୍ରକୃତି ଏବଂ ବ୍ରହ୍ମ ଓ ବିଦ୍ୟା ଏକ ଓ ଅଭିନ୍ନ । ତେଣୁ, ଶୈବମାନଙ୍କର ଶିବପାର୍ବତୀ ଓ ଲିଙ୍ଗଶକ୍ତି; ବୈଷ୍ଣବମାନଙ୍କର ସୀତାରାମ, ରାଧାକୃଷ୍ଣ ଓ ଲକ୍ଷ୍ମୀନାରାୟଣ, ଶାକ୍ତମାନଙ୍କର ଭୈରବୀଭୈରବ ଓ ଗାଣପତ୍ୟଙ୍କର ଗଣେଶ ଓ ରିଦ୍ଧି ସିଦ୍ଧିଙ୍କ ଉପାସନା ପ୍ରଶଂସାର୍ହ । ସର୍ବାତ୍ମା, ସର୍ବେଶ୍ୱରୀ, ନିତ୍ୟରୂପୀ, ନିତ୍ୟାନନ୍ଦମୟୀ, ନିରଂକୁଶା, ନିର୍ଗୁଣା, ନିରାମୟା, ନିର୍ଲିପ୍ତା, ସର୍ବସାକ୍ଷୀ, ସର୍ବାଧାର ଓ ମୂଳ ପ୍ରକୃତି ସ୍ୱରୂପା ଭଗବତୀ ରୂପରହିତ ହୋଇ ମଧ୍ୟ ଭକ୍ତମାନଙ୍କ ପ୍ରୀତାର୍ଥେ ଅନୁଗ୍ରହ ପ୍ରଦର୍ଶନ ପୂର୍ବକ ବିଭିନ୍ନ ରୂପରେ ରୂପାୟିତା ।

"ସ୍ୱୟଂ ପୁମାଂଶ୍ଚ ପ୍ରକୃତି ସ୍ତାବଭିନ୍ନୌ ପରସ୍ପରମ୍ ।
ଯଥା ବହ୍ନିସ୍ତ ସ୍ୟ ଶକ୍ତିନଂଭିନ୍ନାଃସ୍ୟୈବ କୁତ୍ରଚିତ୍ ॥

ସର୍ବାତ୍ମ ସର୍ବଗଭବାନ୍ ସର୍ବକାରଣ କାରଣଃ ।
ସର୍ବେଶ୍ୱରଶ୍ଚ ସର୍ବାଦ୍ୟଃ ସର୍ବବିତ୍ ପରିପାଳକଃ ।
ନିତ୍ୟରୂପୀ ନିତ୍ୟଦେହୀ ନିତ୍ୟାନନ୍ଦୋ ନିରାକୃତିଃ ।
ନିରୋଂକୁଶୋ ନିରାଶଂକୋ ନିର୍ଗୁଣଶ୍ଚ ନିରାମୟଃ ॥
ନିର୍ଲିପ୍ତଃ ସର୍ବସାକ୍ଷୀ ଚ ସର୍ବାଧାରଃ ପରାତ୍ପରଃ ।
ମାୟାବିଶିଷ୍ଟଃ ପ୍ରକୃତିସ୍ତଦ୍ବିକାରାଶ୍ଚ ପ୍ରାକୃତାଃ ॥

ସାୟଂ ଶକ୍ତି ର୍ମହାମାୟା ସଚ୍ଚିଦାନନ୍ଦ ରୂପିଣୀ ।
ରୂପଂ ବିଭର୍ତ୍ତ୍ୟରୂପାଚ ଭକ୍ତାନୁଗ୍ରହ ହେତବେ ॥"

(ଦେବୀ ଭାଗବତ ପୁରାଣ)

ଆନନ୍ଦମୟୀ କରୁଣାମୟୀ ପ୍ରକୃତି ସ୍ୱରୂପା ଭଗବତୀଙ୍କର ଆଦ୍ୟ ମହାବିଦ୍ୟା ହେଉଛନ୍ତି କାଳୀ । ଦେବ ଦାନବ, ମାନବ, ଯକ୍ଷ ଓ କିନ୍ନର ସମସ୍ତେ ମହାକାଳୀଙ୍କଠାରୁ ସମ୍ଭୂତ । ସର୍ବାଧାରମୟୀ ଜଗଜ୍ଜନନୀଙ୍କ ଅନନ୍ତ ଘନ ଅନ୍ଧକାର ଗର୍ଭରେ ସଚରାଚର ବିଶ୍ୱବ୍ରହ୍ମାଣ୍ଡ ମହାପ୍ରଳୟରେ ଆଶ୍ରୟ ନିଏ । କାଳୀ ତନ୍ତ୍ରାନୁସାରେ ଭଗବତୀ କାଳୀ କରାଳ ବଦନା, ମୁକ୍ତକେଶୀ, ଚତୁର୍ଭୁଜା, ଶବାରୂଢ଼ା ପୀନୋନ୍ନତ ପୟୋଧରା ଓ ଘୋରରବା । ତାଙ୍କର ବାମ ଊର୍ଦ୍ଧ୍ୱ ହସ୍ତରେ ଖଡ୍‌ଗ, ନିମ୍ନ ହସ୍ତରେ ଛିନ୍ନ ମସ୍ତକ ଏବଂ ଦକ୍ଷିଣ ଊର୍ଦ୍ଧ୍ୱ ହସ୍ତରେ ଅଭୟ ଓ ନିମ୍ନ ହସ୍ତରେ ବରଦମୁଦ୍ରା । ଦେବୀ ମୁଣ୍ଡମାଳ ଶୋଭିତା, ଦିଗମ୍ବରୀ, ରୁଧିର ସ୍ନାତା, ମଦ୍ୟ ନିସେବିତ ବିଘୂର୍ଣ୍ଣିତ ନୟନା, ରୁଧିରାପ୍ଲୁତ ହାସ୍ୟ ବିକଶିତ ବିମ୍ବୋଷ୍ଠ ଓ ଆନନ୍ଦମୟୀ, ବ୍ରହ୍ମମୟୀ ।

"କରାଳ ବଦନାଂ ଘୋରାଂ ମୁକ୍ତକେଶୀଂ ଚତୁର୍ଭୁଜାଂ ।
କାଳିକାଂ ଦକ୍ଷିଣାଂ ଦିବ୍ୟାଂ ମୁଣ୍ଡମାଳାଂ ବିଭୋଷିତାଂ ॥
ଶବଚ୍ଛିନ୍ନ ଶିରଃ ଖଡ୍‌ଗବାମାଧୋର୍ଦ୍ଧ୍ୱ କରାମ୍ବୁଜାଂ ।
ଅଭୟ ବରଦଂ ଚୈବ ଦକ୍ଷିଣୋର୍ଦ୍ଧାଧଃ ପାଣିକମ୍ ॥
ମହାମେଘ ପ୍ରଭାଂ ଶ୍ୟାମାଂ ତଥାଚୈବ ଦିଗମ୍ବରୀମ୍ ।
କଣ୍ଠାବଶକ୍ତ ମୁଣ୍ଡାଳି ଗଳୋଦ୍ରୁଧିର ଚର୍ଚ୍ଚିତାମ୍ ॥"

(କାଳିକା ତନ୍ତ୍ର)

ତନ୍ତ୍ରଶାସ୍ତ୍ରରେ ବିଭିନ୍ନ କାଳୀଙ୍କର ଧ୍ୟାନ ଓ ରୂପ ବର୍ଣ୍ଣନ ଦୃଷ୍ଟିଗୋଚର ହୁଏ । ମହାକାଳ ସଂହିତା, ଜୟଦ୍ରଥ ଯାମଳ ଓ ତୋଡଲ ତନ୍ତ୍ରରେ ଦକ୍ଷିଣକାଳୀ, ଭଦ୍ରକାଳୀ, ଶ୍ମଶାନକାଳୀ, ଗୁହ୍ୟକାଳୀ, ସିଦ୍ଧକାଳୀ, ଚାମୁଣ୍ଡାକାଳୀ, ଧନକାଳୀ, ଚଣ୍ଡିକାଳୀ, ଶ୍ରୀକାଳୀ, କାଳୀ, ଡମ୍ବରକାଳୀ, ରକ୍ଷାକାଳୀ, ରମଣୀ କାଳୀ, ଈଶାନକାଳୀ, ପ୍ରଜ୍ଞାକାଳୀ, କାର୍ଯ୍ୟକାଳୀ ଓ ଜୀବକାଳୀଙ୍କ ନାମୋଲ୍ଲେଖ ଥିବାର ଜଣାଯାଏ ।

ଜଗନ୍ମାତା କାଳୀଙ୍କ ଉତ୍ପତ୍ତି ସମ୍ବନ୍ଧରେ ତନ୍ତ୍ରଶାସ୍ତ୍ରମାନଙ୍କରେ ବହୁବିଧ ଆଖ୍ୟାୟିକାର ଅବତାରଣା ହୋଇଛି । ନାରଦ ପଞ୍ଚରାତ୍ର (୩/୩)ରେ ଉଲ୍ଲେଖ ଅଛିଯେ ଦକ୍ଷସୁତା ସତୀ ପିତା ଦକ୍ଷପ୍ରଜାପତିଙ୍କ କଟୂକ୍ତି ସହ୍ୟ କରି ନପାରି ଯଜ୍ଞାନଳରେ ଆତ୍ମାହୁତି ଦେଲେ କିନ୍ତୁ ପରେ ବିଶ୍ୱବ୍ରହ୍ମାଣ୍ଡର କଲ୍ୟାଣ ପାଇଁ ମେନକା ଗର୍ଭରୁ ଜନ୍ମଲାଭ କରିଥିଲେ । ଉକ୍ତ ଜନ୍ମରେ ସତୀଙ୍କ ନାମ କାଳୀ ।

"ଦକ୍ଷଗୃହେ ସମୁଦ୍ଭୂତା ଯା ସତୀ ଲୋକ ବିଶ୍ରୁତା ।
କୁପିତା ଦକ୍ଷ ରାଜର୍ଷିଂ ସତୀ ତ୍ୟକ୍ତା କଳେବରଂ ॥
ଅନୁଗୃହ୍ୟଚ ମେନାୟାଂ ଜାତା ତସ୍ୟାସ୍ତ ସା ତଦା ।
କାଳୀ ନାମ୍ନେତି ବିଖ୍ୟାତା ସର୍ବେଶାସ୍ତେ ପ୍ରତିଷ୍ଠିତା ॥

ପୁନଶ୍ଚ କୈବଲ୍ୟ ପ୍ରଦାୟିନୀ ଭଗବତୀ ମାହେଶ୍ୱରୀ ଅବନ୍ତୀ ନଗରୀରେ ମହାରାତ୍ରୀ ଦିନ କାଳୀ ରୂପ ଧାରଣ କରିଥିବାରୁ ତାଙ୍କ ନାମ କାଳୀ ।

"ମହାରାତ୍ରି ଦିନେ ଅବନ୍ତ୍ୟାଂ ନଗର୍ଯ୍ୟାଂ ଜାତମେବ ତତ୍ ।
କାଳୀରୂପଂ ମହେଶାନୀ ସାକ୍ଷାତ କୈବଲ୍ୟ ଦାୟକଂ ॥"

(ସ୍ୱତନ୍ତ୍ର ତନ୍ତ୍ର)

ଭଗବତୀ କାଳୀ କାଳିକା, ବୟସା, ବୃଦ୍ଧା ସ୍ତ୍ରୀ, ନଂପୁସକ ଦେବ, ଦାନବ ଓ ମାନବ ନୁହଁନ୍ତି । ସେ ହେଉଛନ୍ତି ପରମବ୍ରହ୍ମ ସ୍ୱରୂପିଣୀ ସିଦ୍ଧରୂପା । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ପଞ୍ଚଭୂତର ଅସ୍ତିତ୍ୱ ନଥିବା ବେଳେ ଜଗନ୍ମୟୀ କାଳୀ ଏକମାତ୍ର କାରଣଭୂତା ଅଧିଷ୍ଠିତ ପରମବ୍ରହ୍ମ ଥିଲେ । ତେଣୁ ବିଶୁଦ୍ଧା,ଚିନ୍ମୟୀ, ସ୍ୱପ୍ରକାଶ-ମୟୀ, ଅମୃତତୁଲ୍ୟା, ଆନନ୍ଦରୂପା ଜଗଦ୍‌ବ୍ୟାପିକା ଭଗବତୀ ସାଧକାଧମର ଧ୍ୟାନାତୀତା, କଳ୍ପନାତୀତା ।

"ନ ବାଳା‌ଂ ତତ୍ ବୟସ୍କା ନ ବୃଦ୍ଧାନତସ୍ତ୍ରୀ ନଷଣ୍ଢଃ ପୁମାନ୍ନୈବ ଚତ୍ୱମ୍
ନଚତ୍ୱଂ ସୁରୋ ନା ସୁରୋ ନୋ ନରୋ ବା ତ୍ୱମେକା ପରବ୍ରହ୍ମ-
ରୂପେଣ ସିଦ୍ଧ ।

ସଦାନେବ ଧାତା ନ ବିଷ୍ଣୁରୁଦ୍ରୋ ନ କାଳୋ ନବା ପଞ୍ଚ ଭୂତାନି
ନାଶା ॥
ତଦା କାରଣୀଭୂତ ସତ୍ୱୈକମିତି ସତ୍ୱମେକା ପରବ୍ରହ୍ମ ରୂପେଣ
ସିଦ୍ଧା ॥

ବିଂଶୁଦ୍ଧାପରା ଚିନ୍ମୟୀ ସ୍ୱଚ୍ଛକାଶାମୃତାନନ୍ଦ ରୂପା ଜଗଦ୍‌ବ୍ୟାପିକା ଚ
ତଦେବ୍ୱିଧା ଯା ନିଜାକାର ମୂର୍ତ୍ତିଃ କିମସ୍ମାଭିରନ୍ତର୍ହି ଦି ଧ୍ୟାୟିତବ୍ୟା

କାଳୀଙ୍କ ତାତ୍ତ୍ୱିକ ପରିଚୟ:—

(କ) ଭଗବତୀ କାଳୀ ଶବାରୂଢ଼ା । ଶବର ଅଭିପ୍ରାୟ ବା ତାତ୍ପର୍ଯ୍ୟ କୌଣସି ପ୍ରାଣୀର ମୃତାବୟବ ନୁହେଁ, ବରଂ ଏହା ଶକ୍ତି-ହୀନ ବିଶ୍ୱର ଦ୍ୟୋତକ । ଶକ୍ତିହୀନ ବିଶ୍ୱରେ ଶକ୍ତି ବା ପ୍ରାଣ ସଞ୍ଚାର ହେଲେ ଶିବତ୍ୱ ଉପଲବ୍ଧି ହୋଇଥାଏ । ଶକ୍ତି ବିଚ୍ୟୁତ ହେଲେ ଶିବ ଶବତୁଲ୍ୟ । "ଶିବୋପି ଶବତାଂ ଯାତି ତ୍ୱୟା ଶକ୍ତ୍ୟା ବିବର୍ଜ୍ଜିତାଃ । "ପୁନଚଃ ଶକ୍ତିହୀନ ଅବସ୍ଥା ପ୍ରଳୟର ଦ୍ୟୋତକ । ମହାକାଳୀଙ୍କ ସମ୍ବନ୍ଧ ପ୍ରଳୟ ରାତ୍ରିର ମଧ୍ୟକାଳ ସହିତ ହୋଇ-ଥିବାରୁ ସେ କୃଷ୍ଣବର୍ଣ୍ଣା ବିଶ୍ୱବିନାଶକାରୀ କାଳରାତ୍ରୀ । ଶବ ରୂପକ ବିଶ୍ୱହିଁ ତାଙ୍କର ଆଧାର । ତେଣୁ ଚିଦାନନ୍ଦମୟୀ ମହାକାଳୀ ଶବ ଉପରେ ଦଣ୍ଡାୟମାନା ।

(ଖ) ସଂହାର କର୍ତ୍ତୀରୂପେ ଜଗନ୍ମୟୀ ଭୟଙ୍କର ହେବା ସ୍ୱାଭାବିକ । ତେଣୁ କାଳୀଙ୍କ ରୂପ ବା ଆକୃତି ଅତୀବ ଭୟାନକ ।

(ଗ) ମହାଦେବୀ ଖଡ୍‌ଗ, ନରମସ୍ତକ ଓ ବରାଭୟ ପରି-ଶୋଭିତା । ଖଡ୍‌ଗ ବିନାଶ ଶକ୍ତିର ଦ୍ୟୋତକ । ନରମୁଣ୍ଡ ବିନଷ୍ଟ ଜୀବଜଗତର ପ୍ରତୀକ । ବରାଭୟ ମୁଦ୍ରା ଭକ୍ତ ବା ସାଧକମାନଙ୍କ ପ୍ରତି ଅପାର ବରାଭୟ ବା କରୁଣାର ସଂକେତ । ଜଗନ୍ମୟୀ ସଂହାର କର୍ତ୍ତୀରୂପେ ଯେତିକି ରୁଦ୍ରରୂପା, ସ୍ନେହମୟୀ ସନ୍ତାନବତ୍ସଳା ରୂପେ ସେତିକି କାରୁଣ୍ୟମୟୀ ।

(ଘ) ସକଳ ବିଶ୍ୱବ୍ରହ୍ମାଣ୍ଡ ବ୍ରହ୍ମରୂପା କାଳୀଙ୍କର ପରିଧାନ ବସ୍ତ୍ର । ତେଣୁ ମହାପ୍ରଳୟରେ ସଚରାଚର ବିଶ୍ୱଜଗତ ବିନଷ୍ଟ ହୋଇଗଲେ ଦେବୀ ବସ୍ତ୍ରରହିତା ପୂର୍ବକ ନଗ୍ନାବସ୍ଥା ଧାରଣ କରନ୍ତି । ତେଣୁ କାଳୀ ଉଲଗ୍ନ ।

(ଙ) ଭଗବତୀ ପରାମ୍ବା ଶ୍ମଶାନବାସିନୀ ଅର୍ଥାତ୍ ଭକ୍ତ ବା ସାଧକର ହୃଦୟ ଶ୍ମଶାନ ବୈରାଗ୍ୟରେ ଜର୍ଜ୍ଜରିତ ନହେଲେ କରୁଣାମୟୀ ବ୍ରହ୍ମମୟୀଙ୍କ ଆବିର୍ଭାବ ଅସମ୍ଭବ । ସମସ୍ତ ରିପୁଙ୍କୁ ବିଜୟକରି ଆସୁରୀ ଭାବରେ ବିନାଶପୂର୍ବକ ନିଶ୍ଚିତ ... ସମସ୍ତ ଜଗତ ମୋହମାୟାରହିତ ଶ୍ମଶାନତୁଲ୍ୟ ବୋଧହେବ ... ଭଗବତୀଙ୍କର ବରାଭୟ ପ୍ରାପ୍ତି ହେବ ।

ସାଧାରଣତଃ ମହାଦେବୀ ଦକ୍ଷିଣକାଳୀ, ଶ୍ୟାମାକାଳୀ, ଭଦ୍ରକାଳୀ ଓ ଶ୍ମଶାନକାଳୀ ରୂପେ ସ୍ଥାନ, କାଳ ଓ ପାତ୍ର ଭେଦରେ ପୂଜା ପାଉଥାଆନ୍ତି । କାଳୀଙ୍କ ଉତ୍ପତ୍ତି ବୈଦିକ ଯୁଗରେ ହୋଇଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ଦଶ ମହାବିଦ୍ୟାର ଅନ୍ୟତମ ମହାବିଦ୍ୟାରୂପେ ଏକାଦଶ କିମ୍ବା ଦ୍ୱାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିବା ଅନୁମେୟ । ଏକାଦଶ ଶତାବ୍ଦୀର 'ମହାପୁରାଣ'ରେ ଦଶମହାବିଦ୍ୟାର ଧ୍ୟାନ ଓ ପୂଜାପଦ୍ଧତିର ରଚନା ସର୍ବପ୍ରଥମ । ତେଣୁ କାଳୀଙ୍କ ଉପାସନା ଏକାଦଶ ଶତାବ୍ଦୀର ସନ୍ଧ୍ୟାକାଳୀନ ବା ଦ୍ୱାଦଶ ଶତାବ୍ଦୀର ପ୍ରାତଃକାଳୀନ ହୋଇପାରେ ।

ଶ୍ରୀକ୍ଷେତ୍ର ପୁରୀରେ ଅଧୁନା ଦେବୀ ଜଗତରେ ପ୍ରସିଦ୍ଧି ଲାଭ କରିଥିବା ବାଲିସାହିର ଶ୍ୟାମାକାଳୀ ଏକଦା' ପୁରାତନ ରାଜ-ପ୍ରାସାଦରେ ତଦାନୀନ୍ତନ ରାଜବଂଶର ଇଷ୍ଟଦେବୀରୂପେ ପୂଜା ପାଉଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ ସୂର୍ଯ୍ୟବଂଶୀ ପ୍ରତିଷ୍ଠାତା କପିଳେନ୍ଦ୍ର ଦେବ ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ଭୁବନେଶ୍ୱର ପୁରରେ ଉଗ୍ରତାରା ଓ ଶ୍ରୀକ୍ଷେତ୍ର ରାଜନବରରେ ଶ୍ୟାମାକାଳୀଙ୍କ ପ୍ରତିଷ୍ଠା କରିଥିଲେ । ମୂର୍ତ୍ତି ଗଠନ–ଶୈଳୀ ଦୃଷ୍ଟିରୁ ପ୍ରତିମାର ନିର୍ମାଣକାଳ ଚତୁର୍ଦ୍ଦଶ କିମ୍ବା ପଞ୍ଚଦଶ ଶତାବ୍ଦୀ ହୋଇଥିବା ଅନୁମେୟ । ତେବେ ଏତାଦୃଶ ମୂର୍ତ୍ତି ସମଗ୍ର ଭାରତ ବର୍ଷରେ ବିରଳ । ନବଯୌବନ ସଂପନ୍ନା ତ୍ରିନୟନା ଦେବୀ ଭଗବାନ ଶଙ୍କରଙ୍କ ବକ୍ଷ ଓ ଦକ୍ଷିଣ ପଦୋପରି ଦଣ୍ଡାୟମାନା । ଚତୁର୍ଭୁଜା ଦେବୀଙ୍କ ବାମ ଊର୍ଦ୍ଧ୍ୱ କରରେ ଖଡ୍‌ଗ, ନିମ୍ନରେ ନରମସ୍ତକ ଓ ଦକ୍ଷିଣ ଊର୍ଦ୍ଧ୍ୱ କ .ରେ ଅଭୟ ଓ ନିମ୍ନରେ ବରମୁଦ୍ରା ।

ବୃହତ୍ ତନ୍ତ୍ରଶାସ୍ତ୍ରରେ ଭଦ୍ରକାଳୀଙ୍କ ଧ୍ୟାନ ଦ୍ରଷ୍ଟବ୍ୟ । କ୍ଷୁଧାତୁରା ଦେବୀ କ୍ଷୀଣତନ୍ୱୀ ଓ ମୁକ୍ତକେଶୀ । ଚକ୍ଷୁ କୋଟର ଗତ ଓ ମଳିନମୁଖମଣ୍ଡଳ । ଅତୃପ୍ତା ରୋରୁଦ୍ୟମାନା ଦେବୀ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଗର୍ଭସାତ କରିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି । ମହାଦେବୀଙ୍କ ହସ୍ତଦ୍ୱୟ ଜ୍ୱଳନ୍ତ ଅଗ୍ନିଶିଖାସମ ପାଶଯୁଗଳ ପରି-ଶୋଭିତ । ଦନ୍ତପଂକ୍ତୀ ଜମ୍ବୁ ଫଳ ସଦୃଶ କୃଷ୍ଣବର୍ଣ୍ଣ ।

"କ୍ଷୁତ୍‌କ୍ଷାମା କୋଟରାକ୍ଷିମସି ମଳିନମୁଖୀ ମୁକ୍ତକେଶୀ ରୁଦନ୍ତୀ ।
ନାହଂତୃପ୍ତା ବଦନ୍ତୀ ଜଗଦଖିଳମିଦଂ ଗ୍ରାସମେକଂ କରୋମି ।
ହସ୍ତାଭ୍ୟାଂ ଧାରୟନ୍ତୀ ଜ୍ୱଳନାନଳଶିଖା ସନ୍ନିଭଂ ପାଶଯୁଗ୍ମ ।
ଦନ୍ତୈର୍ଯେଜଂବୁ ଫଳାଭୈଃ ପରିହରତୁ ଭୟପାତୁ ମାଂ ଭଦ୍ରକାଳୀ ॥

ଅନ୍ୟ ଏକ ଧ୍ୟାନରୁ ଦେବୀ ବର୍ଷଣୋନ୍ମୁଖ ମେଘବର୍ଣ୍ଣ ସଦୃଶା, ଚତୁର୍ଭୁଜା, ତ୍ରିନୟନା, ଊର୍ଦ୍ଧ୍ୱକେଶୀ ଓ ଭୟଙ୍କରୀ । ବିଶାଳ ଚତୁର୍ଭୁଜରେ ପରଶୁ, ଡମରୁ, ତ୍ରିଶୂଳ ଓ କପାଳ ।

ଭଦ୍ରକର ଭଦ୍ରକାଳୀ ଲଳିତାସନା ଓ ଚତୁର୍ଭୁଜା । ଦକ୍ଷିଣ ପାର୍ଶ୍ୱସ୍ଥ ଊର୍ଦ୍ଧ୍ୱ ହସ୍ତରେ ଖଡ୍‌ଗ ଓ ନିମ୍ନ ହସ୍ତରେ ଜପମାଳା (ବେରଦା) ଓ ବାମ ପାର୍ଶ୍ୱସ୍ଥ ଊର୍ଦ୍ଧ୍ୱ ହସ୍ତରେ ଢାଲ ଓ ବାମଜଂଘ ବା ଉରୁ ନିପତିତ ନିମ୍ନ ହସ୍ତରେ ଏକ ଶିଶୁ । ଭଦ୍ରକାଳୀ ନାମରୁ ଦେବୀଙ୍କର

ହୋଇଥିବା ସ୍ୱାଭାବିକ କିନ୍ତୁ କାଳୀ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଥିବାପରି ମନେ ହୁଅନ୍ତି ନାହିଁ । ସେହିପରି ଶ୍ରୀମନ୍ଦିର ବେଢାର ବେଢାକାଳୀ ମେଢାଙ୍କରେ ଭଦ୍ରକାଳୀ) କରାଳ ବଦନା, ଦ୍ୱିଭୁଜା ଓ ତ୍ରିନୟନା । ଦକ୍ଷିଣ ହସ୍ତରେ ଉତ୍ତୋଳିତ ଖଡ୍‌ଗ ଓ ବାମହସ୍ତରେ ରକ୍ତ ଖର୍ପର । ଦେବୀ ବ୍ୟାଘ୍ର ଚର୍ମୋପରି ପଦ୍ମାସନା, ଲେଲିହାନ ଲୋଳଜିହ୍ୱା ଓ ଶୁଭ୍ର ଦନ୍ତପନ୍ତୀ ଓ ହର୍ଷୋତ୍‌ଫୁଲ୍ଲ ମୁଖମଣ୍ଡଳ । ବର୍ତ୍ତମାନ ପୂଜା ପାଉଥିବା ମୂର୍ତ୍ତି ବହୁ ପରବର୍ତ୍ତୀ କାଳୀନ । ପ୍ରକୃତମୂର୍ତ୍ତି ପ୍ରଚ୍ଛଦ-ଭାଗେ ଗୋପନୀୟ କରି ରଖାଯାଇଛି । କିମ୍ବଦନ୍ତୀରୁ ଜଣାଯାଏ ଯେ ଭଦ୍ରକାଳୀଙ୍କ ପୂର୍ବତନ ମୂର୍ତ୍ତି ଅତି କରାଳ ଓ ଭୟପ୍ରଦ ହେତୁ ଲୋକମାନେ ରାତ୍ରିକାଳରେ ଯାତାୟତ କରିବାକୁ ଭୟକଲେ ଓ ପରବର୍ତ୍ତୀ କାଳରେ ଦେବୀଙ୍କ ଏତାଦୃଶ ମୂର୍ତ୍ତିର ପରିକଳ୍ପନା କରାଯାଇଛି । ଅନ୍ୟ କେତେକଙ୍କ ମତରେ କଳାପାହାଡ଼ ଶ୍ରୀମନ୍ଦିର ଆକ୍ରମଣ କରିବା ସମୟରେ ବହୁ ଦେବ ଦେବୀ ବିଗ୍ରହ ନଷ୍ଟକରି ଦେଇଥିଲେ । ତେଣୁ ଭଦ୍ରକାଳୀଙ୍କ ପ୍ରଚ୍ଛଦପଟର ଗୋପନୀୟ ମୂର୍ତ୍ତି ଦେବୀଙ୍କ ପୂର୍ବତନ ବିଗ୍ରହର ଭଗ୍ନ ମୂର୍ତ୍ତିମାତ୍ର । ତେବେ ବର୍ତ୍ତମାନର ବେଢାକାଳୀ ବା ଭଦ୍ରକାଳୀ କାଳୀ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଥିବାପରି ମନେ ହୁଅନ୍ତି ନାହିଁ ।

ତନ୍ତ୍ରପୀଠ ଉଡ୍ଡୀୟାନର ରକ୍ଷାକର୍ତ୍ତୀରୂପେ ଶ୍ରୀମନ୍ଦିରର ଦଶ-ଦିଗରେ ଦଶଟି ଭୈରବୀ ପୀଠ ବିଦ୍ୟମାନ । ତନ୍ମଧ୍ୟରୁ ଶ୍ରୀମନ୍ଦିରର ଦକ୍ଷିଣପୂର୍ବ କୋଣ ବା ଐଶାନ୍ୟ କୋଣର ରକ୍ଷାକର୍ତ୍ତୀ ବା ଅଧି-ଷ୍ଠାତ୍ରୀ ଦେବୀ ହେଉଛନ୍ତି ଦକ୍ଷିଣକାଳୀ । କେତେକ ଶକ୍ତି ଉପାସକ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଯଥାକ୍ରମେ ତାରା, ଭୁବନେଶ୍ୱରୀ ଓ ଦକ୍ଷିଣକାଳୀଙ୍କ ଆଖ୍ୟା ପ୍ରଦାନ କରିଥାଆନ୍ତି ।

ସଂପ୍ରାଦକ 'ମହାପ୍ରଭୁ'
ବୃନ୍ଦାବନ ଧାମ
ଲୋକନାଥ ରୋଡ୍ ପୁରୀ—୭୫୨୦୦୧

## ସ୍ତ୍ରୀଙ୍କର ରୂପଯୌବନକୁ
## ଅତୁଟ ରଖିବାର ଅବ୍ୟର୍ଥ ଉପାୟ କ'ଣ ଜାଣନ୍ତି କି

# ସନ୍ତାନ ଜନ୍ମରେ ବ୍ୟବଧାନ ରକ୍ଷା କରି ଛୋଟ ପରିବାରଟିଏ ଗଢ଼ିବା

ଆପଣ ଯଦି ଏଥିପାଇଁ ଆଗ୍ରହୀ, ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ରରେ ପରାମର୍ଶ କରି ସ୍ତ୍ରୀଙ୍କୁ ଲୁପ୍ କିମ୍ବା କପର୍-ଟି ଦେଇ ଦିଅନ୍ତୁ ।

ଏହା ଏକ ନିରାପଦ ଓ ନିର୍ଭରଯୋଗ୍ୟ ଗର୍ଭ ନିରୋଧକ ପଦ୍ଧତି । ପୁଣି ସନ୍ତାନ ଇଚ୍ଛା କଲେ, ଏହାକୁ ସହଜରେ ବାହାର କରି ଦିଆଯାଇ ପାରିବ ।

## ଶିଶୁମାନଙ୍କୁ
## ସୁସ୍ଥ ଓ ନିରାପଦ ରଖିବେ କିପରି ?

କେବଳ ରୋଗ ପ୍ରତିଷେଧକ ଟୀକା ନେଇ ଏହା ସହଜରେ ସମ୍ଭବ ହୋଇପାରିବ । ରାଜ୍ୟର ଯେ କୌଣସି ସ୍ୱାସ୍ଥ୍ୟକେନ୍ଦ୍ର ବା ଉପକେନ୍ଦ୍ରରେ ପ୍ରଧାନ ଶିଶୁ ରୋଗଗୁଡ଼ିକର ପ୍ରତିଷେଧକ ଟୀକା ଯୋଗାଇ ଦିଆଯାଉଛି ।

ଆପଣଙ୍କ ଶିଶୁଟି ଟୀକା ନେଲେ ଆପଣ ନିଜେହିଁ ନିଶ୍ଚିନ୍ତ ରହିବେ ।

ପରିବାର କଲ୍ୟାଣ ନିର୍ଦ୍ଦେଶାଳୟ
ଭୁବନେଶ୍ୱର






କେନ୍ଦୁଝର ଜିଲ୍ଲାର ଘଟପୁର ଗ୍ରାମରେ ଡି.ଆର.ଡି.ଏ.
କାର୍ଯ୍ୟକ୍ରମରେ ଉପକୃତ ବ୍ୟକ୍ତିଙ୍କ ସହିତରେ ମୁଖ୍ୟମନ୍ତ୍ରୀ



ରଘୁନାଥପୁର ବ୍ଲକରେ ଯୁବ ବିହାର ପ୍ରତିଷ୍ଠାପକ ସାମାଜିକ ବନୀକରଣ ସମ୍ପର୍କରେ
ଗୋଷ୍ଠୀ ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜେନା ଓ ଜଙ୍ଗଲ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମହାପାତ୍ର ଆଲୋଚନା
କରୁଛନ୍ତି ।



ଶ୍ରୀଯୁକ୍ତ ଦୁବେଙ୍କ ଦ୍ୱାରା ପଲ୍ଲୀବସ୍ତ୍ର କେନ୍ଦ୍ର ଉଦ୍‌ଘାଟନ ।
DUBEY OPENS PALLI VASTRA UNIT

C.M. LAYING BASE OF BRIT HOUSING COLONY AT NILAKANTHANAGAR



ନୀଳକଣ୍ଠ ନଗର ଶିଳାନ୍ୟାସ, ଭୁବନେଶ୍ୱର, ୨୨.୯



INTERVIEWING I.R.D.P. beneficiary

ଆଇ.ଆର.ଡି.ପି. ସାଫଲ୍ୟ ସମ୍ପର୍କରେ ସାକ୍ଷାତକାର



ଓଡ଼ିଶା ପ୍ରଶାସନ ସେବା ପଦାଧିକାରୀଙ୍କ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ



ଝାରସୁଗୁଡ଼ା ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ଦ୍ୱାରା ସୂତାକଳ ଉଦ୍‌ଘାଟନ ....



ଝାରସୁଗୁଡ଼ା ଠାରେ ସାହା ସ୍ପିନିଂ ମିଲ୍ସ ପ୍ରାଇଭେଟ୍ ଲିମିଟେଡ୍ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଓ ପାର୍ଲିଆମେଣ୍ଟ ସଦସ୍ୟା ଶ୍ରୀମତୀ ପଟ୍ଟନାୟକ ।





ଆନ ସଙ୍ଘ ପ୍ରାଙ୍ଗଣରେ ଗାନ୍ଧୀ ଜୟନ୍ତୀ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଉଦ୍‌ବୋ



ଶ୍ରମ ତନ୍ତୁ ଶିଳ୍ପନିଗମର ଗାନ୍ଧୀ ଜୟନ୍ତୀ
ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ.



ଗାନ୍ଧୀ ଜୟନ୍ତୀ ଉପଲକ୍ଷେ
ଶିଶୁ ସୁରକ୍ଷା ଭବନ ଠାରେ ଅନୁଷ୍ଠିତ କବିତା
ପ୍ରତିଯୋଗିତାର କୁମାରୀ ଲୁଣୀଙ୍କୁ
ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ପୁରସ୍କାର ବିତରଣ









କେନ୍ଦ୍ରାପଡ଼ା ଠାରେ ଅଖିଳ ଓଡ଼ିଶା ଝୋଟ ଉତ୍ପାଦନକାରୀ ସମ୍ମିଳନୀରେ ପାର୍ଲିଆମେଣ୍ଟ ସଦସ୍ୟା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ଉଦ୍‌ବୋଧନ ....

# ପଶ୍ଚିମ ଓଡ଼ିଶାରେ ଶକ୍ତି ଉପାସନା

ଶ୍ରୀ ଦୋଳ ଗୋବିନ୍ଦ ବିଶୀ

ଗତବର୍ଷ ପୂଜା ସଂଖ୍ୟା ଉତ୍କଳ ପ୍ରସଙ୍ଗରେ "ପଶ୍ଚିମ ଓଡ଼ିଶାର ଶକ୍ତି ଉପାସନା" ଶୀର୍ଷକରେ କେତେକ ଲୌକିକ ଦେବଦେବୀଙ୍କ ଉପରେ ପରିଚୟାତ୍ମକ ଓ ସ୍ୱରୂପ ବିଶ୍ଳେଷଣାତ୍ମକ ଆଲୋଚନା କରାଯାଇଥିଲା । ଏଠାରେ ଏହି ପ୍ରବନ୍ଧର ଦ୍ୱିତୀୟ ଭାଗରେ ପୁଣି କେତେକ ଲୌକିକ ଦେବଦେବୀଙ୍କର ପରିଚୟ ପ୍ରଦାନ କରାଗଲା । ଏ ସମସ୍ତ ଶକ୍ତିରୂପାମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଆଦିବାସୀ ପରଂପରାରେ ସାର୍ବଜନୀନ ଦେବୀ ଓ ଗ୍ରାମଦେବୀ ରୂପେ ପୂଜା ପାଆନ୍ତି । କେତେକ ଦେବୀ ପୁଣି ନିମ୍ନସ୍ତରୀୟ ଓ ଭୂତପ୍ରେତ ସ୍ଥାନୀୟ, କେତେକ ଦେବୀଙ୍କର ପ୍ରସିଦ୍ଧି ସାର୍ବଜନୀନ ହେଲେ ମଧ୍ୟ କେତେକ ସ୍ଥଳେ ଏକ ନିର୍ଦ୍ଦିଷ୍ଟ ଗ୍ରାମ ବା କେତୋଟି ଗ୍ରାମରେ ଗ୍ରାମଦେବୀରୂପେ ତାଙ୍କର ଏକାଧିପତ୍ୟ ରହିଛି । ଏସଂପର୍କୀୟ ସୂଚନାମାନ ଯଥାସ୍ଥାନରେ ପ୍ରଦତ୍ତ ହୋଇଛି ।

ସିକେର୍ ପାଟ୍—ବଲାଙ୍ଗିର ଜିଲ୍ଲାର "ଘୁନା" ଗ୍ରାମ ଏହାଙ୍କର ଅଧିଷ୍ଠାନ କ୍ଷେତ୍ର । ମହାଘୋରା, ଉଗ୍ରସ୍ୱରୂପିଣୀ ଓ ନରବଳୀ ପ୍ରମୋଦା ଏକ ଭୟଙ୍କରା ଦେବୀ । ଏହାଙ୍କର ଅନିଷ୍ଟକାରୀ ଶକ୍ତିକୁ ଭିତିକରି ପଶ୍ଚିମ ଓଡ଼ିଶାରେ ଏକ ଲୋକ ଉକ୍ତି ପ୍ରଚଳିତ,—"ଘୁନା—ଯେତେବେଳେ ଗୁଟେ ଉନା" । ଅର୍ଥାତ୍ "ଘୁନା ଗ୍ରାମ"କୁ ଅନ୍ୟାନ୍ୟ ଅଞ୍ଚଳରୁ ଯେତେଜଣ ବ୍ୟକ୍ତି ଆସିଥିବେ, ତାଙ୍କରି ଭିତରୁ ଜଣେ ନିଶ୍ଚିତ ଭାବରେ ଏହି ଦେବୀଙ୍କ ବଳୀ (ଆହାର) ହେବେ । ଗୁଣିଗାରେଡ଼ିର ଶ୍ରେଷ୍ଠ ଦେବୀ ହିସାବରେ ସେ ଖ୍ୟାତ । ଘୁନା ଆଗେ ଏକ ତାନ୍ତ୍ରିକ-ଗୁଣିଆ ପ୍ରସିଦ୍ଧ ଗ୍ରାମ ଥିଲା । ଏବେ ମଧ୍ୟ ଏହି ପ୍ରଭାବ ପୂର୍ଣ୍ଣମାତ୍ରାରେ ଯାଇନାହିଁ । ଦଣ୍ଡନାଟ, ଶବର ଶବରୀ ଲୀଳା, ବିଭିନ୍ନ ଲୋକନାଟ୍ୟ ଓ ସୁଆଙ୍ଗ ଆଦିରେ ବିଭିନ୍ନ 'ଚରିତ୍ରମାନ' ମଙ୍ଗଳାଚରଣରେ ସିକେର୍ ପାଟ୍‌ଙ୍କ ଉପରେ ବାକ୍‌ଦେବୀତ୍ୱ ଆରୋପ କରି ବନ୍ଦନା କରିଥାନ୍ତି । ଦଣ୍ଡନାଟରୁ ପଦଟିଏ ନିମ୍ନରେ ଉଦାହରଣ ରୂପେ ଉଲ୍ଲେଖ କରାଗଲା—

"ଜୟ ମା ସିକେରପାଟ
ତର ଦୟା ବଳେ କରୁଛେଁ ନାଟ............
ପଦ ଆସୁ ଝଟଝଟ ।"

(ଯଦୁ ନାଏକଙ୍କଠାରୁ ସଂଗୃହୀତ)

ବାରଭାଇ ମରାଇ୍:—ଦ୍ୱାଦଶଟି ଅନ୍ୟ ଶକ୍ତିଙ୍କର ସମନ୍ୱିତ ଏକ ଅନନ୍ୟ ଶକ୍ତିକୁ ଆଦିବାସୀ ସଂପ୍ରଦାୟରେ "ବାରଭାଇ ମରାଇ୍" ନାମରେ ପୂଜା କରାଯାଏ । ଏହାଙ୍କ ସହିତ ପୂର୍ବରୁ ଆଲୋଚିତ ବାରଭାଇ ଭୀମାଙ୍କର ସାମ୍ୟତା ଲକ୍ଷଣୀୟ । କଳାହାଣ୍ଡି ଜିଲ୍ଲାର ଜୁର୍‌ଡ଼ା ନିକଟସ୍ଥ ବେଲ୍‌ପଡ଼ା ଗ୍ରାମରେ ଏହି ପୁରୁଷଶକ୍ତିଙ୍କୁ ପୂର୍ବେ ପୂଜା କରାଯାଉଥିଲା । ଏହି ଦେବତା ପ୍ରଚଣ୍ଡ ପରଶୁ ଓ ତ୍ରିଶୂଳ ଧାରଣ କରନ୍ତି ।

ଡୁଲ—ଆଦିବାସୀ ସଂପ୍ରଦାୟର ଏକ ସାର୍ବଜନୀନ ଚିରଯୌବନା, ସ୍ୱେଚ୍ଛାଗ୍ରହିଣୀ ଓ ଉଦଣ୍ଡୀ ପ୍ରକୃତିର ଦେବୀ । ପ୍ରାୟ ପ୍ରତ୍ୟେକ ଗ୍ରାମର ଗ୍ରାମଦେବୀଙ୍କ ସହିତରେ ଓ ସମୀପରେ 'ଡୁଲ'ଙ୍କର ପୂଜା ବିଧାନ ଏକ ଚିରନ୍ତନ ନିୟମ । ଖର୍ପଣ ଧାରିଣୀ ଏହି ଡୁଲ ଦେବୀଙ୍କର 'ହୁଳହୁଳି' ନାଦର କୁପ୍ରଭାବରେ ଗ୍ରାମରେ ବିଭିନ୍ନ ପ୍ରକାର ଦୈବୀ ବିପତ୍ତି ପଡ଼ିଥାଏ ବୋଲି ଏକ ଲୋକ ବିଶ୍ୱାସ ପ୍ରଚଳିତ 'ଦୋଳି' ଝୁଲିବାକୁ ଏହି ଦେବୀ ଭାରି ଭଲପାନ୍ତି ଓ ଦୋଳିକୁ ସହ୍ୟ କରି ପାରନ୍ତି ନାହିଁ ବୋଲି ଏହି ଦେବୀଙ୍କର ପୂଜାରୀମାନଙ୍କ ଗୃହରେ ଦୋଳିରେ ଝୁଲିବା ବା ଦୋଳିର ବ୍ୟବହାର ହୋଇନଥାଏ ।

ବଏତି—ନିମ୍ନ ସ୍ତରୀୟା, ପ୍ରେତ ସ୍ଥାନୀୟା, ରକ୍ତ ବସନ ପ୍ରିୟା କ୍ଷତିକାରିଣୀ ଦେବୀ ପ୍ରତ୍ୟେକ ଗ୍ରାମରେ ଏହାର ପ୍ରକୋପ ସମ୍ବନ୍ଧରେ ଲୋକ ବିଶ୍ୱାସମାନ ରହିଛି । ଛୋଟ ଛୁଆ, ସଦ୍ୟଜାତ ଶିଶୁ ଆଦିଙ୍କୁ ବିଭିନ୍ନ ରୋଗ ମାଧ୍ୟମରେ ହଇରାଣରେ ପକାଇବା ଓ ଖାଇଯିବା ଏହି ଦେବୀର ପ୍ରଧାନ କାମ ।

ପେଣ୍ଡୋରାନି—ପେଣ୍ଡୋରାନିଙ୍କର ଅଧିଷ୍ଠାନ ଗ୍ରାମ କଳାହାଣ୍ଡି ଜିଲ୍ଲାର "ଝଲିଆ ଗୁଭା" । ଏହି ଦେବୀ ସଦା ନିଜ ପ୍ରତି ଅବିଶ୍ୱାସୀ ଜନଙ୍କର ବେଶୀ କ୍ଷତି କରନ୍ତି । ପ୍ରତି ଦଶହରାରେ ଏହାଙ୍କର 'ଯାତ୍ରା' ହୁଏ । ଝାଙ୍କର ଏହାଙ୍କର ମୁଖ୍ୟ ପୂଜାରୀ ।

ମିର୍‌ଚୁକ୍‌–ବଲାଙ୍ଗିର ଜିଲ୍ଲାର 'ମୁରିବାହାଲ୍' ନିକଟସ୍ଥ "ବାମନି" ର ଆଦିବାସୀ ଶ୍ରେଣୀୟ ଲୋକେ ମିର୍‌ଚୁକ୍‌ଙ୍କ ଆରାଧନା କରିଥାନ୍ତି । ଏହାଙ୍କ ମହିମାକୁ ଭିତ୍ତିକରି ଏକ ଲୋକ କାହାଣୀ 'ମର୍‌ଚୁକ୍ କଥାନୀ' ମଧ୍ୟ ପ୍ରସିଦ୍ଧି ଲାଭ କରିଛି । "ବିପଦ ଖଣ୍ଡନ" ଭାବରେ ଏହା ଏକ ଜନପ୍ରିୟ ଦେବତା ।

ବାଘ୍‌ମୁଣ୍ଡେନ୍‌–ଝାଲ୍ଲମଢ଼େନ୍ ନାମ ସହ ସାମ୍ୟଥିବା ଅନ୍ୟଏକ ଦେବୀ ହେଲେ "ବାଘ୍‌ମୁଢ଼େନ୍" । ସମାଚୁଆଁ ଗୁଘଗୁଙ୍ଗ୍ ଆଦି ଗ୍ରାମର ଏହା ଗ୍ରାମ ଦେବୀ । ଏହାଙ୍କ ଉତ୍ପତ୍ତି ବିଷୟରେ ଏକ କୌତୁହଳପ୍ରଦ କିମ୍ବଦନ୍ତୀ ପ୍ରଚଳିତ । "ଗୁଘ୍‌ଗୁଙ୍ଗ୍"କୁ ଲାଗିଥିବା ବର୍‌ନି ଡ଼ଙ୍ଗର ଜଙ୍ଗଲକୁ କାଠ ପତ୍ର ସଂଗ୍ରହରେ ଯାଇଥିବା କୌଣସି ଏକ ଝାଙ୍କର ଘର ଭୁଆସୁଣୀ'କୁ ସେହି ଡ଼ଙ୍ଗର ବା ପାହାଡ଼ର ଦେବୀ ବାଘରୂପେ ଖାଇପାଇଥିଲା । ପରେ ସେହି ନୂଆବତୀ ଭୁଆସୁଣୀ ବାଘ୍‌ମୁଢ଼େନ ରୂପେ ଉତ୍ପତ୍ତି ଲାଭ କଲା ।

ବାରଝୁଲେନ୍–ନିଶବ୍ଦ ରାତ୍ରିରେ ଗାଁଦାଣ୍ଡରେ ଆହାର ଅନ୍ୱେଷଣାର୍ଥେ ସ୍ୱାଧୀନ ଭାବରେ ବୁଲିବୁଲୁଥିବା ଏକ ଦାଣ୍ଡଦେବୀ 'ଢ଼ଗିଆ' ଓ "କେଙ୍ଗାମୁଣ୍ଡା"ରେ ପୂଜା ଗ୍ରହଣ କରନ୍ତି ।

ଅଗ୍‌ନି ଭଇଁରୋ–ଅଗ୍ନିଭୈରବଙ୍କର ନାମାନ୍ତର । କଳାହାଣ୍ଡି ଜିଲ୍ଲାର ଲୁପୁଙ୍ଗା ଗ୍ରାମ ଏହାଙ୍କର ପ୍ରଧାନ ଅଧିଷ୍ଠାନ କ୍ଷେତ୍ର । ଏତଦ୍‌ବ୍ୟତୀତ ଆହୁରି ବହୁତ ଗ୍ରାମରେ ଏହାଙ୍କୁ ଗ୍ରାମଦେବୀରୂପେ ପୂଜା କରାଯାଏ । ଶରୀର ଅଗ୍ନି ପରି ତେଜୋମୟ ଓ ଘୋର ରୂପ ଏକ ପ୍ରଚଣ୍ଡଚଣ୍ଡ ପ୍ରକୃତିର ଦେବତା ।

ଝର୍‌ନୀ–ପଶ୍ଚିମ ଓଡ଼ିଶାର ବିଭିନ୍ନ ଜଙ୍ଗଲରେ ବହୁତ ଗୁଡ଼ିଏ 'ଝରଣା' ବା ଝର୍‌ନା ରହିଛି । ଏହି ଝରନାମାନଙ୍କର ଅଧିଷ୍ଠାତ୍ରୀ ଦେବୀମାନଙ୍କୁ ଝର୍‌ନୀ ବୋଲି କୁହାଯାଏ । ଏହା ଏକ ପ୍ରକାର ଜଳଦେବୀ । ଏମାନଙ୍କ ମଧ୍ୟରେ କେତେକ ଉଲ୍ଲେଖନୀୟ ଝର୍‌ନୀ ହେଲେ,–"ଆମ୍ ଝର୍‌ନୀ ଜାମ୍‌ଝର୍‌ନୀ ଥୁଆଝର୍‌ନୀ, ବଡ଼ଝରନୀ, ଲିମ୍‌ଝରନୀ, ଇତ୍ୟାଦି ।

ପାଟ୍‌ଦେଓ–ପାଟଦେଓ ଅର୍ଥ ଶ୍ରେଷ୍ଠ ଦେବତା । ଏହି ନାମରୁ ଏହା ପୂର୍ବେ ଏକ ରାଜଦେବତା ଥିବା ଅନୁମେୟ । ଥୁବ୍‌ଡ଼ିଙ୍ଗ୍ ବା ଚବାପଡ଼ା ଏହାଙ୍କର ଅଧିଷ୍ଠାନ କ୍ଷେତ୍ର । ଅଶ୍ୱ ଏହାଙ୍କର ଅତିପ୍ରିୟ ବାହନ ।

ବିଦେନ୍–ବେଦେନ୍ ବୁଢ଼ୀଙ୍କର ନାମାନ୍ତର ବୋଲି ମନେ ହୁଏ । "ପୁରୁର୍ ପଲ୍ଲ" ଅଞ୍ଚଳକୁ କନ୍ଧମାନେ ବିଦେନ୍ ମାଏଟ୍ ବୋଲି କହିଥାନ୍ତି । ଅର୍ଥାତ୍ ଏହି ଖଣ୍ଡମଣ୍ଡଳରେ ପୂର୍ବେ ଏହି-ଦେବୀ ମୁଖ୍ୟା ଗ୍ରାମଦେବୀ ରୂପେ ପୂଜା ପାଉଥିଲେ ।

ରଣ୍‌ଚଣ୍ଡି:–ପଶ୍ଚିମ ଓଡ଼ିଶାର ଶକ୍ତି ଉପାସନା ପରଂପରାରେ ଚଣ୍ଡୀଙ୍କର ବିଭିନ୍ନ ଆଞ୍ଚଳିକ ରୂପ ପ୍ରତିଷ୍ଠା ଲାଭ କରିଥିବାର ଲକ୍ଷ୍ୟ କରାଯାଇପାରେ । ସେ ସମସ୍ତ ଚଣ୍ଡୀ ବା ଚଣ୍ଡି ହେଲେ—ଖପ୍ରା ଚଣ୍ଡି, (ଖର୍ପର ଚଣ୍ଡୀ) ବନ୍‌ଚଣ୍ଡି (ବନଚଣ୍ଡୀ) ପାଟ୍‌ଚଣ୍ଡି, କାଲ୍‌ଚଣ୍ଡି, ଶୂଲ୍‌ଚଣ୍ଡି ଝୁପରିଚଣ୍ଡି, ବେଲ୍‌ଚଣ୍ଡି, ଝାର୍‌ଚଣ୍ଡି, ଡାଲ୍‌ଚଣ୍ଡି ଆଦି ଅନେକ । ଏମାନଙ୍କ ମଧ୍ୟରେ ରଣଚଣ୍ଡି ବା ରଣଚଣ୍ଡୀ ସର୍ବ ପ୍ରସିଦ୍ଧା । ସେ ମହାଶକ୍ତି ସ୍ୱରୂପିଣୀ, ଭୈ[illegible] ଭୟଙ୍କରା ରକ୍ତସ୍ନାତା ଦେବୀ । ସଂଗ୍ରାମ ଭୂମିରେ "[illegible] ସଦା କୁତୁହଳୀହୋଇ ମାତି ବୁଲୁଥିବା ମେଦ, ମାଂସ ଅସ୍ଥି [illegible] ଯୋଗିନୀ ଡାମସିକା ପ୍ରଭୃତିର ଦେବୀ ହେଉଛନ୍ତି ଯ[illegible] ରଣଚଣ୍ଡୀ ବା ରଣ୍‌ଚଣ୍ଡି । ବିଭିନ୍ନ ଆଦିବାସୀମାନେ [illegible] ପୂଜା କରିଥାନ୍ତି ଆଲିମ" ଗ୍ରାମରେ ଏହି ଦେବୀ ଗ୍ରାମ ଶ[illegible] ରୂପେ ଗୃହୀତ

ରଣ୍‌ଘଁଟା:–ଶକ୍ତିଙ୍କର ଏହି ରୂପ ମଧ୍ୟ ସଂଗ୍ରାମ[illegible] ଏକ ଭୟଙ୍କରା ଲୋପିନୀ ଦେବୀ, ଯୁଦ୍ଧରେ ବ୍ୟବହୃତ '[illegible] ଅଧିଷ୍ଠାତ୍ରୀ ଦେବୀ ।

ଠେଁଏପ୍‌ରେନ୍:–ଖର୍ପରଧାରିଣୀ ଯୁଦ୍ଧକ୍ଷେତ୍ର ବିହା[illegible] ମହାଉଦଣ୍ଡୀ ପ୍ରକୃତିର ଦେବୀ । ରକ୍ତ ବସ୍ତ୍ର ଓ ରକ୍ତ ଆହା[illegible] ଭା'ରି ପ୍ରିୟ । ସଂପ୍ରତି ମଧ୍ୟ ବହୁ କନ୍ଧ ଗ୍ରାମର ଗ୍ରାମଦେ[illegible]ଙ୍କ ଏକ ଅଧସ୍ତନା ଦେବୀ ଭାବରେ ପୂଜିତ ହୁଅନ୍ତି ।

ଘାଁସି:–କେତେକ ଏହାଙ୍କୁ ଘିସେନ୍ ବୋଲି ମଧ୍ୟ କହନ୍ତି[illegible] ଗ୍ରାମଦେବୀ ହିସାବରେ ଏହି ଦେବୀ ବେଶି ପ୍ରସିଦ୍ଧି ଲାଭ କ[illegible] ନାହାନ୍ତି । ଗୃହ ଇଷ୍ଟଦେବୀ ହିସାବରେ ହିଁ ଏହାଙ୍କର ପ୍ରସି[illegible] ରହିଛି । ଏକ ନିମ୍ନସ୍ତରୀୟ ଭୂତ ସ୍ଥାନୀୟ ଦେବୀ ।

ରକତ୍‌ଡାକ୍‌ନୀ:–(ରକ୍ତଡାକିନୀ) ସଦା ସର୍ବଦା ତାମସି[illegible] ପ୍ରକୃତିର ଦେବୀ । ରକ୍ତ ପାୟୀ ଓ ରକ୍ତ ମଦାର ମାଳା[illegible] ଭା'ରି ଆଦର । କେତେକାଂଶରେ ଇଷ୍ଟଦେବୀ ଓ କେତେ[illegible]କାଂଶରେ ଗ୍ରାମ ଦେବୀ ।

ରକତ୍ ଭୈରବୀ– (ରକ୍ତ ଭୈରବୀ) ମୁକ୍ତ କେଶୀ, ଶୂଳ-ଧାରିଣୀ, ଅଷ୍ଟଭୂଜା ଓ ରଣଲୀଳା ବିଳାସିନୀ ରୂପେ ବର୍ଣ୍ଣିତ ।

ବଜର୍‌ଡ଼ାକେନ୍–:(ବଜ୍ର ଡାକିନୀ) ଏହାଙ୍କର କିଳିକିଳା ଧ୍ୱନି ବଜ୍ର ପରି ଭୀତପ୍ରଦ । ବଜର୍ ଗଡ଼ ବୁଢ଼ା ଓ ବୁଢ଼ୀଙ୍କର ସମସନ୍ଧ ଏକ ପ୍ରଭାବଶାଳିନୀ ଦେବୀ ବୋଲି ଆଦିବାସୀମାନେ ବିଶ୍ୱାସ କରନ୍ତି ।

ରେଙ୍ଗସୁ:–ଯେ ପୁରୁଷ ଶକ୍ତି ବିଶେଷ । ଗୁରୁଣ୍ଡି ଗୁରୁଣ୍ଡି ଗତି କରୁଥିବାରୁ ଏହାଙ୍କର ନାମ "ରେଙ୍ଗ୍‌ସୁ" । (ସମ୍ବଲପୁରୀ ବା କୋଶଳୀ ଭାଷାରେ ରେଙ୍ଗ୍‌ସିବା ଅର୍ଥ ଗୁରୁଣ୍ଡିବା) । ଭୀମାଙ୍କ ପ୍ରତି ଅସଦାଚରଣ କରିଥିବାରୁ ତାଙ୍କରି ତ୍ରିଶୂଳ- ମାଡ଼ରେ ଏହାଙ୍କର ଏପରି ଅବସ୍ଥା ଘଟିଥିବା କଥା ଏକ ସୁନ୍ଦର ଲୋକ କଥାରେ ବର୍ଣ୍ଣିତ ।

ରୁଣି ମଙ୍ଗ୍‌ଲ:–ବିଭିନ୍ନ ମଙ୍ଗଳାଙ୍କ ମଧ୍ୟରେ "ରୁଣି ମଙ୍ଗ୍‌ଲ" ଅନ୍ୟତମ । "ମଙ୍ଗ୍‌ଲ" ପରି ଏହି ମଧ୍ୟ ଏକ ମଙ୍ଗଳକାରିଣୀ ଦେବୀ ।

ସୁନାମେରୁ:–"ସୁବର୍ଣ୍ଣମେରୁ" ଶବ୍ଦ କ୍ରମେ "ସୁନାମେରୁ" ରେ ପରିଣତ ହୋଇଥିବା ଅନୁମେୟ । ଏହି ଦେବତା ସୋନପୁର ଅଞ୍ଚଳରେ ପ୍ରସିଦ୍ଧିଲାଭ କରିଥିଲେ । ଏହାଙ୍କ ସର୍ବାଙ୍ଗ ଶରୀର କନକକାନ୍ତି ତୁଲ୍ୟ ଉଜ୍ଜ୍ୱଳମୟ ।

ଚୂନାଦେଇ:—ଆଦିବାସୀ ସଂସ୍କୃତିରେ ଅସ୍ତ୍ରପୂଜା ଏକ ପ୍ରାଚୀନ ପରଂପରା । ପ୍ରତିଟି ଅସ୍ତ୍ରଶସ୍ତ୍ରର ଏକଏକ ଅଧିଷ୍ଠାତ୍ରୀ ଦେବୀ ବା ଶକ୍ତି ଅଛନ୍ତି ବୋଲି ଏହାଙ୍କର ଗଭୀର ବିଶ୍ୱାସ । ଚୂନା ଅର୍ଥ ବାଉଁଶର ତୂଣୀର । ଏହି ତୂଣୀରସ୍ଥ ଦେବୀ ହେଉଛନ୍ତି "ଚୂନାଦେଇ" ।

ଦୁଆର୍‌ସୁନୀ:—ମହାକବି ଶାରଳା ଦାସଙ୍କ ଚଣ୍ଡୀ ପୁରାଣରେ "ଶୁଣୀ" ସଂଜ୍ଞକ ଅସଂଖ୍ୟ ଦେବୀଙ୍କର ସୂଚନା ମିଳୁଥିଲେ ହେଁ ପଶ୍ଚିମ ଓଡ଼ିଶାରେ ପରିଦୃଷ୍ଟ କେତେକ "ଶୁଣୀ" ବା "ସୁନୀ" ସଂଜ୍ଞକ ଦେବୀଙ୍କର ନାମୋଲ୍ଲେଖ ମିଳିନଥାଏ । ଏମାନଙ୍କ ମଧ୍ୟରେ ଟିଟିଲାଗଡ଼ର 'ଘଣ୍ଟାସୁନୀ' ଓ ଲୁପୁଡ଼ା ଗ୍ରାମର "ଦୁଆରସୁନୀ" ଅନ୍ୟତମ । ଦୁଆରସୁନୀ କେତେକାଂଶରେ ରାଜଦେବୀ ଓ ବହୁଳ ଭାବରେ ଗ୍ରାମଦେବତୀ ରୂପେ ପ୍ରସିଦ୍ଧା । ଗଡ଼ ଦ୍ୱାରସ୍ଥ ଅଧିଷ୍ଠାତ୍ରୀ ଦେବୀ ରୂପେ ଏହାଙ୍କୁ ଚିହ୍ନିତ କରାଯାଇ ପାରେ । ଶକ୍ତି ଉପାସନା ପରଂପରାରେ ଏହାଙ୍କ ଐତିହ୍ୟ ବେଶ୍ ପ୍ରାଚୀନ ବୋଲି ମନେହୁଏ, କାରଣ ନିକଟରେ ମୁଁ ଏହାଙ୍କ ଉଦ୍ଦେଶ୍ୟରେ ରଚିତ ଏକ "ମାଲେଶରୀ" ଓ ସିଂଗାର୍ ସଂଗ୍ରହ କରିଛି ।

ରାଏତ୍‌ମାୟା:—କାଳରାତ୍ର ରୂପା । ଭାଦ୍ରବ ମାସରେ ଗୁରୁବାର ଦିନ ଅର୍ଦ୍ଧରାତ୍ରରେ ଏହାଙ୍କର ପୂଜା ହୁଏ । ମୁଖ୍ୟତଃ ବଲଦିଆ ତେଲିମାନେ ଏହାଙ୍କୁ ଇଷ୍ଟଦେବୀ ରୂପେ ପୂଜା କରନ୍ତି ବୋଲି ପୂଜକ ଶ୍ରୀ ମେନା ସାହୁଙ୍କଠାରୁ ପ୍ରକାଶ । ଏହାଙ୍କ ପୂଜା ପଦ୍ଧତି ଶୁକ୍ଳପୂଜା । ମନେହୁଏ ଏହି ଦେବୀ ଶସ୍ୟଦେବୀ ଲକ୍ଷ୍ମୀଙ୍କର ଏକ ରୂପ ।

ଧନ୍‌ମାୟା:—ଏହି ଦେବୀ ମଧ୍ୟ ବଲ୍‌ଦିଆ ତେଲିମାନଙ୍କ ଦ୍ୱାରା ଧନର ଦେବୀ ରୂପେ ପୂଜିତ ହୋଇଥାନ୍ତି ।

ବୁଢ଼ୀମା:—ଆଦିମାତା ରୂପେ କନ୍ଧମାନେ ମାନନ୍ତି । ଚଇତ୍‌ରା, କାଦୋଯାତ୍ରା ଓ ଦଶହରାରେ ଏହାଙ୍କର ପୂଜା ହୁଏ ।

ବୀର୍ ପାଏନ୍—ପୂର୍ବରୁ ଆଲୋଚିତ ପାଟଖଣ୍ଡା ର ଅନଚର ଦେବତା ।

କେର୍‌ମେଲ:—ଏହି ଦେବୀଙ୍କୁ କେନ୍ଦ୍ର କରି ଲୋକ ସମାଜରେ ଏକ ସୁନ୍ଦର କୌତୂହଳପ୍ରଦ ଲୋକ ବିଶ୍ୱାସ ପ୍ରଚଳିତ ।

ଆଖି ପୋଡ଼ିବା ଓ ଆଖି ଧରିବା ଆଦି ଚକ୍ଷୁରୋଗ (କୋଶଲୀ ଭାଷାରେ "ଆର୍ଏଁକ୍ ଆଏବା") ଏହାଙ୍କ କୋପରୁ ହୋଇଥାଏ ବୋଲି ଏମାନେ ବିଶ୍ୱାସ କରନ୍ତି । ଗାଁର ଚୌକିଦାର (ଗଣ୍ଡା) ମାନେ ବଂଶ ପରଂପରା କ୍ରମେ ଏହି ଦେବୀଙ୍କର ପୂଜା ନିଜଘରେ କରିଥାନ୍ତି । ଏହାଙ୍କ ପରିବାରର କୌଣସି ବ୍ୟକ୍ତିଙ୍କ ଆଖି ଧରିବା ସମୟରେ ଦେଖିଦେଲେ ଚକ୍ଷୁବେମାର ଆହୁରି ବଢ଼ିଯାଏ ବୋଲି ଲୋକଙ୍କର ବିଶ୍ୱାସ । ଏଣୁ ଚକ୍ଷୁରୋଗର ଆଶୁ ଆରୋଗ୍ୟ ନିମିତ୍ତ ଲୋକେ ଚୌକିଦାରଙ୍କ ମାର୍ଫତରେ ଏହି ଦେବୀଙ୍କୁ ଭସ୍ମ, ପଣା, ଓ ଯାବତୀୟ ପୂଜା ଉପଗ୍ରର ସମର୍ପଣ କରିଥାନ୍ତି । ଏହି ଦେବୀ ଏକ ନିମ୍ନସ୍ତରୀୟା ଦେବୀ । ଛୋଟ ଛୋଟ ଛୁଆମାନଙ୍କର କ୍ରୀଡ଼ାକାଳୀନ ଏକ ଲୋକଗୀତରେ ଏହି ଲୋକବିଶ୍ୱାସ ଲକ୍ଷଣୀୟ"—

"କିଏ ପୁଜ୍‌ବା କିଏ ଝାର୍‌ବା ଆର୍ଏଁକ୍ ଆସିଛେ
ଲଲ୍ ଲଲ୍ ଡିମାଡିମା ରଙ୍ଗିଆ କରିଛେ
ଘଣା ଘର କେର୍‌ମେଲ
ନାଇଁ କରିଥା ଟାଏଟ୍ ମେଲ
ଗଣେନ୍ ବୁଢ଼ୀ ଛେଟ୍‌ନା ଧରି ଗାଁ ଖୁଲି ଖୁଲି ଧର୍‌ସିଲ
ଦେଖି ଦେଲେ ଖୋପ୍ ଗଡ଼ିଲ
ଖାର୍ ପାଏନ୍ ଦେବୁ କେର୍‌ମେଲକେ
ଆଏଖ ବଡ୍ ଯିବା କପ୍‌ସିଲ କେ............
ତାନାନା ଗଣ୍ଡା ଭର୍..........(ଲୁଛ ହରିଜନ୍
ଓ ତାଙ୍କର ସାଙ୍ଗମାନଙ୍କଠାରୁ)

(ସୂଚନା:—ସାଧକ ଯଶୋବନ୍ତ ବଗର୍ତ୍ତୀ ମୋତେ କେତେକ ତଥ୍ୟ ଯୋଗାଇ ଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ—ଲେଖକ)

ବାଣୀ କୁଞ୍ଜ
ମୁଁ;/ପୋ: ଗିଗିନା
ଜି: କଳାହାଣ୍ଡି—୭୬୬୧୦୧



ରାଜ୍ୟ ରପ୍ତାନୀ ଉନ୍ନୟନ ବୋର୍ଡ଼ ବୈଠକରେ ମୁଖ୍ୟ ଶାସନ ସଚିବ ..........

# ଆମେ ଓ ଆମର ପରିବେଶ

ଡକ୍ଟର ଅମୂଲ୍ୟ ମହାପାତ୍ର

ଆମର ଚାରିପାଖେ ଘେରିରହିଛି ପ୍ରକୃତି । ସେହି ପ୍ରକୃତି ମଧ୍ୟରେ ରହିଛି—ଗଛଲତା, ନଦନଦୀ, ପାହାଡ଼ପର୍ବତ, ଆକାଶ, ପବନ ପାଣି ପ୍ରଭୃତି । ଏମାନଙ୍କୁ ନେଇ ଆମ ପରିବେଶ ଗଢ଼ିଉଠିଛି । ଏହି ପ୍ରକୃତି କୋଳରେ ଆମର ଜନ୍ମ । ପ୍ରକୃତି ଆମର ଦେବତା । ତାହାରି ଦୟାରେ ଆମେ ବଞ୍ଚିଛୁ । ଦିନ ଆସିବ ଆମେ ପୁଣି ତାହାରି କୋଳରେ ଶେଷ ନିଶ୍ୱାସ ତ୍ୟାଗ କରିବୁ । ଯେଉଁ ପ୍ରକୃତିକୁ ଆମେ ପୂଜାକରୁ, ସେ ଆମ ଜୀବନର ସବୁକିଛି । ସେ ଆମର ହର୍ତ୍ତା କର୍ତ୍ତା ଓ ବିଧାତା । ପ୍ରକୃତିର ବିନା ସାହାଯ୍ୟରେ ପ୍ରାଣିଜଗତ ବଞ୍ଚି ପାରିବ ନାହିଁ । ଯେଉଁ ପ୍ରାକୃତିକ ପରିବେଶ ଆମକୁ ଏତେ ସାହାଯ୍ୟ କରେ ତାହାକୁ ଉପଯୁକ୍ତ ସମ୍ମାନ ଦେବା ଆମର ଆବଶ୍ୟକ । ପ୍ରକୃତିର ଅନିଷ୍ଟ ହେଲେ ଆମର ଅନିଷ୍ଟ ହୁଏ ।

ଯେଉଁ ପ୍ରକୃତି ଓ ପରିବେଶ ମଧ୍ୟରେ ଆମେ ବଞ୍ଚିରହିଛୁ, ତାହାର ଉପଯୁକ୍ତ ସୁରକ୍ଷା କରିବା ଆମର କର୍ତ୍ତବ୍ୟ । ଏଥିପାଇଁ ପରିବେଶ ସମ୍ବନ୍ଧରେ ଶିକ୍ଷା ଲାଭ କରିବା ଆମର ଆବଶ୍ୟକ । ଏହି ପରିବେଶରେ ରହିଥିବା ପାଣି, ପବନ, ମାଟି ଆମ ଜୀବନ ଧାରଣ ପାଇଁ ବିଶେଷ ଦରକାରୀ । ପ୍ରକୃତି କୋଳରେ ରହିଥିବା ସମସ୍ତ ପଦାର୍ଥକୁ ଆମେ ନିର୍ମଳ କିମ୍ବା ଦୂଷିତ କରିଥାଉଁ । କେତେବେଳେ ପ୍ରକୃତିର ପରିବେଶକୁ ଆମେ ହତ୍ୟାକରୁ ଓ ଅନ୍ୟ କେତେ ସମୟରେ ଆମେ ପ୍ରକୃତିକୁ ସୃଷ୍ଟି କରୁ । ପରିବେଶକୁ କିପରି ସୁନ୍ଦର ଓ ପରିଚ୍ଛନ୍ନ ରଖିବାକୁ ହୁଏ ଶିକ୍ଷା କରିବା ଦରକାର । ପରିବେଶ ସମ୍ବନ୍ଧରେ ଶିକ୍ଷା ଲାଭକଲେ, ଆମେ ତାହାର ସୁରକ୍ଷା ଉଚ... କରିପାରିବୁ ।

ଆମର ପରିବେଶ ସାଧାରଣତଃ, ପବନ, ପାଣି, ଓ ଶବ୍ଦଦ୍ୱାରା ଦୂଷିତ ହୋଇଯାଏ । ଫଳରେ ଏହି ପରିବେଶ ଆମର କ୍ଷତି କରିଥାଏ । ଦୂଷିତ ପରି... କାରଣ ଓ ନିରାକରଣ ନିମ୍ନରେ ବର୍ଣ୍ଣନା କରାଗଲା ।

## ପବନ

ପବନ ଆମର ଜୀବନ ଧାରଣରେ ସାହାଯ୍ୟ କ... ଏହାକୁ ଆମେ ଶ୍ୱାସ ପ୍ରଶ୍ୱାସରେ ଗ୍ରହଣ କରିଥାଉ । ... ପବନରେ ସୃଷ୍ଟି ଧ୍ୱଂସ ହୋଇଯାଏ । ସେହିପବନ ... ଗଛଲତା ଓ ଶୁଷ୍କାଦି କାର୍ଯ୍ୟରେ ଦରକାର ହୋଇଥାଏ । ପ... ନହେଲେ ଜୀବ ଜଗତ ନଷ୍ଟହୋଇଯିବ । ତେଣୁ ଏହି ପବ... ଆମେ ସଦାବେଳେ ନିର୍ମଳ କରିବା ଆବଶ୍ୟକ । ପବନ ... ଗନ୍ଧମୟ ଓ ଦୂଷିତ ହୋଇଯିବ ତାହାହେଲେ ଏହା ଆମର ଜୀ... ପ୍ରତି ଅପକାର କରିବ । ଏହାଦ୍ୱାରା ବିଭିନ୍ନ ରୋଗ ହେବ... ତେଣୁ ସଦାବେଳେ ବିଶୁଦ୍ଧ ବାୟୁ ଗ୍ରହଣ କରିବା ଶରୀର ପ୍ର... ହିତକର ।

ଆମେ ଏହି ପବନକୁ ନାକରେ ଗ୍ରହଣ କରି, ପ୍ରଶ୍ୱାସ ଦ୍ୱାର... ଭିତରକୁ ନେଇଥାଉଁ । ଏହି ପବନ ଭିତରକୁ ଯାଇ ପୁଣି ଦୂଷି... ହୋଇ ତାହା ବାହାରକୁ ବାହାରି ଆସେ । ସେହି ବିଶୁ... ପବନରେ ଅମ୍ଳଜାନ ଓ ଦୂଷିତ ପବନରେ ଅଙ୍ଗାରକାମ୍ଳ ନାମକ... ଏକ ଗ୍ୟାସ ମିଶିଥାଏ । ଆମ ପରିବେଶରେ ରହିଥିବା ଗଛଲତା ଆମଠୁଁ ଦୂଷିତ ବାୟୁ ଗ୍ରହଣ କରି ଆମକୁ ବିଶୁଦ୍ଧ ବାୟୁ ଦେଇଥାନ୍ତି । ଯେଉଁ ପବନ ଆମର ଏତେ ଉପକାର କରେ ତାହାକୁ ଆମେ ସଦାବେଳେ ବିଶୁଦ୍ଧ ରଖିବା ପାଇଁ ଯତ୍ନବାନ ହେବା ଦରକାର ।

ମାତ୍ର ଆମେ ଅନେକ ସମୟରେ ପବନକୁ ଦୂଷିତ କରିଥାଉଁ । ଘରର ଅପରିଷ୍କାର ଦ୍ରବ୍ୟଗୁଡ଼ିକୁ ଏକତ୍ର ନ ରଖି ଏବଂ ସେଗୁଡ଼ିକୁ ପୋଡ଼ି ନ ଦେଇ ତାହାକୁ ବାହାରକୁ ଫିଙ୍ଗିଦେଉ । ସମସ୍ତ ଅଳିଆ ଆବର୍ଜନା ବାହାରେ ପଡ଼ି ପଡ଼ି ପଚିଯାଏ ଓ ତାହା ପବନକୁ ଦୂଷିତ କରିଦିଏ । ସେହିପରି ବିଭିନ୍ନ ପଷ୍ଟସଡ଼ା ଜିନିଷଗୁଡ଼ିକୁ ଆମେ ବାହାରକୁ ଫିଙ୍ଗି ଦେଉଥିବାରୁ ତାହା ମଧ୍ୟ ପବନକୁ ଦୂଷିତ କରିଥାଏ । ସେହି ଦୂଷିତ ପବନ ଆମ ଦେହ ଭିତରକୁ ଯାଏ । ସଂକ୍ରାମକ ରୋଗ ହେଲେ, ଆମେ ଆମର ପିନ୍ଧାଲୁଗା ଓ ବିଛଣାଗୁଡ଼ିକୁ ବାହାରେ ପକାଇ ଦେଉଥାଉଁ, ଯାହା ଫଳରେ ରୋଗ ଜୀବାଣୁ ଅନ୍ୟ ସୁସ୍ଥବ୍ୟକ୍ତିଙ୍କ ଶରୀରରେ ପ୍ରବେଶ କରି ଚାରିଆଡ଼େ ରୋଗ ବ୍ୟାପିଯାଏ । ତେଣୁ ଅଳିଆ ଆବର୍ଜନା ଓ ସଂକ୍ରାମକ ରୋଗୀର ଲୁଗା ଓ ବିଛଣା ବାହାରେ ଫିଙ୍ଗି ନଦେଇ ତାହାକୁ ପୋଡ଼ିଦେବା ଦରକାର ।

କଳକାରଖାନାରୁ ଅନେକ ଅନାବଶ୍ୟକ ପଦାର୍ଥ ବାହାରେ । ସେହି ଅନାବଶ୍ୟକ ପଦାର୍ଥଗୁଡ଼ିକୁ ଆମେ ବାହାରକୁ ଫିଙ୍ଗିଦେଉ ।

କଳକାରଖାନାର ଗଦା ଗଦା ଆବର୍ଜନା ବାହାରେ ପଡ଼ି ତାହା-ପଚିଯାଏ । ଫଳରେ ବିଶୁଦ୍ଧ ବାୟୁ ଦୂଷିତ ହୋଇଯାଏ । ସେହିପରି କଳକାରଖାନାଗୁଡ଼ିକରୁ ଧୂଆଁ ଓ ଦୂଷିତ ବାଷ୍ପ ବାତାବରଣକୁ ଦୂଷିତ କରିଦିଏ । କଳକାରଖାନାଗୁଡ଼ିକୁ ଜନବସତିର ଦୂରରେ ରଖିବା ଆବଶ୍ୟକ ।

ଯାନବାହନ ଅଧିକ ସଂଖ୍ୟାରେ ବୃଦ୍ଧିହେବା ଫଳରେ ଆମର ବିଶୁଦ୍ଧ ବାୟୁ ଦୂଷିତ ହୋଇଯାଏ । ଯାନବାହନର ଦୂଷିତ ଅଙ୍ଗାର ବାଷ୍ପ ବାହାରକୁ ବାହାରିଆସେ । ଏହାଫଳରେ ବାୟୁ ଦୂଷିତ ହୋଇଯାଏ ଓ ବିଭିନ୍ନ ରୋଗ ବ୍ୟାଧି ସୃଷ୍ଟିକରେ ।

ଏହା ବ୍ୟତୀତ ଆଜିକାଲି ଯେଉଁ ପରମାଣୁ ବିସ୍ଫୋରଣ ଘଟୁଛି, ତାହାଫଳରେ ବାୟୁମଣ୍ଡଳରେ ବିଷାକ୍ତ ବାୟୁ ସୃଷ୍ଟି-ହେଉଛି । ସେହି ବିଷାକ୍ତ ବାୟୁକୁ ଆମେ ଗ୍ରହଣ କରୁଛୁ । ଫଳରେ ଆମ୍ଭମାନଙ୍କର ଶାରିରୀକ ଓ ମାନସିକ ଅବସ୍ଥା ବିକୃତ ହେଉଛି । ଏହା ପ୍ରାକୃତିକ ପରିବେଶ ପ୍ରତି ଏକ ବଡ଼ ବିପଦ । ପ୍ରକୃତିର ନିୟମ ଓ ସମତା ନଷ୍ଟ ହେବା ଫଳରେ ଋତୁର ପରିବର୍ତ୍ତନ ଘଟୁଛି । ଆବଶ୍ୟକ ଅନୁପାତରେ ବର୍ଷା, ଶୀତ ହେଉନାହିଁ । ଏକ ଉତ୍ତପ୍ତ ପରିବେଶ ଓ ବାୟୁମଣ୍ଡଳ ଏହି ବିସ୍ଫୋରଣ ପାଇଁ ହେଉଛି । ଫଳରେ ବିଭିନ୍ନ ନୂଆ ନୂଆ ରୋଗ ବ୍ୟାଧି ବୃଦ୍ଧିପାଉଛି । ସେହିପରି ବିଭିନ୍ନ ବାଷ୍ପ ଉଦ୍‌ଗୀରଣ ଦ୍ୱାରା ମଧ୍ୟ ପରିବେଶ ଦୂଷିତ ହୋଇଥାଏ । ପରମାଣୁ ବିସ୍ଫୋରଣଠାରୁ ଦୂରରେ ରହିବା ଜନସମାଜ ପକ୍ଷେ ମଙ୍ଗଳକର ।

**ଜଳ**

ପବନ ପରି ପାଣି ମଧ୍ୟ ଆମଜୀବନ ଧାରଣ ପାଇଁ ଆବଶ୍ୟକ । ପାଣି ପିଇବା ବ୍ୟତୀତ ଏହା ଆମର ଦୈନନ୍ଦିନ କାର୍ଯ୍ୟରେ ବ୍ୟବହାର ହୋଇଥାଏ । ପାଣି ଦ୍ୱାରା କୃଷି କାର୍ଯ୍ୟ ସମ୍ଭବ ହୁଏ । ଆମ ଚାରିପଟେ ରହିଥିବା ସବୁଜ ବୃକ୍ଷ-ଲତା ଏହି ପାଣିଦ୍ୱାରା ବଞ୍ଚିରହିଥାଏ । ବିଶୁଦ୍ଧ ପାଣି ନ ପିଇଲେ ଆମେ ହଇଜା ପ୍ରଭୃତି ପେଟ ରୋଗରେ ଆକ୍ରାନ୍ତ ହୋଇଥାଉ । ତେଣୁ ସବୁସମୟରେ ପାଣି କିପରି ବିଶୁଦ୍ଧ ରହିବ ସେଥିପ୍ରତି ଦୃଷ୍ଟି ଦେବା ଆମର କର୍ତ୍ତବ୍ୟ । ପ୍ରକୃତିର ଦାନ ଏହି ପାଣି ଓ ପବନ ସଦାବେଳେ ଶୁଦ୍ଧ ଓ ନିର୍ମଳ । ମାତ୍ର ଆମ୍ଭମାନଙ୍କର ଅଜ୍ଞାନତା ହେତୁ ଆମେ ଏହି ପାଣିକୁ ଦୂଷିତ କରିଥାଉଁ ।

ସାଧାରଣତଃ ନାଳ ନର୍ଦ୍ଦମାର ଆବର୍ଜନା ପାଣିକୁ ଦୂଷିତ କରିଥାଏ । ସହର ବଜାର ଓ ଗାଁ ଗଣ୍ଡାର ଅପରିଷ୍କାର ପାଣି ଦୂଷିତ ହୋଇ ଦୁର୍ଗନ୍ଧଯୁକ୍ତ ହୁଏ । ଏଥିରେ ରୋଗ ଜୀବାଣୁ ଓ ପୋକ ମାଛି ସୃଷ୍ଟି ହୁଅନ୍ତି । ଏହି ପାଣି ନଦୀନାଳ ଓ ପୋଖରୀରେ ଯାଇ ମିଶିଥାଏ । ଫଳରେ ପାନୀୟ ଜଳ ମଧ୍ୟ ଦୂଷିତ ହୋଇ-ଯାଏ । ସେହି ଦୂଷିତ ପାଣି ପିଇଲେ ଲୋକମାନେ ହଇଜା ପ୍ରଭୃତି ସଂକ୍ରାମକ ବ୍ୟାଧିରେ ପଡ଼ନ୍ତି ।

ସେହିପରି ମଧ୍ୟ କଳକାରଖାନାର ବିଭିନ୍ନ ଦୂଷିତ ରସାୟନ ଦ୍ରବ୍ୟ ପାଣିରେ ମିଶିଲେ ତାହା ଦୂଷିତ ହୋଇଯାଏ । ଖଣିଜ ପଦାର୍ଥରୁ ବାହାରୁ ଥିବା ଦୂଷିତ ରସାୟନ, ପାଣିର ବିଶୁଦ୍ଧତାକୁ ନଷ୍ଟ କରିଦିଏ । ଏହିପରି ଭାବରେ ପାଣି ଦୂଷିତ ହୋଇଗଲେ, ତାହା ପାନୀୟ ଯୋଗ୍ୟ ହୋଇନଥାଏ । ବରଂ ତାହା ଏକ ବିଷାକ୍ତ ବାତାବରଣ ସୃଷ୍ଟିକରେ ଓ ଏକ ଅସୁସ୍ଥ ପରିବେଶ ଗଢ଼ି ଉଠେ ।

କୃଷିଜମିରେ ବ୍ୟବହୃତ ହେଉଥିବା ପାଣି ଓ ତହିଁରେ ମିଶୁଥିବା ରସାୟନ ସାର ଜଳକୁ ଦୂଷିତ କରିଦିଏ । ସେହି ଦୂଷିତ ପାଣି ନାଳ, ହ୍ରଦ ଓ ପୋଖରୀରେ ଯାଇ ମିଶେ । ଗ୍ରାମର ଲୋକମାନେ ସେହି ଦୂଷିତ ପାଣି ପିଇ ବିଭିନ୍ନ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ସମୟେ ସମୟେ ପାଣିରେ ରହୁଥିବା ମାଛ ପ୍ରଭୃତି ମଧ୍ୟ ବିଷାକ୍ତ ପାଣି ହେତୁ ମରିଯାଆନ୍ତି । ପୋକମରା ଔଷଧ ଓ ଡ଼ି. ଡ଼ି. ଟି. ପ୍ରଭୃତି ପାଣିରେ ମିଶିଲେ ତାହା ସମସ୍ତଙ୍କର କ୍ଷତିସାଧନ କରିଥାଏ ।

ଅନ୍ୟ କେତେକ କାରଣରୁ ମଧ୍ୟ ପାଣି ଦୂଷତ ହୋଇଥାଏ ସେଗୁଡ଼ିକ ହେଲ, ପାଣିରେ ଅପରିଷ୍କାର ପଦାର୍ଥ ପିଙ୍ଗିବା ଯଥା: ମୃତ ଦେହ ଓ ମଳ ମୂତ୍ର ପ୍ରଭୃତିକୁ ପାଣିରେ ପକାଇ ଦେଲେ ପାଣି ଦଷିତ ହୋଇଯାଏ ।

ତେଣୁ ପାଣିରେ କୌଣସି ଅପରିଷ୍କାର ଓ ଆବର୍ଜନା ପକାଇବା ଉଚିତ ନୁହେଁ । ଯେଉଁ ପୋଖରୀ ବା ନଦୀର ପାଣିକୁ ଆମେ ପିଉଥାଉଁ, ସେଥିରେ ଯେପରି ନାଳ ନର୍ଦ୍ଦମାର ଦୂଷିତପାଣି ନ ମିଶେ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ଖରାପ ପାଣି ଗୋଟିଏ ସ୍ଥାନରେ ଗଚ୍ଛିତ ହୋଇ ରହିଲେ ତହିଁରେ ମଶା ଜନ୍ମଗ୍ରହଣ କରନ୍ତି । ତେଣୁ ପାଣି ଯେପରି ଖାଲ ଜାଗାମାନଙ୍କରେ ଜମି ନ ରହି ନାଳ ଯୋଗେ ବାହାରକୁ ବାହାରିଯାଏ ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ନାଳ ନର୍ଦ୍ଦମାକୁ ଉପଯୁକ୍ତ ଭାବରେ ସଫା ରଖି ତହିଁରେ ଫିନାଇଲ୍ ପ୍ରଭୃତି ଛୋଟ ଛୋଟ ଜୀବାଣୁ ନାଶକ ଔଷଧ ଛିଞ୍ଚିବା ଆବଶ୍ୟକ । ପାଣିକୁ ଛାଣିକରି ତାହାକୁ ନିଆଁରେ ଗରମ କରି ପାନକରିବା ହିତକର । ଦୂଷିତ ପାଣି ପାନ ନକରି ନଳକୂପ କିମ୍ବା କୂଅ ଅଥବା ପୋଖରୀ ବା ନଦୀର ପାଣିକୁ ବିଶୋଧିତ କରି ସେହି ନିର୍ମଳ ପାଣିକୁ ପିଇବା ଦରକାର ।

ମାଟି—ମାଟି ଆମର ମା । ଏହି ମାଟିର ସନ୍ତାନ ହୋଇ ଆମେ ତାହାରି ଉପରେ ସବୁକିଛି ଲୀଳାଖେଳା କରୁଛେ । ସେହି ମାଟି ପାଇଁ ଆମେ ବଞ୍ଚି ରହିଛୁ । ପାଣି ପବନପରି ମାଟିର ଆବଶ୍ୟକତା ମଧ୍ୟ ରହିଛି । ଏହି ମାଟି ମା'ର ଛାତିରେ ଫସଲ ଫଳାଇ ଆମେ ବଞ୍ଚିଛୁ । ତେଣୁ ମାଟି ମା'କୁ ଆମେ ସମ୍ମାନ ଦେବା ଓ ପୂଜା କରିବା ଦରକାର । କେତେକ ଜାତିର ଲୋକ ମଧ୍ୟ ମାଟି ମା'ର ପୂଜା କରିଥାଆନ୍ତି । ଯେଉଁ ମାଟି ଆମର ଏତେ ଉପକାର କରୁଛି, ତାହାପାଇଁ ଆମେ ସମୟେ ସମୟେ କ୍ରୁର ହୋଇଉଠୁଛେ । ଫଳରେ ମାଟି ମଧ୍ୟ ଆମ ଉପରେ ଦାଉ ସାଧିକରି ଅସୁବିଧାରେ ପକାଉଛି ।

ମାଟିକୁ ପରୀକ୍ଷାକରି ଦେଖିଲେ ଜଣାଯାଏ, ତହିଁରେ ଅନେକ ପ୍ରକାର ପଦାର୍ଥ ମିଶିଥାଏ । ସେଗୁଡ଼ିକ ସ୍ୱାସ୍ଥ୍ୟ ଉପଯୋଗୀ

ନହେଲେ ଆମେ ତହିଁରେ ରାସାୟନିକ ସାର ମିଶାଇ ତାହାକୁ ଅଧିକ ଉର୍ବର କରିଥାଉଁ । ମାଟି ଅଧିକ ଉର୍ବର ହେଲେ ଭଲ ଫସଲ ଉତ୍ପନ୍ନ ହୁଏ । ମାତ୍ର ଆମେ ଯେତେବେଳେ ଶସ୍ୟ ଜମିରେ ଅଧିକ ପରିମାଣରେ ସାର ପ୍ରୟୋଗକରୁ, ସେତେବେଳେ ତାହା ଅନୁର୍ବର ହୋଇଯାଏ । ତହିଁରେ ଭଲ ଫସଲ ହୁଏ ନାହିଁ । ସେହିପରି ମଧ୍ୟ ପୋକମରା ବିଷାକ୍ତ ଔଷଧର ପ୍ରୟୋଗ ହେତୁ ମାଟି ଦୂଷିତ ହୋଇଯାଏ । ତ୍ଦ୍ୱାରା ଫୁଲଫଳ ସବୁଶ ଉତ୍ପାଦିତ ପନିପରିବା ମଧ୍ୟ ବିଷାକ୍ତ ହୋଇଥାଏ । ସେହି ବିଷାକ୍ତ ଖାଦ୍ୟଦ୍ରବ୍ୟ ଖାଇଲେ ଆମେ ରୋଗରେ ପୀଡ଼ିତ ହେଉଁ । ତେଣୁ ମାଟିରେ ଅଧିକ ରାସାୟନିକ ସାର ଓ ବିଷାକ୍ତ ଔଷଧ ପ୍ରୟୋଗ କରିବା ଉଚିତ ନୁହେଁ । ଯେତେ କମ୍ ପରିମାଣରେ, ଆବଶ୍ୟକ ଅନୁସାରେ ସାର ଓ ଔଷଧ ଶସ୍ୟଜମିରେ ପ୍ରୟୋଗକରିବା ଦରକାର ।

ମାଟିରେ ପଚାସଡ଼ା ପଦାର୍ଥ ପକାଇଦେଲେ ତାହା ଖରାପ ହୋଇଯାଏ । ଏହି ମାଟି ମଧ୍ୟ ଆମର ରୋଗବ୍ୟାଧି-ଚିକିତ୍ସା କ୍ଷେତ୍ରରେ ସାହାଯ୍ୟ କରିଥାଏ । ସେପରି ମାଟି ଯେତେ ବିଶୁଦ୍ଧ ହେବ ତାହାର ଗୁଣ ସେତେ ବୃଦ୍ଧି ପାଇବ । ମାତ୍ର ମାଟି ଦୂଷିତ ହୋଇଥିଲେ ସେପରି କଲ୍ୟାଣପ୍ରଦ ଫଳମିଳେ ନାହିଁ ।

ମାଟିରେ କଳକାରଖାନାର ରାସାୟନିକ ପଦାର୍ଥ ମିଶି ତାହା ଖରାପ ହୋଇଯାଏ । ଫଳରେ ସେମାଟି ଚାଷଉପଯୋଗୀ ହୋଇ ନ ଥାଏ । ତେଣୁ ଆମେ ଏହି ମାଟି ମା'କୁ କିପରି ସୁନ୍ଦର ଓ ଅଧିକ ନିର୍ମଳ ରଖି ଏହାକୁ ଦୂଷିତ କରିନଦେବୁ, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ତାହେଲେ ଏହି ମାଟି ମା' ବକ୍ଷରେ ଆମେ ସୁନାର ଫସଲ ଫଳାଇ ନିଜେ ଆନନ୍ଦରେ ରହି ମାଟି ମା'କୁ ମଧ୍ୟ ହସାଇ ପାରିବୁ ।

## ଶବ୍ଦ

ପାଣି, ପବନ ଓ ମାଟିପରି ଶବ୍ଦ ମଧ୍ୟ ଆଜିକାଲି ଦୂଷିତ ହେବାକୁ ବସିଲାଣି । ଏଠାରେ ଦୂଷିତ ଶବ୍ଦ କହିଲେ ଅଶାନ୍ତମୟ ପରିବେଶକୁ ବୁଝାଇଥାଏ । ଯେଉଁ ପରିବେଶରେ ସଦାବେଳେ କୋଳାହଳ ଶବ୍ଦ ଓ ଭୟଙ୍କର ଧ୍ୱନି ପ୍ରତିଧ୍ୱନି ଲାଗି ରହିଥାଏ, ତାହା ସେଠାକାର ବାତାବରଣକୁ ଦୂଷିତ କରିଦିଏ ।

ଆଜିର ଦୁନିଆଁରେ ଅଧିକ କଳକାରଖାନା ଗଢିଉଠୁଛି । ଫଳରେ କଳକାରଖାନାଗୁଡ଼ିକର ଘର୍ଘର ତୀବ୍ର ଶବ୍ଦ ମନୁଷ୍ୟର ଶାନ୍ତ ବାତାବରଣକୁ ବିଷାକ୍ତକରି ଦେଉଛି । ସେହି ଭୟଙ୍କର ଘର୍ଘର ଶବ୍ଦ ହେତୁ ମାନସିକ ବିକୃତି ଓ ଅଶାନ୍ତି ସୃଷ୍ଟିହେଉଛି । ତା'ସହିତ ବିଭିନ୍ନ ଯାନବାହନ (ଗାଡ଼ି)ର ଶବ୍ଦ ଓ ଧୂଆଁ ମନୁଷ୍ୟକୁ ଅସ୍ତବ୍ୟସ୍ତ କରି ପକାଉଛି । ଅଧିକ ଜନ ସମାଗମ ସହିତ ଶବ୍ଦର ଅଶାନ୍ତ ପରିବେଶ ମନୁଷ୍ୟକୁ ଶାନ୍ତିଦେଇ ପାରୁ ନାହିଁ । ଯେଉଁଠି ଅଳ୍ପକେଇପଦ କଥାକହିଲେ କାମହେବ, ସେଠାରେ କେତେକଲୋକ ଅଯଥା କଥାବାର୍ତ୍ତା କରିଥାନ୍ତି । ଫଳରେ ନିଜର ଆୟୁ ହ୍ରାସହୁଏ ଓ ମୁଣ୍ଡ ବିନ୍ଧିଥାଏ । ତେଣୁ ଯେତେଦୂର ସମ୍ଭବ କମ୍ କଥା ଓ ଅଧିକ କାମ ଆମ୍ଭ ଜୀବନର ଲକ୍ଷ୍ୟହେବା ଆବଶ୍ୟକ । ବରଂ ମୌନ ଅବଲମ୍ବନ କରିବା ଓ ବୁଦ୍ଧଦେବଙ୍କପରି ନିରବ ରହିବା ଦରକ... ଏହାଦ୍ୱାରା ଆମେ ଶାନ୍ତି ଲାଭକରି ପାରିବା ।

ଶବ୍ଦର ଏକ ଗତିଥାଏ । ଶବ୍ଦ ପବନ ମାଧ୍ୟମ... ଗତିକରେ । ଆମେ ଭୟଙ୍କର ବିସ୍ଫୋରଣ ଓ ଗୋଳାବା... ପ୍ରୟୋଗ କରୁଥିବାରୁ ଶବ୍ଦ ଓ ବାୟୁ ବିଷାକ୍ତ ହୋଇଥା... ଫଳରେ ଏହା ଜୀବଜଗତ ପାଇଁ ସମସ୍ୟା ହୋଇଉ... ଯେଉଁ ଶବ୍ଦତରଙ୍ଗ ରହିଛି, ତାହା ମଧ୍ୟ ଭୟଙ୍କର ବିସ୍ଫୋ... ହେତୁ ବିଶୃଙ୍ଖଳିତ ହୋଇଯାଏ । କେତେକ ସମୟରେ ଭୟଙ୍କ... ଶବ୍ଦ ଆମର କାନରେ ବାଜିଲେ ଶ୍ରବଣ ଶକ୍ତି ହ୍ରାସ ପାଏ ।

ତେଣୁ ଯେତେଦୂର ସମ୍ଭବ କଳକାରଖାନା ଓ ଗାଡ଼ିର ଶବ୍ଦ... ହ୍ରାସ କରିବାକୁ ପଡ଼ିବ । ବାୟୁମଣ୍ଡଳ ଯେପରି ଦୂଷିତ ନହୁ... ସେଥିପ୍ରତି ଧ୍ୟାନ ଦେବାକୁ ହେବ । ଅନାବଶ୍ୟକ ଅଧିକ... କଥାବାର୍ତ୍ତା ନହେବା ଭଲ । ମୌନ ଅବଲମ୍ବନ ଆବଶ୍ୟକ... କୌଣସି ପ୍ରକାର ବିସ୍ଫୋରଣ ନ ଘଟାଇବା ଉଚିତ । ଶବ୍ଦ ତରଙ୍ଗର... ବେତାରର ବ୍ୟବହାର କମ କରିବା ହିତକର । ତାହେଲେ ଆମ... ମୁନିଋଷିଙ୍କ ମତାନୁସାରେ ଆମେ ଶବ୍ଦକୁ ସାଧାରଣଭାବରେ... ଗ୍ରହଣ ନ କରି ତାହାକୁ ଏକ ଶବ୍ଦ ବ୍ରହ୍ମ ବୋଲି ସମ୍ମାନ ଦେଇ... ପାରିବୁ । ଏହାଫଳରେ ଆମେ ନିଜେ ଶାନ୍ତି ଲାଭକରିବା ସଙ୍ଗେ... ସଙ୍ଗେ ପରିବେଶକୁ ମଧ୍ୟ ଶାନ୍ତରଖି ପାରିବା ।

## ସମାଧାନ

ଆମର ପ୍ରାକୃତିକ ପରିବେଶ ଯେ ଦିନକୁଦିନ ବିଷାକ୍ତ ହୋଇଉଠୁଛି, ଏହା ସମସ୍ତେ ଅନୁଭବ କରିପାରୁଥିବେ । ଏପରି ସମସ୍ୟାର ସମାଧାନପାଇଁ ଆମକୁ ଉପଯୁକ୍ତ ପଦକ୍ଷେପ ନେବାକୁ ପଡ଼ିବ । ତା'ନହେଲେ ଦିନ ଆସିବ, ଯେତେବେଳେ ମନୁଷ୍ୟ ଟିକିଏ ଶୁଦ୍ଧ ପବନ, ନିର୍ମଳ ପାଣି ମଧ୍ୟ ପାଇପାରିବ ନାହିଁ ।

ପ୍ରଥମେ ଆମର ଉପଯୁକ୍ତ ଶିକ୍ଷା ଆବଶ୍ୟକ । ଅନେକ ବ୍ୟକ୍ତି ଦୂଷିତ ପରିବେଶ ସମ୍ବନ୍ଧରେ କିଛି ଜାଣିନଥାନ୍ତି । ସେମାନେ ମୁଖ୍ୟତଃ ପରିବେଶକୁ ବିଷାକ୍ତ କରିଥାଆନ୍ତି । ଆମର ସ୍ୱାସ୍ଥ୍ୟରକ୍ଷା ଓ ପରିବାର ପରିଚ୍ଛନ୍ନତା ସମ୍ବନ୍ଧରେ ଧାରଣା ହେବା ଆବଶ୍ୟକ । ତା'ହେଲେ ଆମେ ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିପାରିବା । ଯଦି ଆମ୍ଭେମାନେ ଆଜିଠାରୁ ସଚେତନ ନହେବୁ ତାହେଲେ ଏହି ମାନବସମାଜ ବିଷାକ୍ତ ପରିବେଶ ମଧ୍ୟରେ ଆତଯାତ ହୋଇ ଶେଷରେ ମୃତ୍ୟୁବରଣ କରିବ ।

ଏହି ସମସ୍ତ ଦୂଷିତ ପରିବେଶକୁ ସମାଧାନ କରିବାପାଇଁ ବୃକ୍ଷରୋପଣ ଏହାର ଅନ୍ୟଏକ ବିଶେଷ ପଦକ୍ଷେପ । ଭାରତର ପ୍ରଧାନମନ୍ତ୍ରୀ ତାଙ୍କର କୋଡ଼ିଏଦଫା (ବିଂଶସୂତ୍ରୀ) କାର୍ଯ୍ୟକ୍ରମରେ ସେଥିପ୍ରତି ଗୁରୁତ୍ୱ ଦେଇଛନ୍ତି । ଆମେ ବୃକ୍ଷ ନଷ୍ଟ ନ କରି ଯଦି ଗଛଲଗାଇବୁ ତା'ହେଲେ ଆମର ପ୍ରାକୃତିକ ପରିବେଶ ଆମ ଜୀବନଧାରଣ ନିମନ୍ତେ ସାହାଯ୍ୟ କରିବ । ଗଛଲତା ଦୂଷିତ ବାୟୁକୁ ବିଶୁଦ୍ଧକରି ଆମକୁ ଦେଉଥିବାରୁ ଆମେ ବଞ୍ଚିଛୁ । ଗଛଲତା ଲୋପ ପାଇଗଲେ ଜୀବଜଗତ ଧ୍ୱଂସ ହୋଇଯିବ । ସେହିପରି ମଧ୍ୟ ଗଛଲତା ଓ ଜଙ୍ଗଲଥିବାରୁ ବର୍ଷା ହୋଇଥାଏ ।

ପାଣିର ଅଭାବକୁ ଦୂରକରିବାପାଇଁ ବୃକ୍ଷରୋପଣ ଆବଶ୍ୟକ । ସେହି ଗଛଲତା ମଧ୍ୟ ମାଟିକୁ ବିଷାକ୍ତ ଅବସ୍ଥାରୁ ସୁଧାରି ଦେଇଥାଏ । ମାଟିର ଏକପ୍ରକାର ଧାରଣ ଶକ୍ତି ଓ ଉର୍ବରତା ଏହି ଗଛଲତା ହେତୁ ସମ୍ଭବ ହୋଇଥାଏ । ଶବ୍ଦର ଦୁଷିତ ଅବସ୍ଥା ମଧ୍ୟ ବୃକ୍ଷଲତା ନିୟନ୍ତ୍ରଣ କରିଥାଏ । ତେଣୁ ଆମେ ସମସ୍ତେ ନିଜନିଜ ଘରେ ଯଦି କିଛି କିଛି ଗଛଲଗାଇ ତାହାକୁ ବଞ୍ଚାଇରଖି ପାରିବୁ, ତା'ହେଲେ ଆଜିର ଏହି ବିଷାକ୍ତ ଓ ଦୁଷିତ ପ୍ରାକୃତିକ ପରିବେଶ ଅନେକାଂଶରେ ହ୍ରାସ ହୋଇ ପାରିବ ।

ସର୍ବୋପରି ଆମମାନଙ୍କର ସଚେତନତା, ଶିକ୍ଷା ଓ ପ୍ରାକୃତିକୁ ହତ୍ୟା ନକରି ଏହାକୁ ଅଧିକରୁ ଅଧିକ ଭଲପାଇବା ଦରକାର । ବିଜ୍ଞାନ ଯୁଗରେ ଆମେ କୃତ୍ରିମତାକୁ ଅଧିକ ଗୁରୁତ୍ୱନଦେଇ ପ୍ରକୃତି ଉପରେ ନିର୍ଭର କଲେ ପ୍ରାକୃତିକ ପରିବେଶର ଦୁଷିତ ଅବସ୍ଥା ହ୍ରାସ ହୋଇପାରିବ । ଫଳରେ ମାନବ ସମାଜ ସୁଖଶାନ୍ତିରେ ଜୀବନ ଅତିବାହିତ କରି ପାରିବ ।

ଡି. ଏ. ଭି. କଲେଜ,
କୋରାପୁଟ–୭୬୪୦୨୦



ପ୍ରଥିବି
ଗୃହିଣୀ ସୈନିକ
ଦୁର୍ଗାମେଢ଼

ଗୃହିଣୀ ସୈନିକ ପୂଜା ତୋରଣ
୧୯୯୫





# ବୃକ୍ଷର ମହତ୍ତ୍ୱ

ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ

## ପିଲାଦିନର ଶୁଣା କଥା

ଓଷ୍ଟଇଣ୍ଡିଆ କଂପାନୀ ଅମଳ । ୧୮୬୬ ନଅଙ୍କ ଦୁର୍ଭିକ୍ଷ ପରେ କେନ୍ଦ୍ରାପଡା କେନାଲ ଖୋଳା ସରିଥାଏ । ସେତେବେଳେ ଜଳସେଚନ ବିଭାଗର ଉଚ୍ଚ କର୍ମଚାରୀ ଅଧିକାଂଶ ଗୋରା ସାହେବ । ମଝିରେ ମଝିରେ କେନାଲ ଜଳସେଚନ ଓ ଶାଖା କେନାଲ ଖୋଳା କାର୍ଯ୍ୟ କେଉଁଠି କିପରି ଚାଲିଛି, ତା'ର ତଦାରଖ କରିବା ପାଇଁ ଗୋରା ସାହେବମାନେ ଯାଆନ୍ତି ।

ଥରେ ବୈଶାଖମାସ ଖରାବେଳେ ଜଣେ ଗୋରା ସାହେବ ଘୋଡ଼ାରେ ଚଢ଼ି କେନ୍ଦ୍ରାପଡା କେନାଲ ବନ୍ଧରେ ଯାଉଥିଲେ । ସେତେବେଳେ କେନାଲରେ ପାଣି ନ ଥିଲା । ଖୋଳା ଖୋଳି ପାଇଁ ପାଣି ଛଡା ବନ୍ଦ ଥିଲା । ସାହେବ ଜଣକ ବହୁଦୂର ଖରାରେ ଯାଇ କ୍ଳାନ୍ତ ହୋଇ ପଡ଼ିଥିଲେ । ବନ୍ଧ ଉପରେ ଗୋଟିଏ ଜାଗାରେ ଗଛଟିଏ ଥିଲା । ତା'ର ଛାଇରେ ଘୋଡାଟିକୁ ବାନ୍ଧି ଗଛ ମୂଳରେ ବସିପଡ଼ିଲେ । ଶୋଷରେ ପାଟି ଅଠା ହୋଇଗଲାଣି । କିନ୍ତୁ କେନାଲ ତ ଶୁଖିଲା । ବନ୍ଧ ତଳକୁ କେତୋଟି ଘର ଦେଖିଲେ । ଜଣେ ବୃଦ୍ଧ ଗୋଟିଏ ନଡ଼ିଆ ଚାରା ଲଗାଇବା ପାଇଁ ଆଣି ମାଟି ଖୋଳୁଛି । ସାହେବ ହାତଠାରି ବୃଦ୍ଧଟିକୁ କିଛି ପାଣି ମାଗିଲେ । ବୃଦ୍ଧଟି ଘରୁ ଦୁଇଟି ପଇଡ ଓ କଟୁରୀଟିଏ ଆଣି ଗଛ ଛାଇରେ ପଇଡ଼ କାଟି ପାଣିତକ ସାହେବଙ୍କୁ ପିଇବାକୁ ଦେଲେ । ସାହେବତ ପାଣି ପିଇଦେଇ ଅତ୍ୟନ୍ତ ଆଶ୍ୱସ୍ତ ହେଲେ । ପରେ ବୃଦ୍ଧ ଜଣକ ପଇଡ଼ କାଟି ନଡ଼ିଆ ନାଳି ଶସ ସାହେବଙ୍କୁ ଖାଇବାକୁ ଦେଲେ । ସାହେବ ସେତକ ଖାଇ ଅତ୍ୟନ୍ତ ଆନନ୍ଦିତ ଚିତ୍ତରେ ବୃଦ୍ଧଙ୍କୁ ପଚାରିଲେ ଏ ଫଳ କେଉଁଠୁ ପାଇଲ ! ବୃଦ୍ଧ ତାର ବାଡ଼ିରେ ଥିବା ଉଚ୍ଚ ନଡ଼ିଆଗଛ ଦେଖାଇ ଦେଲେ । ସାହେବ ଉପରକୁ ଚାହିଁ ଦେଖିଲେ ସେ ଯେଉଁ ଫଳର ଜଳ ଓ ଶସ ଖାଇଥିଲେ, ସେହିପରି ଫଳ ସେହି ଉଚ୍ଚ ଗଛରେ ଅନେକ ଝୁଲୁଛି । ସାହେବ ଉଲ୍ଲାସରେ କହିଲେ—ଭାରତବର୍ଷ କି ବିଚିତ୍ର ଦେଶ ! ଗୋଟିଏ ଗଛରେ ମଦ ଓ ରୁଟି ଫଳେ ।

ଏହାପରେ ସାହେବ ବୃଦ୍ଧଙ୍କ ସହିତ କିଛି ସମୟ ଆଳାପ ପ୍ରସଙ୍ଗରେ ପଚାରିଲେ –

ତୁମେ କି ଗଛ ଲଗାଉଛ ?

ବୃଦ୍ଧ କହିଲେ, ଆପଣ ଯେଉଁ ଗଛର ଫଳର ପାଣି ଓ ଶସ ଖାଇଲେ ସେହି ଗଛ ଲଗାଉଛି ।

ସାହେବ—କେତେବର୍ଷ ପରେ ଏ ଫଳ ଫଳିବ?

ବୃଦ୍ଧ—ଅନ୍ତତଃ ଦଶବର୍ଷ ପରେ ।

ସାହେବ–ତୁମର ବୟସ କେତେ?

ବୃଦ୍ଧ–ଶତସ୍ତରି ବର୍ଷ ।

ସାହେବ–ତୁମେ ଆଉ କେତେବର୍ଷ ବଞ୍ଚିବ ?

ବୃଦ୍ଧ–ପାଚିଲା ଡାଳ, ଖସିଲେ ଗଲା । କିଏ କହିବ କାଲିକି ଥିବି ନ ଥିବି!!

ସାହେବ–ତୁମେତ ଫଳ ଖାଇବାର ଆଶା ନାହିଁ । ଏତେ କଷ୍ଟ କରି ଗଛ ଲଗାଉଛ କାହିଁକି?

ବୃଦ୍ଧ–ଯେଉଁ ଗଛର ଫଳ ଆଣି ଆପଣଙ୍କୁ ଦେଲି ଏବଂ ଆପଣ କେଉଁ ଅଜଣା ରାଇଜରୁ ଆସି ଅସମୟରେ ଯେଉଁ ଫଳ ଖାଇ ଏତେ ତୃପ୍ତ ହେଲେ, ସେ ଗଛ ଲଗାଇଥିଲେ ମୋର ବାପା । ସେତେବେଳେ ତାଙ୍କ ବୟସ ପଞ୍ଚାଅଶୀ । ଗଛ ଲଗାଇବାର ଦୁଇବର୍ଷ ପରେ ସେ ଦେହତ୍ୟାଗ କଲେ । ତାଙ୍କ ଲଗାଇଥିବା ଗଛର ଫଳ ମୁଁ ଏବଂ ଆଉ ଅନେକେ ତ ଖାଇଲୁଣି । ଆହୁରି କେତେବର୍ଷ ସେ ଗଛ ଫଳ ଦେଉଥିବ । ତାହା ମଧ୍ୟ ଜଣାନାହିଁ । ସାହେବ ! ଆପଣତ ଅନେକ ପାଠ ପଢିଛନ୍ତି । ଆମେତ ପାଠ ଶାଠ ପଢିନାହୁଁ । ହିତମାଟି ହିତରେ ନଦି ପେଟ ପୋଷୁ । କିନ୍ତୁ ମିଲଟି କାଳରୁ ବାପ ଅଜାଙ୍କ ଦେଖାଦେଖି ଶିଖିଛୁ–ଗୃହସ୍ଥ ଘରର ସବୁଠାରୁ ବଡ଼ ବନ୍ଧୁ ଗଛ । ଗଛ, ତୋଟା ଗାଁ ମାଟିର ଶୋଭା । ପଥିକର ଅବେଳାର ସାଥୀ । ଆଶ୍ରୟ ଦାତା । ମୁଁ ଯେଉଁ ଗଛ ଲଗାଉଛି ତାର ଫଳ ମୁଁ ଭୋଗ କରିବି, ଏପରି ଆଶାରେ କରୁନାହିଁ, ମୋ ପରେ ବହୁଲୋକ ଏ ଗଛର ଫଳ ଭୋଗ କରି ଉପକୃତ ହେବେ ।

ସାହେବଙ୍କ ବିସ୍ମରରେ ଅର୍ଦ୍ଧ ଉଲଗ୍ନ, ଅଶିକ୍ଷିତ ଜଣେ ଗ୍ରାମବାସୀଙ୍କଠାରେ ଏପ୍ରକାର ମହତ୍ତ୍ୱ ଓ ଉଚ୍ଚ ଆଦର୍ଶର ପରିଚୟ ପାଇ ସାହେବ ମୁଗ୍ଧ ହେଲେ ଏବଂ ଶେଷରେ ବିଦାୟ ହେବାବେଳେ ବୃଦ୍ଧଙ୍କୁ କିଛି ଟଙ୍କା ଦେବାକୁ ଚାହିଁଲେ । କିନ୍ତୁ ବୃଦ୍ଧ ହସି ହସି ସାହେବଙ୍କୁ କହିଲେ–

ଆପଣ ଆମର ଅତିଥି, ଅତିଥିର ସେବା, ଭଗବାନଙ୍କର ସେବା, ଏହା ଆମର ଧର୍ମ । ପାରିଶ୍ରମିକ ବା ପୁରସ୍କାର ନେବା ଦ୍ୱାରା ଅତିଥି ଧର୍ମ ତ ଲଙ୍ଘନ ହୁଏ, ଭଗବାନଙ୍କର ସେବା ମଧ୍ୟ ହୁଏ ନାହିଁ । ତା' ଛଡ଼ା ମୁଁ ତ ନିଃସ୍ୱ ଭିକାରୀ ନୁହେଁ, ମୋର ସଂସାର ଚଳିବା ପାଇଁ ଭଗବାନ ମୋତେ ସାମାନ୍ୟ କିଛି ଦେଇଛନ୍ତି ସେଥିରେ ତ ବେଶ୍ ଚଳି ଯାଉଛି । "

ସାହେବ ଏ ଦେଶର ଜଣେ ସାଧାରଣ ବ୍ୟକ୍ତିର ଏତାଦୃଶ ନିଃସ୍ୱାର୍ଥସେବା, ଆଦର୍ଶ ଓ ନିର୍ଲୋଭ ଚରିତ୍ର ଏବଂ ଅତିଥି ପରାୟଣତା ଦେଖି ବିସ୍ମିତ ହେଲେ । ତାଙ୍କୁ ଅନେକ ଧନ୍ୟବାଦ ଦେଇ ବିଦାୟ ନେଲେ ।

ବୃକ୍ଷର ଉପଯୋଗିତା ସୃଷ୍ଟିର ଆଦି କାଳରୁ ଉପଲବ୍ଧି କରାଯାଇଛି । ମନୁଷ୍ୟ ସୃଷ୍ଟି ନିମିତ୍ତ ପ୍ରାଚୀନବର୍ହି ତାଙ୍କର ଦଶପୁତ୍ର ପ୍ରଚେତସମାନଙ୍କୁ ଆଦେଶ ଦେଲେ । ସେମାନେ ସମୁଦ୍ରରୁ ବାହାରି ଦେଖିଲେ ସମଗ୍ର ପୃଥିବୀ ପୃଷ୍ଠ ବୃକ୍ଷଲତାଦିରେ ଆଚ୍ଛାଦିତ ହୋଇଛି । ସେମାନେ କ୍ରୁଦ୍ଧହୋଇ ନିଜ ବଳରେ ନିଜ ମୁଖରୁ ଅଗ୍ନି ଓ ପବନ ସୃଷ୍ଟି କରି ବୃକ୍ଷଲତାଗୁଡ଼ିକ ପୋଡ଼ି ଦେବାକୁ ଆରମ୍ଭ କଲେ । ଏହ ବନସ୍ପତିମାନଙ୍କର ରାଜା ସୋମ ସେମାନଙ୍କୁ ଶାନ୍ତ କରି କହି

ମା ଦ୍ରୁମେଭ୍ୟୋ ମହାଭାଗା ଦୀନେଭ୍ୟୋ ଦ୍ରୋଗ୍ଧୁମ
ବିବର୍ଦ୍ଧୟିଶବୋ ଯୁୟଂ ପ୍ରଜାନାଂ ପତୟେ ସ୍ମୃତାଃ ।
ଅହୋ ପ୍ରଜାପତିପତି ର୍ଭଗବାନ ହରିରବ୍ୟୟଃ ।
ବନସ୍ପତୀନୋଷଧୀଶ୍ଚ ସସର୍ଜୋର୍କମିଶଂ ବିଭୁଃ ॥
ଅନ୍ନଂ ଚରାଣାମଚର ହ୍ୟପଦଃ ପାଦଚାରିଣାଂ
ଅହସ୍ତା ହସ୍ତଯୁକ୍ତାନାଂ ଦ୍ୱିପଦାଂଚ ଚତୁ
ଯୁୟଂ ଚ ପିତ୍ରାନ୍ୱାଦିଷ୍ଟା ଦେବଦେବେନ ଚାନଘାଃ
ପ୍ରଜାସ୍ୱର୍ଗାୟ ହି କଥଂ ବୃକ୍ଷାନ୍ ନିର୍ଦଗ୍ଧୁମର୍ହଥ ॥

(ଶ୍ରୀମଦ୍‌ଭାଗବତମ୍ ୬ ।୪ । ୭–୧୦)

ହେ ମହାଭାଗବୃନ୍ଦ ! ବୃକ୍ଷଗଣ ଅତି ନିରୀହ । ଏମାନଙ୍କ ଉପରେ କ୍ରୋଧ କରିବା ଆପଣମାନଙ୍କ ଉଚି ନୁହେଁ । ଆପଣମାନେ ପ୍ରଜାବୃଦ୍ଧି କରିବାକୁ ଇଚ୍ଛୁକ ଭଗବାନ ଶ୍ରୀହରି ପୃଥିବୀର ପ୍ରାଣୀମାନଙ୍କ ଖାଦ୍ୟ ରୂପେ ବୃକ୍ଷ ଲତା ଓ ଶସ୍ୟାଦି ସୃଷ୍ଟି କରିଛନ୍ତି । ପୁଷ୍ପଲତା ଭ୍ରମର ପ୍ରଭୃତିଙ୍କର, ଘାସକୁ ଗୋ-ମହିଷାଦି ପଶୁମାନଙ୍କ ଏବଂ ଧାନ ଓ ଯବ ପ୍ରଭୃତି ମନୁଷ୍ୟମାନଙ୍କର ଖାଦ୍ୟରୂପେ ସୃଷ୍ଟି ହୋଇଛି । ଭଗବାନ୍ ଆପଣମାନଙ୍କୁ ପ୍ରଜା ସୃଷ୍ଟି କରିବା ପାଇଁ ଆଦେଶ ଦେଇଛନ୍ତି । ତେବେ ଆପଣମାନେ ପ୍ରାଣୀମାନଙ୍କର ଖାଦ୍ୟକୁ ପୋଡ଼ି ଜାଳି ଧ୍ୱଂସ କରୁଛନ୍ତି କାହିଁକି ? ଆପଣମାନେ ଏକାର୍ଯ୍ୟରୁ ନିବୃତ୍ତ ହୁଅନ୍ତୁ ।

ବୃକ୍ଷଲତାଦି ସୃଷ୍ଟିର କେଉଁ ଆଦିକାଳରୁ ପ୍ରାଣୀମାନଙ୍କର ଖାଦ୍ୟ ଓ ହିତକାରୀ ପଦାର୍ଥ ରୂପେ ବର୍ଣ୍ଣିତ ହୋଇଛି । ତଥାପି ମନୁଷ୍ୟ ଅତି ମୋହଗ୍ରସ୍ତ ହୋଇ ନିର୍ମମଭାବରେ ସେହି ହିତକାରୀ ବସ୍ତୁଗୁଡ଼ିକୁ ସଭ୍ୟତା, ବିଜ୍ଞାନ ଓ ଶିଳ୍ପର ବିକାଶ ନାମରେ ଧ୍ୱଂସ କରି ଚାଲିଛନ୍ତି । ସଭ୍ୟତା ବଢିଲା, ବିଜ୍ଞାନ ବଢିଲା, ଶିଳ୍ପ ବଢିଲା କିନ୍ତୁ ପ୍ରକୃତିର ସ୍ୱଚ୍ଛନ୍ଦ ଗତି ଓ ଚିରନ୍ତନ ନୟମର ବ୍ୟତିକ୍ରମ ହେଲା । ଅକାଳେ ମରୁଡ଼ି, ଅସମୟେ ପ୍ରବଳ ବର୍ଷା, ବାତ୍ୟା, ସାଇକ୍ଲୋନ୍, ଟର୍ନେଡ଼ୋ– ଏହି ସମସ୍ତ ପ୍ରାକୃତିକ ବିପାତ ମୂଳରେ ସେଇ ବୃକ୍ଷଲତାର ଧ୍ୱଂସ ସାଧନ । ତେବେ ବିଜ୍ଞାନୀ ମନୁଷ୍ୟ ଏତେଦିନ ପରେ ନିଜର ଭୁଲ ବୁଝିପାରିଛି–ଏବେ ବୃକ୍ଷରୋପଣର ଆନ୍ଦୋଳନ ହେଉଛି କିନ୍ତୁ ନେଡ଼ିଗୁଡ଼ତ କହୁଣୀକି ବୋହି ଯାଉଛି !! ଜୀବନ ବନ୍ଧୁକୁ ଧ୍ୱଂସ କରି ପୁନର୍ଜୀବନ ପାଇବା ପାଇଁ ଅପ୍ରାଣ ଚେଷ୍ଟା ଚାଲିଛି ।

ଭାରତବର୍ଷର ପ୍ରାଚୀନ ସଂସ୍କୃତି ସୃଷ୍ଟିର ଯାବତୀୟ ବୈଚିତ୍ର୍ୟର ଯଥାର୍ଥ ନିରୂପଣ କରିଛି । ଭଗବତ୍ ପ୍ରାପ୍ତିର ଶ୍ରେଷ୍ଠ ସାଧନ ପ୍ରେମ ଓ ଭକ୍ତିପଥ । ସେହି ଭକ୍ତି ପଥର କଳିଯୁଗର ମହାନ୍ ପ୍ରବର୍ତ୍ତକ କରୁଣାବତାର ଶ୍ରୀଚୈତନ୍ୟ ତାଙ୍କ ଭକ୍ତମାନଙ୍କୁ ବୃକ୍ଷପରି ସହିଷ୍ଣୁ ହେବା ପାଇଁ ଉପଦେଶ ଦେଇଛନ୍ତି । ବୃକ୍ଷର ମାହାତ୍ମ୍ୟ କେତେ ବେଶୀ, ତାହା ଏଇଥିରୁ ଅନୁମାନ

କରିଛୁଏ । ଶ୍ରୀ ଚୈତନ୍ୟ ଚରିତାମୃତର ଭାଷାରେ–

ଉତ୍ତମ ହୟାଁ ଆପନାକେ ମାନେ ତୃଣାଧମ
ଦୁଇ ପ୍ରକାରେ ସହିଷ୍ଣୁତା କରେ ବୃକ୍ଷସମ ।
ବୃକ୍ଷ ଯେନ କାଟିଲେ ଓ କିଛୁ ନା ବୋଲୟ
ଶୁଖାଇୟା ମୈଲେ କାରେ ପାନି ନା ମାଗୟ ।
ଯେଇ ଯେ ମାଗୟେ ତାରେ ଦେୟ ଆପନ ଧନ
ଘର୍ମ ବୃଷ୍ଟି ସହି ଆନେର କରୟେ ରକ୍ଷଣ ॥

ସାଧୁତା ଓ ବୈଷ୍ଣବତାର ପରାକାଷ୍ଠାହିଁ ବୃକ୍ଷ । ସହନଶକ୍ତି, କ୍ଷମା, ନିଃସ୍ୱାର୍ଥତା, ପରୋପକାର ପ୍ରବୃତ୍ତି ଓ ଅଯାଚକ ବୃତ୍ତି–ଏଗୁଡ଼ିକ ସାଧୁର ସର୍ବଶ୍ରେଷ୍ଠ ଗୁଣ । ଏହି ଗୁଣଗୁଡ଼ିକ ବୃକ୍ଷଠାରେ ଏକତ୍ର ଦେଖାଯାଏ । ବୃକ୍ଷ କାହାକୁ କିଛି ମାଗେନା କିନ୍ତୁ କେବଳ ଦେଇଥାଏ । ଯେଉଁ ବ୍ୟକ୍ତି ବୃକ୍ଷକୁ କାଟିବାକୁ ଆସେ, ସେ କାଟୁ କାଟୁ କ୍ଳାନ୍ତ ହେଲେ ସେହି ବୃକ୍ଷଛାୟାରେ ହିଁ ବିଶ୍ରାମ କରେ । ବୃକ୍ଷ ନିଜର ଧ୍ୱଂସକାରୀଠାରୁ ନିଜର ଛାୟାକୁ ଅପସାରଣକରି ନିଏ ନା । ବରଂ ତାକୁ ଛାୟା ଓ ଫଳଦାନ କରି ତୃପ୍ତ କରେ । ନିଜେ ପ୍ରବଳ ବର୍ଷା ଓ ପ୍ରଚଣ୍ଡ ଖରା ସହ୍ୟକରେ । କିନ୍ତୁ ପଥିକକୁ ବର୍ଷା ଓ ଖରାର ପୀଡ଼ନରୁ ରକ୍ଷା କରେ । ଭକ୍ତିପଥର ପଥିକ ପାଇଁ ବୃକ୍ଷହିଁ ମହାନ୍ ଆଦର୍ଶ । ସଂସାର ପଥର ପଥିକ ପାଇଁ ସେହି ବୃକ୍ଷହିଁ ମହାନ୍ ଆଶ୍ରୟ ।

ବୃକ୍ଷ ଜନ୍ମହିଁ ଈଶ୍ୱର ବିମୁଖ ଜୀବର ପ୍ରଥମ ଜନ୍ମ । ବୃକ୍ଷ ଜନ୍ମଠାରୁ କ୍ରମଶଃ କୀଟ, ପତଙ୍ଗ, ମତ୍ସ୍ୟ, ସର୍ପ, ତା'ପରେ ଚତୁଷ୍ପଦ, ସର୍ବଶେଷରେ ଦ୍ୱିପଦ ମନୁଷ୍ୟ–ଏହିପରି ୮୪ ଲକ୍ଷ ଜନ୍ମ ଜୀବ ଗ୍ରହଣ କରି ଜନ୍ମ ମରଣ ଯନ୍ତ୍ରଣା ଭୋଗ କରେ । ବୃକ୍ଷଲତାଙ୍କ ଜୀବନ ଅଛି–ସମ୍ବେଦନଶୀଳତା ଅଛି–ଏହା ସାର୍ ଜଗଦୀଶ ବୋଷ ପ୍ରଭୃତି ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକଗଣ ପ୍ରମାଣ କରିଛନ୍ତି । ବୃକ୍ଷଲତାଦିକୁ ଛେଦନ କଲେ ସେମାନଙ୍କର ଦୁଃଖ ହୁଏ ଏହା ମଧ୍ୟ ପ୍ରମାଣିତ ହୋଇଛି । ସୁତରାଂ ଅକାରଣେ ଅବିଚାରିତ ଭାବରେ ବୃକ୍ଷଲତାର ଧ୍ୱଂସ ସାଧନରୁ ମନୁଷ୍ୟ ସମାଜ ନିବୃତ୍ତ ହେବା ଏକାନ୍ତ ବାଞ୍ଛନୀୟ ।

# ଓଡ଼ିଶାରେ ପରିବହନର ଅଗ୍ରଗତି

ଶ୍ରୀ ପ୍ରଣବ କୁମାର ଦେ

୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ସେତେବେଳେ ମୋଟର ଭେହିକିଲ୍ସ ଆକ୍ଟ ଏବଂ ରୁଲସ୍ ଏବଂ ମୋଟର ଭେହିକିଲସ୍ ଟ୍ୟାକ୍ସେସନ୍ ଆକ୍ଟ ଏବଂ ରୁଲସ୍‌ର ପ୍ରଶାସନଭାର ଘରୋଇ ଏବଂ ଲୋକାଲ ସେଲ୍ଫ ଗଭର୍ଣ୍ଣମେଣ୍ଟ ବିଭାଗ ଅଧିନରେ ଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ମୋଟର ଗାଡ଼ି ଅତିରିକ୍ତ ଯନ୍ତ୍ରାଂଶ ଏବଂ ଆନୁଷଙ୍ଗିକ ଉପକରଣ ଉପରେ ନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ କରାଗଲା । ତେଣୁ ପରିବହନ ନିମନ୍ତେ ଅଲଗା ହୋଇ ଗୋଟିଏ ଉପବିଭାଗ ଯୋଗାଣ ବିଭାଗ ଅଧୀନରେ ଖୋଲିବା ଆବଶ୍ୟକ ହେଲା । ପରିବହନ ବ୍ୟବସ୍ଥା ସହିତ ଅତ୍ୟାବଶ୍ୟକୀୟ ଜିନିଷର ସଂଗ୍ରହଣ ଯୋଜନାରେ ବ୍ୟବହୃତ ହେଉଥିବା ସିଭିଲ ସପ୍ଲାଇ ଲରିଗୁଡ଼ିକର ଶାସନଗତ ପରିଚାଳନା କାର୍ଯ୍ୟ ଏହି ଉପ-ବିଭାଗ ଉପରେ ନ୍ୟସ୍ତ ହୋଇଥିଲା । ଯୋଗାଣ ଓ ପରିବହନ ବିଭାଗର ସଚିବ ୧୯୪୪ ମସିହା ମୋଟର ଗାଡ଼ି ଅତିରିକ୍ତ ଯନ୍ତ୍ରାଂଶ ନିୟନ୍ତ୍ରଣ ଓ ୧୯୪୪ ବେସାମରିକ ମୋଟର ପରିବହନ ଗାଡ଼ି ଗୁଡ଼ିକର ନିୟନ୍ତ୍ରଣ ଉପରେ ରାଜ୍ୟ ମୋଟର ପରିବହନ ନିୟନ୍ତ୍ରକ ରୂପେ ନିଯୁକ୍ତି ପାଇଲେ । ସେ ଏହି ନିୟନ୍ତ୍ରଣ ବିରତି ପର୍ଯ୍ୟନ୍ତ ଦାୟିତ୍ୱରେ ଥିଲେ । ୧୯୪୬ ମସିହାରେ ମୋଟର ଭେହିକିଲ୍ସ ଆକ୍ଟ ଏବଂ ମୋଟର ଭେହିକିଲ୍ସ ଟ୍ୟାକ୍ସେସନ ଆକ୍ଟ ଓ ତତ୍ ସଂପର୍କୀୟ ରୁଲ୍ସ୍‌ର ପ୍ରଶାସନ ଭାର ଓ ଯୋଗାଣ ଏବଂ ପରିବହନ ବିଭାଗର ପରିବହନ ଉପବିଭାଗକୁ ଆସିଲା ।

ଏହି ସମୟରେ ପ୍ରଦେଶିକ ରେଭିନ୍ୟୁ କମିସନର ପ୍ରାଦେଶିକ ପରିବହନ ପ୍ରାଧିକାରୀର (ଚେୟାରମ୍ୟାନ) ଅଧ୍ୟକ୍ଷ ଭାବେ ନିଯୁକ୍ତ ହୋଇଥିଲେ । ଗଡ଼ଜାତ ମିଶ୍ରଣ ପରେ ଯୋଗାଣ ଓ ପରିବହନ ସଚିବ ଉକ୍ତ ପରିବହନ ପ୍ରାଧିକାରୀର ଅଧ୍ୟକ୍ଷ ରୂପେ ଅବସ୍ଥାପିତ ହେଲେ ।

## ପରିବହନ ଜାତୀୟକରଣ

ଟ୍ରାନ୍ସପୋର୍ଟ ଆଡ୍‌ଭାଇଜରୀ କାଉନ୍‌ସିଲଙ୍କ ସୁପାରିଶକ୍ରମେ ଏକ ତ୍ରିପକ୍ଷୀୟ ମିଳିତ ତହବିଲ୍‌ରେ ଗୋଟିଏ ସଡ଼କ ପରିବହନ କଂପାନୀ ଗଠନ କରି ସୁଶୃଂଖଳିତ ଭାବରେ ଗାଡ଼ି ଚଳାଚଳ କରିବାକୁ ଓଡ଼ିଶା ସରକାର ନିଷ୍ପତ୍ତି ନେଲେ । ତଦନୁସାରେ ସବିରାମ ବାହକ ଓ ସାଧାରଣ ସେବା ବାହକ, ୧୯୪୭ ଅଧିନିୟମକୁ ପ୍ରଣୟନ କରାଗଲା । ଉପରୋକ୍ତ ଅଧିନିୟମକୁ କାର୍ଯ୍ୟକାରୀ କରିବା ସମୟରେ ୧୯୪୮ ମସିହାରେ ଗଡ଼ଜାତ ମିଶ୍ରଣ ହେଲା । ତେଣୁ ଓଡ଼ିଶା ସରକାର ପୂର୍ବରୁ କେତେକ ଗଡ଼ଜାତ ଅଞ୍ଚଳରେ ପରିଚାଳିତ ପରିବହନ ସେବାର ପରିଚାଳନା-ଭାର ହାତକୁ ନେଇ ବିଭାଗୀୟ ସଡ଼କ ପରିବହନ ସେବା ଦ୍ୱାରା ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳରେ ପରିଚାଳିତ କରିବାକୁ ନିଷ୍ପତ୍ତି ନେଲେ । ଫଳରେ ମୋଟର ଯାନ ଅଧିନିୟମକୁ ସଂଶୋଧନ କରାଗଲା । ସମଗ୍ର ରାଜ୍ୟକୁ ୫ଟି ମହାମଣ୍ଡଳ ଯଥା : ଗଞ୍ଜାମ କଟକ, ସମ୍ବଲପୁର, କେନ୍ଦୁଝର ଓ କୋରାପୁଟରେ ବିଭକ୍ତ କରାଗଲା । ଗଞ୍ଜାମ ଓ କଟକ ମହାମଣ୍ଡଳରେ ସୁଶୃଂଳିତ କରଣ ଭାବରେ ଏବଂ ୧୯୪୯ ଆକ୍ଟର ୧ ଧାରା ଅନୁସାରେ ଅନ୍ୟ ମହାମଣ୍ଡଳରେ ଜାତୀୟକରଣ ଭାବରେ ଗାଡ଼ି ଚଳାଚଳ କରିବାର ଠିକ୍ ହେଲା ।

## ପରିବହନ ବିଭାଗ

ପରିବହନ ଶାଖାର କାର୍ଯ୍ୟ କ୍ରମଶଃ ବୃଦ୍ଧି ପାଇବାରୁ ପରିବହନ ଉପବିଭାଗ ଦ୍ୱାରା କାର୍ଯ୍ୟ ସଂପାଦନ କରିବାରେ ଅସୁବିଧା ହେଲା । ତେଣୁ ଗୋଟିଏ ସ୍ୱତନ୍ତ୍ର ପରିବହନ ବିଭାଗ ଖୋଲିବା ଆବଶ୍ୟକ ହେଲା । ଏଥିଲାଗି ପରିବହନ ଉପବିଭାଗକୁ ଯୋଗାଣ ବିଭାଗରୁ ଅଲଗାକରି ସେପ୍‌ଟେମ୍ବର ୧୯୫୧ ମସିହାରେ ଏକ ସ୍ୱତନ୍ତ୍ର ବିଭାଗ କରାଗଲା ଏବଂ ଏହା ଅଧୀନରେ ଷ୍ଟେଟ୍ ମୋଟର ଟ୍ରାନସ୍‌ପୋର୍ଟ କଣ୍ଟ୍ରୋଲର ଏକ ବିଭାଗୀୟ ମୁଖ୍ୟ ଦପ୍ତର ଖୋଲାଗଲା ।

ରାଜ୍ୟରେ ପ୍ରତ୍ୟେକ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟ୍‌ମାନେ ପ୍ରତ୍ୟେକ ଅଞ୍ଚଳରେ ଗାଡ଼ିଗୁଡ଼ିକ ରେଜେଷ୍ଟ୍ରିଭୁକ୍ତ କରୁଥିଲେ । ମୋଟର ଭେହିକିଲ୍ ଇନସ୍‌ପେକ୍ଟରମାନେ ପ୍ରତି ଜିଲ୍ଲାମାଜିଷ୍ଟ୍ରେଟ ଓ ଷ୍ଟେଟ୍ ମୋଟର ଟ୍ରାନସ୍‌ପୋର୍ଟ କଣ୍ଟ୍ରୋଲରଙ୍କ ଅଧୀନରେ ଫିଟ୍‌ନେସ୍ ସାର୍ଟିଫିକେଟ୍‌ମାନ ଦେଉଥିଲେ ।

## ରାଜ୍ୟ ପରିବହନ ପ୍ରାଧିକାରୀ ଓ ଆଞ୍ଚଳିକ ପରିବହନ ପ୍ରାଧିକାରୀ

୧୯୩୯ ମୋଟର ଭେହିକିଲ୍ସ ଅଧିନିୟମର ୪୪ ଧାରା ଅନୁଯାୟୀ ରାଜ୍ୟ ପରିବହନ ପ୍ରାଧିକାରୀ ଗଠିତ ହୋଇଛି ।

ପରିବହନ କମିଶନର ଏହାର ଅଧ୍ୟକ୍ଷ । ରାଜ୍ୟ ପରିବହନ ପ୍ରାଧିକାରୀର ସଂପାଦକ ଏହାର ସଭ୍ୟ ସଂପାଦକ ଅଟନ୍ତି ଏବଂ ସେ ମଧ୍ୟ ଏହାର ନିର୍ବାହୀ ଅଧିକାରୀ ।

ଉପରୋକ୍ତ ଅଧିନିୟମ ଅନୁଯାୟୀ ପ୍ରତି ଜିଲ୍ଲାରେ ଆଞ୍ଚଳିକ ପରିବହନ ପ୍ରାଧିକାରୀମାନ ଗଠିତ ହୋଇଛି । ପ୍ରତ୍ୟେକ ଜିଲ୍ଲାର ଜିଲ୍ଲାପାଳ ସେହି ଜିଲ୍ଲାର ଆଞ୍ଚଳିକ ପରିବହନ ପ୍ରାଧିକାରୀର ଅଧ୍ୟକ୍ଷ ଅଟନ୍ତି । ଆଞ୍ଚଳିକ ସ୍ତରରେ ଆଞ୍ଚଳିକ ପରିବହନ ଅଧିକାରୀମାନେ ଏହି ପ୍ରାଧିକାରୀର ସଭ୍ୟ ସଂପାଦକ ଏବଂ ନିର୍ବାହୀ ଅଧିକାରୀ ଅଟନ୍ତି । ଏହି ରାଜ୍ୟ ପରିବହନ ପ୍ରାଧିକାରୀ ଓ ଆଞ୍ଚଳିକ ପରିବହନ ଅଧିକାରୀମାନେ ମୋଟର ଗାଡ଼ି ଆଇନ୍‌କୁ କାର୍ଯ୍ୟକାରୀ କରିବା, ରାସ୍ତା ପରିମିଟ୍ ଦେବା, ଗାଡ଼ି ଓ ପରିଚାଳକମାନଙ୍କୁ ଲାଇସେନସ୍ ଦେବା ଏବଂ ରାଜ୍ୟରେ ମୋଟର ଗାଡ଼ି ଓ ଯାତ୍ରୀମାନଙ୍କଠାରୁ ଟିକସ ଓ ଫିସ୍ ଆଦାୟ କରିବା ଇତ୍ୟାଦି କାର୍ଯ୍ୟ ସଂପାଦନ କରୁଅଛନ୍ତି ।

## ଜାତୀୟ ଓ ମହାମଣ୍ଡଳୀୟ ପରମିଟ୍

ଦେଶରେ ଅବାଧରେ ମାଲପତ୍ର ସରବରାହ କରିବା ନିମନ୍ତେ ଭାରତ ସରକାର ବିଭିନ୍ନ ରାଜ୍ୟକୁ ଜାତୀୟ ଓ ମହାମଣ୍ଡଳୀୟ ପରମିଟ୍ ଆବଣ୍ଟନ କରିଛନ୍ତି । ବର୍ତ୍ତମାନ ଓଡ଼ିଶା ୧୫୦୦ ଜାତୀୟ ପରମିଟ୍, ୪୫୦ କେନ୍ଦ୍ର ମହାମଣ୍ଡଳୀୟ ପରମିଟ୍ ଓ ୭୦୦ ପୂର୍ବ ମହାମଣ୍ଡଳୀୟ ପରମିଟ୍ ପାଇଅଛି । ସେଥି ମଧ୍ୟ ଓଡ଼ିଶା ସରକାର ଯଥାକ୍ରମେ ୧୦୪୮, ୪୫୦ ଓ ୪୫୦ ସଂଖ୍ୟାରୁ ପରମିଟ୍ ମଞ୍ଜୁର କରିଅଛନ୍ତି ।

## ଆନ୍ତଃରାଜ୍ୟିକ ପଥ

ଆନ୍ତଃରାଜ୍ୟିକ ପଥରେ ଅବାଧରେ ମାଲବାହୀ ଟ୍ରକ ଏବଂ ଯାତ୍ରୀବାହୀ ବସ୍‌ର ଗମନାଗମନର ସୁବିଧା ନିମିତ୍ତ ଓଡ଼ିଶା ସରକାର ପଡ଼ୋଶୀ ରାଜ୍ୟ ଯଥା:ପଶ୍ଚିମବଙ୍ଗ, ବିହାର, ଆନ୍ଧ୍ରପ୍ରଦେଶ ଓ ମଧ୍ୟପ୍ରଦେଶ ସରକାରଙ୍କ ସହ ପାରସ୍ପରିକ ଭିତ୍ତିରେ ଚୁକ୍ତିବଦ୍ଧ ହୋଇ ଆନ୍ତଃରାଜ୍ୟିକ ଅନୁମତି ପତ୍ର ପ୍ରଦାନ କରିଥାନ୍ତି ।

## ମୋଟର ଗାଡ଼ି ଚାଳନା ଶିକ୍ଷା ବିଦ୍ୟାଳୟ

ଏକ ଦକ୍ଷ ମୋଟର ଗାଡ଼ି ଚାଳକ ଗୋଷ୍ଠୀ ସୃଷ୍ଟି କରିବା ଓ ମୋଟର ଗାଡ଼ି ଚାଳନା ଶିକ୍ଷା ଦେବା ନିମନ୍ତେ ସରକାର ଭୁବନେଶ୍ୱରଠାରେ ଗୋଟିଏ ମୋଟର ଗାଡ଼ି ଚାଳନା ଶିକ୍ଷା ବିଦ୍ୟାଳୟ ସ୍ଥାପନ କରିଅଛନ୍ତି । ରାଜ୍ୟ ପରିବହନ ଉଦ୍ୟୋଗର ଗାଡ଼ି ଚାଳକମାନେ ଏଠାରୁ ଗାଡ଼ି ଚାଳନା ଶିକ୍ଷା ପାଇଥାନ୍ତି । ବେକାର ଶିକ୍ଷିତ ଯୁବକମାନେ ପରିବହନ ବ୍ୟବସାୟରେ ଯୋଗ ଦେବା ନିମନ୍ତେ ମଧ୍ୟ ଏହି ବିଦ୍ୟାଳୟ ଗାଡ଼ି ଚାଳନା ଶିକ୍ଷା ଦେଇଥାନ୍ତି ।

## ଓଡ଼ିଶା ସଡ଼କ ପରିବହନ କଂପାନୀ

ରାଜ୍ୟ ସରକାର, କେନ୍ଦ୍ର ସରକାର ଓ ଘରୋଇ ମାଲିକମାନଙ୍କ ସହଯୋଗିତାରେ ୧୯୬୧ ମସିହାରେ ଓଡ଼ିଶା ସଡ଼କ ପରିବହନ କଂପାନୀ ଗଠିତ ହେଲା । ସେଥିରେ ୧୧.୦୯ ଲକ୍ଷ ଟଙ୍କା ବିନିଯୋଗ କରି ୩୪ଟି ରାସ୍ତାରେ ୫୫ ଗୋଟି ଗାଡ଼ି ଚଳାଚଳ କଲେ । ବର୍ତ୍ତମାନ ସୁଦ୍ଧା ଏହି କଂପାନୀ ଓଡ଼ିଶାର ଯାତ୍ରୀ ନେବା ଆଣିବା କରି ଜନସାଧାରଣଙ୍କର ଆବଶ୍ୟକତା ପୂରଣ କରି ଆସୁଛନ୍ତି । ୧୯୮୪–୮୫ ଶେଷ ସୁଦ୍ଧା କଂପାନୀ ୧୯୨ ଗୋଟି ରାସ୍ତାରେ ୩୩୬ଟି ବସ୍ ଚଳାଚଳ କରିଛନ୍ତି ।

## ଓଡ଼ିଶା ପରିବହନ ସେବା/ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ

ଓଡ଼ିଶାରେ ରାଜ୍ୟ ପରିବହନ ସେବା ୧୯୪୮ ମସିହାରେ ୧୦.୩୩ ଲକ୍ଷ ଟଙ୍କା ବିନିଯୋଗରେ ୪୩ ଗୋଟି ବସ୍ ଦ୍ୱାରା ବସ୍ ଚଳାଚଳ ଆରମ୍ଭ କରିଥିଲେ । ଏହି ପରିବହନ ସେବା ୧୯୭୪ ମସିହା ମଇ ମାସ ପର୍ଯ୍ୟନ୍ତ ଯାତ୍ରୀ ପରିବହନ କରୁଥିଲେ । ଏହା ଏକ ସରକାରୀ ସଂସ୍ଥା ଥିଲା । ମାତ୍ର ଏହାକୁ ବନ୍ଦ କରି ୧୯୭୪ ମସିହା ମଇ ମାସରେ ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କ ସହଯୋଗିତାରେ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ଗଠିତ ହେଲା । ପ୍ରାରମ୍ଭିକ ଅବସ୍ଥାରେ ରାଜ୍ୟ ସରକାର ୮୦୭.୬୦ ଲକ୍ଷ ଟଙ୍କା ଓ କେନ୍ଦ୍ର ସରକାର ୧୯୦.୮୫ ଲକ୍ଷ ଟଙ୍କା ଏହି ନିଗମରେ ବିନିଯୋଗ କରିଥିଲେ । ୧୯୮୪-୮୫ ଶେଷ ସୁଦ୍ଧା ରାଜ୍ୟ ସରକାର ୨,୨୦୫.୮୫ ଲକ୍ଷ ଟଙ୍କା ଓ କେନ୍ଦ୍ର ସରକାର ୬୩୧.୧୯ ଲକ୍ଷ ଟଙ୍କା ଖଟାଇ ଅଛନ୍ତି । ଏହି ନିଗମ ୩୮୮ ଗୋଟି ରାସ୍ତାରେ ୭୨୪ ଗୋଟି ବସ୍ ଚଳାଚଳ କରି ଯାତ୍ରୀ ନେବା ଆଣିବା କରୁଅଛନ୍ତି ।

## ବ୍ୟାନର ଯୋଜନା

ପରିବହନ ସଂସ୍ଥା ଓ ଘରୋଇ ବସ୍ ମାଲିକମାନଙ୍କର ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଏବଂ ରାଜ୍ୟର ସମସ୍ତ ଅଞ୍ଚଳର ଜନସାଧାରଣଙ୍କୁ ସୁଶୃଂଖଳିତ ଭାବେ ଯଥେଷ୍ଟ ପରିବହନ ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ୧୯୮୩ ମସିହା ଅକ୍ଟୋବର ମାସରେ ରାଜ୍ୟ ସରକାର ବ୍ୟାନର୍ ଯୋଜନା କାର୍ଯ୍ୟକାରୀ କରିଥିଲେ । ପରୀକ୍ଷାମୂଳକ ଭାବରେ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, ଫୁଲବାଣୀ ଓ ମୟୂରଭଞ୍ଜ ଜିଲ୍ଲାକୁ ଏହି ଯୋଜନା ପରିସରଭୁକ୍ତ କରାଯାଇଛି । ଏହାର ପରିଚାଳନା ଦାୟିତ୍ୱ ରାଜ୍ୟସଡ଼କ ପରିବହନ ନିଗମ ଉପରେ ନ୍ୟସ୍ତ ହୋଇଛି । ଘରୋଇ ବସ୍‌ଗୁଡ଼ିକୁ ଭଡ଼ାରେ ଆଣି ପରିବହନ ନିଗମ ନିଜ ପରମିଟରେ ଚଳାଉଥିଲେ । ଏହି ଯୋଜନା ମାଧ୍ୟମରେ ଚଳାଚଳ କରୁଥିବା ଘରୋଇ ବସ୍‌ଗୁଡ଼ିକୁ ନିଗମ କିଲୋମିଟର ପିଛା ନିର୍ଦ୍ଧାରିତ ହାରରେ ଭଡ଼ା ଦେଉଥିଲେ ଏବଂ ପ୍ରତ୍ୟେକ ବସ୍ ପାଇଁ ଜଣେ ରେଖାର୍ଦ୍ଧ କଣ୍ଡକ୍ଟର ନିଜ ପକ୍ଷରୁ ନିଯୁକ୍ତ କରୁଥିଲେ । ବସ୍ ଚଳାଚଳ ବାବଦ ସମସ୍ତ ଖର୍ଚ୍ଚ (କଣ୍ଡକ୍ଟର ବାବଦ ଖର୍ଚ୍ଚ ବାଦ ଦେଇ) ଘରୋଇ ମାଲିକମାନେ ବହନ କରୁଥିଲେ ।

ଏହି ଯୋଜନାଟି ସଠିକ ଭାବରେ କାର୍ଯ୍ୟକାରୀ ହୋଇ ନ ପାରିବା ହେତୁ ପରିବହନ ନିଗମ ଏକ ସଙ୍କଟମୟ ଆର୍ଥିକ ପରିସ୍ଥିତିର ସମ୍ମୁଖୀନ ହେଲେ । ତେଣୁ ଏହି ଯୋଜନାକୁ ୧୯୮୫ ମସିହା ଜୁନ୍ ମାସରେ ପରିବର୍ତ୍ତନ କରାଗଲା ।

ଏହି ପରିବର୍ତ୍ତିତ ବ୍ୟାନର୍ ଯୋଜନାରେ ଘରୋଇ ମାଲିକମାନେ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମର

ଏଜେଣ୍ଟରୂପେ ସେମାନଙ୍କର ବସ୍‌ଗୁଡ଼ିକୁ ପରିବହନ ନିଗମର ପରମିଟ୍ ବଳରେ ଉପରୋକ୍ତ ୬ଟି ଜିଲ୍ଲାର ବିଭିନ୍ନ ରାସ୍ତାରେ ଏବଂ କେତେକ ଆନ୍ତଃଜିଲ୍ଲା ରାସ୍ତାରେ ଚଳାଚଳ କରୁଛନ୍ତି । ଏହି ପରିବର୍ତ୍ତିତ ଯୋଜନାରେ ପରିମିଟ ବାବଦ ଖର୍ଚ୍ଚ ଏବଂ ଟିକେଟ ବହି, ୱେ ବିଲ ତଥା ହିସାବ ରଖିବା ପାଇଁ ଦରକାର କାଗଜପତ୍ର ଯୋଗାଇବା ଦାୟିତ୍ୱ ନିଗମ ବହନ କରୁଛନ୍ତି । ଅପର ପକ୍ଷରେ ଏଜେଣ୍ଟମାନେ ବସ୍‌ପାଇଁ ଡ୍ରାଇଭର, କଣ୍ଡକ୍ଟର କ୍ଲିନର ନିଜ ଖର୍ଚ୍ଚରେ ଯୋଗାନ୍ତି ଏବଂ ଗାଡ଼ି ଚଳାଇବାର ତେଲ ଖର୍ଚ୍ଚ ଓ ରକ୍ଷଣାବେକ୍ଷଣ ଖର୍ଚ୍ଚ ବହନ କରନ୍ତି । ଯାତ୍ରୀ ଟିକସକୁ ବାଦଦେଇ ବସ ଚଳାଚଳରୁ ଆଦାୟ ହେଉଥିବା ସମସ୍ତ ଆୟ ସେମାନେ ନିଜେ ନିଅନ୍ତି । ମାତ୍ର ନିଗମର ବସଷ୍ଟାଣ୍ଡ, ଯାତ୍ରୀ ବିଶ୍ରାମାଗାର, ପରମିଟ, ଟିକେଟ ବହି ଓ ଅନ୍ୟାନ୍ୟ ବହିପତ୍ର ଏଜେଣ୍ଟମାନେ ବ୍ୟବହାର କରୁଥିବାରୁ ସେମାନେ କିଲୋମିଟର ପିଛା ପ୍ରତି ବସ ବାବଦରେ ସେବା ଦେୟ ରାଜ୍ୟ ପରିବହନ ନିଗମକୁ ଦେଉଅଛନ୍ତି ।

ଘରୋଇ ବସ୍ ମାଲିକ ବା ଏଜେଣ୍ଟମାନେ ଯାତ୍ରୀମାନଙ୍କଠାରୁ ଯେଉଁ ପରିମାଣରେ ଯାତ୍ରୀ ଟିକସ ଆଦାୟ କରିଥିବେ, ତାହା ପ୍ରତିଦିନ ଯାତ୍ରା ଶେଷରେ ନିଗମଠାରେ ପଇଠ କରିବେ ଏବଂ ନିଗମ ପ୍ରତି ମାସରେ ଏହି ଟଙ୍କାକୁ ଟିକସ ଅଧିକାରୀଙ୍କ ନିକଟରେ ଜମା ଦେବେ ।

## ରାଜ୍ୟ ପରିବହନ ଅପିଲ ନ୍ୟାୟାଧିକରଣ

ରାଜ୍ୟ ପରିବହନ ପ୍ରାଧିକାରୀ ଓ ଆଞ୍ଚଳିକ ପରିବହନ ପ୍ରାଧିକାରୀମାନଙ୍କର ନିଷ୍ପତ୍ତି ବିରୁଦ୍ଧରେ ମୋଟରଗାଡ଼ି ଅପିଲ ଏବଂ ମୋଟରଗାଡ଼ି ପୁନରୀକ୍ଷଣ (ରିଭିଜନ) ଗୁଡ଼ିକ ଶୁଣିବା ନିମନ୍ତେ ରାଜ୍ୟ ସରକାର ଗୋଟିଏ ରାଜ୍ୟ ପରିବହନ ନ୍ୟାୟାଧିକରଣ କଟକରେ ଅବସ୍ଥାପିତ କରିଅଛନ୍ତି । ଏତଦ୍‌ବ୍ୟତୀତ ଏହି ନ୍ୟାୟାଧିକରଣ ରାଜ୍ୟର ସମସ୍ତ ଜିଲ୍ଲାପାଇଁ ଦ୍ୱିତୀୟ ମୋଟର ଦୁର୍ଘଟଣା ଦାବୀ ନ୍ୟାୟାଧିକରଣ ରୂପେ କାର୍ଯ୍ୟ କରୁଥିଲେ । ମାତ୍ର ଏହାର ଅତିରିକ୍ତ କାର୍ଯ୍ୟ ବୃଦ୍ଧି ପାଇବାରୁ ସରକାର ଆଉ ଦୁଇଗୋଟି ଦ୍ୱିତୀୟ ମୋଟର ଦୁର୍ଘଟଣା ନ୍ୟାୟାଧିକରଣ ଗୋଟିଏ ସମ୍ବଲପୁରଠାରେ ଓ ଅନ୍ୟଟି ବ୍ରହ୍ମପୁରଠାରେ ଅବସ୍ଥାପିତ କରିଅଛନ୍ତି । ଦାବୀ କେଶ-ଗୁଡ଼ିକୁ ଶୀଘ୍ର ଫଏସଲ କରିବାକୁ କଟକରେ ଅବସ୍ଥାପିତ ନ୍ୟାୟାଧିକରଣକୁ ସାହାଯ୍ୟ କରିବାପାଇଁ ପୁରୀର ଅତିରିକ୍ତ ଜିଲ୍ଲା ଜଜ୍‌ଙ୍କୁ ପୁରୀଜିଲ୍ଲା ପାଇଁ ତୃତୀୟ ମୋଟର ଦୁର୍ଘଟଣା ଦାବୀ ନ୍ୟାୟାଧିକରଣ ରୂପେ ଘୋଷଣା କରିଅଛନ୍ତି । ସବୁ ଜିଲ୍ଲାର ଜିଲ୍ଲାଜଜ୍‌ମାନେ ପ୍ରଥମ ମୋଟର ଦୁର୍ଘଟଣା ଦାବୀ ନ୍ୟାୟାଧିକରଣ ଭାବେ କାର୍ଯ୍ୟ କରନ୍ତି ।

## ରେଳ ଯାତାୟତ

ରାଜ୍ୟ ସ୍ତରରେ ରେଳ ପରିବହନ ମଧ୍ୟ ପରିବହନ ବିଭାଗର ପରିସରଭୁକ୍ତ । ଓଡ଼ିଶାରେ ରେଳପଥ ଆବଶ୍ୟକ ତୁଳନାରେ ଅତି କମ୍ । ହାଓଡ଼ା-ମାଡ୍ରାଜ ରେଳପଥ ରାଜ୍ୟର ପୂର୍ବ ଅଂଶରେ ଓ ହାଓଡ଼ା-ବମ୍ବେ ରେଳପଥ ପଶ୍ଚିମ ଅଂଶରେ ଯାଇଅଛି । ଟିଟିଲାଗଡ଼-ଝାରସୁଗୁଡ଼ା ଓ ରାୟପୁର-ବିଜୟନଗରମ୍ ରେଳପଥ ପଶ୍ଚିମ ଓ ଦକ୍ଷିଣ ଅଂଶରେ ଗତି କରିଅଛି । ଆଭ୍ୟନ୍ତରୀଣ ଅଞ୍ଚଳରେ ବସବାସ କରୁଥିବା ଅଧିବାସୀମାନେ ଏ ରେଳପଥଗୁଡ଼ିକର ଉପକାରିତା କିଛି ଉପଲବ୍ଧି କରି ପାରନ୍ତି ନାହିଁ ।

ସ୍ୱାଧୀନତା ଲାଭ ପୂର୍ବରୁ ଓଡ଼ିଶାରେ ୧୩୦୦ କିଲୋମିଟର ରେଳପଥ ଥିଲା । ସ୍ୱାଧୀନତା ଲାଭ ପରେ ଓଡ଼ିଶାରେ ମାତ୍ର ୬୫୦ କିଲୋମିଟର ରେଳପଥ ନିର୍ମିତ ହୋଇଅଛି । ବର୍ତ୍ତମାନ ଯଖପୁରାରୁ ବାଂଶପାଣି, ତାଳଚେରରୁ ସମ୍ବଲପୁର ଓ କୋରାପୁଟରୁ ରାୟଗଡ଼ା ପର୍ଯ୍ୟନ୍ତ ମୋଟ ୫୨୫ କିଲୋମିଟର ରେଳପଥର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।

ରାଜ୍ୟରେ ରେଳ ଚଳାଚଳର ଉନ୍ନତି କଳ୍ପେ ପରିବହନ ବିଭାଗ ଅଧୀନରେ ଗୋଟିଏ ରେଳ ସମନ୍ୱୟ ନିର୍ଦ୍ଦେଶାଳୟ ଖୋଲା ଯାଇଛି । ରାଜ୍ୟରେ ରେଳ ଚଳାଚଳର ଉନ୍ନତି ପାଇଁ ପରିକଳ୍ପନା ପ୍ରସ୍ତୁତ କରି କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିବା ପାଇଁ ଏହି ନର୍ଦ୍ଦେଶାଳୟ ଚେଷ୍ଟା କରିଥାଆନ୍ତି ।

## ବିମାନ ଚାଳନା

ପରିବହନ ବିଭାଗ ଅଧୀନରେ ଗୋଟିଏ ବିମାନ ଚଳାଚଳ ସଂସ୍ଥାଅଛି । ଏହା ଭୁବନେଶ୍ୱର ବିମାନଘାଟୀ ପରିସୀମା ମଧ୍ୟରେ ଅବସ୍ଥାପିତ । ଏହି ସଂସ୍ଥାରେ ପଦସ୍ଥ ବ୍ୟକ୍ତିଙ୍କ ସରକାରୀ ବ୍ୟବହାର ପାଇଁ ୨ ଗୋଟି ବିମାନ ଓ ପ୍ରଶିକ୍ଷଣ କାର୍ଯ୍ୟପାଇଁ ଦୁଇଗୋଟି ବିମାନ ରହିଅଛି । ଦୂର ଦୂରାନ୍ତକୁ ଯାତ୍ରାପାଇଁ ଦୁଇ ଇଞ୍ଜିନ ବିଶିଷ୍ଟ ୮–୧୦ ଜଣ ବ୍ୟକ୍ତି ଯାଇ ପାରିବା ଭଳି ଏକ ବି–୨୦୦ ବିମାନ ରହିଛି । ରାଜ୍ୟ ଭିତରେ ବ୍ୟବହାର ପାଇଁ ୪ଜଣ ବ୍ୟକ୍ତି ବସି ପାରିବା ଭଳି ଦୁଇ ଇଞ୍ଜିନ ବିଶିଷ୍ଟ ଅନ୍ୟ ଏକ ବି–୫୮ ବିମାନ ମଧ୍ୟ ରହିଛି । ଏହି ଦୁଇଟି ବିମାନ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ଓ ରାଜ୍ୟରେ ବନ୍ୟା, ମରୁଡ଼ି ଓ ଅନ୍ୟାନ୍ୟ ଦୈବୀ ଦୁର୍ବିପାକ ସମୟରେ ବ୍ୟବହୃତ ହେବାପାଇଁ ଉଦ୍ଦିଷ୍ଟ । ଏତଦ୍‌ବ୍ୟତୀତ ବିମାନ ଚାଳନା ଶିକ୍ଷାପାଇଁ ଦୁଇଟି ପୁଷ୍ପକ ବିମାନ ମଧ୍ୟ ବ୍ୟବହୃତ ହେଉଛି । ବାଲେଶ୍ୱର ଜିଲ୍ଲା ବ୍ୟତୀତ ରାଜ୍ୟର ଓ ପ୍ରାୟ ସମସ୍ତ ଜିଲ୍ଲାରେ ମୋଟ ୨୨ ଗୋଟି ବିମାନ ଅବତରଣ ପଡିଆ ରହିଛି । ଏଥିମଧ୍ୟରୁ ୩ଗୋଟି ଭାରତ ସରକାରଙ୍କର କର୍ତ୍ତୃତ୍ୱାଧୀନ, ୪ଗୋଟି ଘରୋଇ ସଂସ୍ଥା/ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ଓ ୧୫ଗୋଟି ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ । ଏହି ୨୨ଟି ଅବତରଣ ପଡିଆ ମଧ୍ୟରୁ ୫ଗୋଟି ବ୍ୟବହୃତ ହେଉନାହିଁ । ଏତଦ୍‌ବ୍ୟତୀତ କଟକ, ପୁରୀ, ଓ ବାଲେଶ୍ୱର ଜିଲ୍ଲାରେ ହେଲିକପ୍ଟର ଓହ୍ଲାଇବା ପାଇଁ ୧୬ ଗୋଟି ଅବତରଣ ପଡ଼ିଆ ନିର୍ମିତ ହୋଇଅଛି ।

ରାଜ୍ୟ ସରକାରଙ୍କ ଚାପ ଫଳରେ ଭାରତୀୟ ବିମାନ ସଂସ୍ଥା ଭାରତର ରାଜଧାନୀ ଦିଲ୍ଲୀ ଓ ରାଜ୍ୟର ରାଜଧାନୀ ଭୁବନେଶ୍ୱର ମଧ୍ୟରେ ସପ୍ତାହରେ ଚାରିଦିନ ସିଧାସଳଖ ବୋଇଂଗ ବିମାନ ଚଳାଚଳ କରୁଛ । ସେହିପରି କଲିକତାଠାରୁ ଭୁବନେଶ୍ୱର ମଧ୍ୟରେ ସପ୍ତାହରେ ତିନି ଦିନ ଓ କଲିକତାଠାରୁ ଭୁବନେଶ୍ୱର ଦେଇ ହାଇଦ୍ରାବାଦ ମଧ୍ୟରେ ସପ୍ତାହର ଅନ୍ୟ ଚାରି ଦିନ ଚଳାଚଳ କରୁଛି । ଏତଦ୍‌ବ୍ୟତୀତ ବାୟୁଦୂତ ବିମାନ ସଂସ୍ଥା କଲିକତାଠାରୁ ରାଉରକେଲା ଦେଇ ଭୁବନେଶ୍ୱରକୁ ସପ୍ତାହରେ ତିନି ଦିନ ବିମାନ ଚଳାଚଳ କରୁଛନ୍ତି ।

# ପ୍ରଗତି ପଥେ ସମବାୟ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଣ୍ଡା

ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ ସାମୂହିକ ପ୍ରଚେଷ୍ଟା ଦ୍ୱାରା କରାଯାଇଥିବା ଉଦ୍ୟମକୁ ସମବାୟ କୁହାଯାଏ । ଭାରତୀୟ ଅର୍ଥନୀତିରେ ସମବାୟ ଦ୍ୱାରା ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ପ୍ରଥମେ ସଙ୍ଗଠିତ କରି ସମବେତ ଉଦ୍ୟମ ଦ୍ୱାରା ସାମୂହିକ ଅର୍ଥନୈତିକ ଉନ୍ନତି ପାଇଁ ଅନେକ ପ୍ରଚେଷ୍ଟା ହୋଇ ଆସୁଅଛି । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ କୃଷି ଉତ୍ପାଦନକୁ ଯଥେଷ୍ଟ ପରିମାଣରେ ବଢ଼ାଇ ଦେଶରୁ ଦାରିଦ୍ର୍ୟ ତଥା ବେକାର ସମସ୍ୟା ଦୂରୀଭୂତ କରିବାର ଲକ୍ଷ୍ୟ ସମବାୟ ରଖିଛି । କେବଳ ଲାଭ ଉଦ୍ଦେଶ୍ୟରେ ବ୍ୟବସାୟ ସମବାୟର ଲକ୍ଷ୍ୟ ନୁହେଁ, ସେବାହିଁ ଏହାର ପ୍ରଧାନ ଉଦ୍ଦେଶ୍ୟ । ଏଯାବତ୍ ସମବାୟ କୃଷି ପ୍ରସାରଣ କାର୍ଯ୍ୟକ୍ରମର ଏକ ଆନୁଷଙ୍ଗିକ ବିଭାଗ ଭାବରେ କାର୍ଯ୍ୟ କରି ଆସଛି । ମାତ୍ର ଭାରତରେ କୃଷି କର୍ମରେ ନିଯୁକ୍ତ ଥିବା ସଂଖ୍ୟା ଗରିଷ୍ଠ ଚାଷୀ ହେଉଛନ୍ତି କ୍ଷୁଦ୍ର ତଥା ନାମମାତ୍ର ଚାଷୀ । ଏହି ସମସ୍ୟାର ଏକ ସମାଧାନର ସୂତ୍ର ସ୍ୱରୂପ ଭାରତ ସରକାର ୧୯୦୪ ମସିହାରେ କୃଷିଭିତ୍ତିକ ସମବାୟ ଆନ୍ଦୋଳନ ଆରମ୍ଭ କରାଇଥିଲେ । ସମାଜର ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ତଥା ଅନୁନ୍ନତ ଥିବା ଆଦିବାସୀ ଓ ହରିଜନମାନଙ୍କର ଆର୍ଥିକ ଓ ସାମାଜିକ ପରିବର୍ତ୍ତନ ଘଟାଇବା ଦିଗରେ ସମବାୟ ଏକ ପ୍ରଧାନ ପରିକଳ୍ପନା । ପ୍ରଥମେ ଏହା ଏକ ଋଣ ଲଗାଣକାରୀ ସଂସ୍ଥା ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ ହେଁ ବର୍ତ୍ତମାନ ଏହା ଦେଶର ବିଭିନ୍ନ ସ୍ତରରେ ବେଶ୍ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଦେଶର ଆର୍ଥିକ ମାନଦଣ୍ଡ ତଥା ବିକାଶ ଘଟାଇବା ଦିଗରେ ସହାୟକ ହୋଇଛି ।

ଷଷ୍ଠ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ଓଡିଶାର ଅଭିବୃଦ୍ଧିରେ ସମବାୟ ଆନ୍ଦୋଳନ ଏକ ପ୍ରଧାନ ଭୂମିକା ଗ୍ରହଣ କରିଛି । ଏହା ଓଡିଶାର ଗ୍ରାମ୍ୟ ଅର୍ଥନୀତି ବିଶେଷ କରି କୃଷି ଅର୍ଥନୀତିରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ସକ୍ଷମ ହୋଇଛି ।

୧୯୦୪ ମସିହା ବେଳକୁ ଓଡିଶାରେ ସମବାୟ କେବଳ କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାର କେତୋଟି ଅନୁଷ୍ଠାନ ମଧ୍ୟରେ ସୀମିତ ଥିଲା । ୧୯୧୦ ମସିହାରେ ସର୍ବପ୍ରଥମେ ବାଙ୍କୀ କେନ୍ଦ୍ର ସମବାୟ ବ୍ୟାଙ୍କ ରେଜେଷ୍ଟ୍ରୀଭୁକ୍ତ ହୋଇଥିଲା । ଏହାପରେ ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କ ୧୯୧୨ ଓ ଯାଜପୁର କେନ୍ଦ୍ର ସମବାୟ ବ୍ୟାଙ୍କ ୧୯୧୪ ମସିହାରେ ରେଜେଷ୍ଟ୍ରୀଭୁକ୍ତ ହୋଇଥିଲା । ୧୯୧୨ ମସିହାରେ ଓଡିଶାରେ ସମୁଦାୟ ୮୨ ଗୋଟି ଋଣ ଲଗାଣକାରୀ ସମବାୟ ସମିତି କାର୍ଯ୍ୟ କରୁଥିଲେ ଓ ୧୯୪୭ ମସିହା ବେଳକୁ ସମସ୍ତ ପ୍ରକାର ସମବାୟ ସମିତିର ସଂଖ୍ୟା ଥିଲା ୩,୩୧୭ । ସ୍ୱାଧୀନତା ପରେ ଋଣ ବାଣିଜ୍ୟ, ଗୃହ ନିର୍ମାଣ, ଖାଉଟୀ ଓ ଅନ୍ୟାନ୍ୟ ବହୁ ପ୍ରକାରର ସମବାୟ ସମିତି ଗଠିତ ହୋଇ ରାଜ୍ୟର ବହୁବିଧ ଶ୍ରେଣୀର ମଙ୍ଗଳ ସାଧନ କରାଯାଇପାରିଛି ।

## ଋଣ (କ୍ରେଡିଟ୍)--

ଆମ ରାଜ୍ୟରେ ମୋଟ ୩୬.୭୨ ଲକ୍ଷ ଚାଷୀ ପରିବାରଙ୍କ ମଧ୍ୟରୁ ଷଷ୍ଠ ଯୋଜନା କାଳରେ ୨୯ ଲକ୍ଷ ଚାଷୀ ପରିବାରଙ୍କୁ ସମବାୟ ଶ୍ରେଣୀଭୁକ୍ତ କରାଯାଇଛି ଏବଂ ତନ୍ମଧ୍ୟରୁ ୭୦ ଭାଗ ଲୋକ ହେଉଛନ୍ତି ନାମ ମାତ୍ର କ୍ଷୁଦ୍ର ଚାଷୀ । ରାଜ୍ୟରେ ଥିବା ୧୧.୮ ଲକ୍ଷ ଆଦିବାସୀ ପରିବାର ମଧ୍ୟରୁ ପ୍ରାୟ ୭.୫ ଲକ୍ଷ ପରିବାରକୁ ଓ ୮ ଲକ୍ଷ ତଫସିଲଭୁକ୍ତ ଜାତି ପରିବାର ମଧ୍ୟରୁ ପ୍ରାୟ ୫ ଲକ୍ଷ ପରିବାରକୁ ସମବାୟରେ ଶ୍ରେଣୀଭୁକ୍ତ କରାଯାଇପାରିଛି । ସପ୍ତମ ଯୋଜନା କାଳରେ ରାଜ୍ୟର ସମସ୍ତ ପରିବାରକୁ ସମବାୟ ଶ୍ରେଣୀଭୁକ୍ତ କରାଯିବାର ଯୋଜନା ପରିକଳ୍ପନା କରାଯାଇଛି ।

ଗ୍ରାମାଞ୍ଚଳରେ ମୁଖ୍ୟତଃ କୃଷକମାନଙ୍କୁ ସମବାୟ ଋଣ ପ୍ରଦାନ କରାଯାଇଥାଏ । ସମବାୟ ସମିତି ମାଧ୍ୟମରେ ଋଣ ଲଗାଣ ମୁଖ୍ୟତଃ ଦୁଇଗୋଟି ଭାଗରେ ବିଭକ୍ତ । (୧) ସ୍ୱଳ୍ପ ମିଆଦୀ ଋଣ, (୨) ଦୀର୍ଘ ମିଆଦୀ ଋଣ । ଏହାର ପରିସର ସମବାୟ ବ୍ୟାଙ୍କ ଶୀର୍ଷ ପର୍ଯ୍ୟନ୍ତ ସୀମାବଦ୍ଧ । ୧୭ଗୋଟି କେନ୍ଦ୍ର ସମବାୟ ବ୍ୟାଙ୍କ ଜିଲ୍ଲାସ୍ତରରେ ଏବଂ ୨,୭୯୫ଟି ପ୍ରାଥମିକ କୃଷିଭିତ୍ତିକ ସମବାୟ ସମିତି (ପି. ଏ. ସି. ଏସ.), ବୃହଦାକାର ବହୁମୁଖୀ କୃଷି ଭିତ୍ତିକ ସମବାୟ ସମିତି (ଲ୍ୟାଂପ୍ସ), କୃଷକ ସେବା ସମବାୟ ସମିତି (ଏଫ. ଏସ. ସି. ଏସ.) ଗ୍ରାମାଞ୍ଚଳ ପାଇଁ କାର୍ଯ୍ୟ କରୁଅଛନ୍ତି । ଜାତୀୟ କୃଷି ତଥା ଗ୍ରାମ ଉନ୍ନୟନ ବ୍ୟାଙ୍କ (ନାବାର୍ଡ) କୃଷି ତଥା ଗ୍ରାମ ବିକାଶ ପାଇଁ ଋଣ ଆକାରରେ ଯୋଗାଇ

ଦେଇଥିବା ଅର୍ଥ ଓ ସରକାରଙ୍କର ଇ. ଆର୍. ଆର୍. ପି. ଓ ଆଇ. ଆର. ଡି. ପି. ଇତ୍ୟାଦି ମଧ୍ୟ ଏହି ସମବାୟ ବ୍ୟାଙ୍କ ମାଧ୍ୟମରେ ଗାଁ ଗହଳିର ଲୋକମାନଙ୍କ ନିକଟରେ ପହଞ୍ଚେ ।

ରାଜ୍ୟରେ କେନ୍ଦ୍ର ସମବାୟ ବ୍ୟାଙ୍କମାନଙ୍କର ସଂଖ୍ୟା ୧୭ । ପ୍ରାଥମିକ କୃଷିଭିତ୍ତିକ ସମବାୟ ସମିତିର (ପି. ଏ. ସି. ଏସ.) ସଂଖ୍ୟା ୨,୫୬୬, ବୃହଦାକାର ବହୁମୁଖୀ କୃଷିଭିତ୍ତିକ ସମବାୟ ସମିତି (ଲ୍ୟାଂପ୍‌ସ) ୨୨୨ ଓ କୃଷକ ସେବା ସମବାୟ ସମିତିର ସଂଖ୍ୟା (ଏଫ. ଏସ. ଏସ.) ୭ ।

ଏହି ସବୁ ଅନୁଷ୍ଠାନ ଉଭୟ ସ୍ୱଳ୍ପ ଓ ଦୀର୍ଘ ମିଆଦୀ ଋଣ ଯୋଗାଇ ଲୋକମାନଙ୍କର ବିଭିନ୍ନ ଚାହିଦା ଯଥା ଚାଷ, ଚାଷପାଇଁ ବିହନ, ସାର, ଖାଉଟୀ ଦ୍ରବ୍ୟ ଇତ୍ୟାଦି ଗ୍ରାମାଞ୍ଚଳରେ ଲୋକମାନଙ୍କୁ ଯୋଗାଇ ଲୋକମାନଙ୍କର ଚାହିଦା ମେଣ୍ଟାଇବାରେ ସହାୟକ ହୋଇଥାଏ ।

ଚାଷ ବ୍ୟତୀତ ଆହୁରି ଅନେକ କ୍ଷେତ୍ରରେ ସମବାୟ ଋଣ ପ୍ରଦାନ କରାଯିବାର ବ୍ୟବସ୍ଥା ରହିଛି । କ୍ଷୁଦ୍ର ବ୍ୟବସାୟୀ, ଗୃହ ମରାମତି ତଥା ନିର୍ମାଣ, ଶିକ୍ଷା ତଥା ଅନ୍ୟାନ୍ୟ ସାମାଜିକ ଓ ଘରୋଇ ବ୍ୟାପାରରେ ସାହାଯ୍ୟ କରିଥାଆନ୍ତି । ଏହି ସବୁ ସମବାୟ ଋଣ ଯୋଗାଣକାରୀ ସଂସ୍ଥାମାନଙ୍କର ସଂଖ୍ୟା ୮୦୨ । ଏଥିରୁ ସହରାଞ୍ଚଳ ସମବାୟ ବ୍ୟାଙ୍କ୍ (ଅରବାନ୍ କୋ-ଅପରେଟିଭ ବ୍ୟାଙ୍କ୍)ର ସଂଖ୍ୟା ୧୩ । କର୍ମଚାରୀ ସମବାୟ ସମିତି ସଂଖ୍ୟା ୭୮୨ ଓ ୭ ଗୋଟି ଅନ୍ୟାନ୍ୟ ସମିତି ରହିଛି ।

## ଋଣ ଦାନର ପରିମାଣ--

ରାଜ୍ୟରେ ଅର୍ଥନୈତିକ ଥଇଥାନ ଓ ସମବାୟ ବ୍ୟାଙ୍କରୁ ସମବାୟ ଋଣ ପ୍ରଦାନ କରାଯାଇ ଗରିବ ଲୋକମାନଙ୍କୁ ସାହାଯ୍ୟ କରାଯାଇ ପାରିଛି । ୧୯୭୯-୮୦ ମସିହାରେ ସ୍ୱଳ୍ପ ମିଆଦୀ ଋଣର ପରିମାଣ ୪୧.୦୬ କୋଟି ଟଙ୍କା ଥିବା ବେଳେ ୧୯୮୩-୮୪ ମସିହାରେ ୭୦.୪୦ ଓ ୧୯୮୪-୮୫ ମସିହା କାଳରେ ୫୦.୮୨ କୋଟି ଟଙ୍କା ଋଣ ଆକାରରେ ପ୍ରଦାନ କରାଯାଇଛି ।

## ସେଚକୂପ (ଡ଼ଗ୍ ୱେଲସ୍)--

ଜଳସେଚନର ଚାହିଦା ମେଣ୍ଟାଇବା ଦିଗରେ ସମବାୟ ବ୍ୟାଙ୍କ୍‌ମାନେ ବିଶେଷ କରି ଭୂ-ଉନ୍ନୟନ ବ୍ୟାଙ୍କ୍ ସେଚକୂପ ଖନନ ନିମନ୍ତେ ଦୀର୍ଘ ମିଆଦୀ ଋଣ ପ୍ରଦାନ କରିଥାଏ ।

୩୦-୬-୧୯୮୪ ମସିହା ସୁଦ୍ଧା ୩୮୩,୦୦୮ଟି ସେଚକୂପ ପାଇଁ ୯୧.୫୬ କୋଟି ଟଙ୍କା ଋଣ ଯୋଗାଇ ଦିଆଯାଇଥିଲା । ସେଥିରୁ ୨୨୮,୫୭୦ଟି କୂପ ଖନନ ସମାପ୍ତି ହୋଇ ସାରିଛି ଓ ଏହାଦ୍ୱାରା ୨.୭୭ ଲକ୍ଷ ଏକର ଜମିରେ ଜଳସେଚନର ସୁବିଧା କରାଯାଇପାରିଛି । ୮,୬୪୨ଟି କୂପରେ ବିଦ୍ୟୁତ୍ ମୋଟର ସଂଯୋଗ କରାଯାଇଛି ।

| | | କୂପ ସଂଖ୍ୟା | ମୋଟ ଆର୍ଥିକ ବ୍ୟୟ |
|---|---|---|---|
| ୧୯୭୯-୮୦ | .. | ୧୮୨.୯୬୫ | ୫,୮୬୫.୨୨ |
| ୧୯୮୦-୮୧ | .. | ୨୨.୭୫୫ | ୭୩୧.୪୦ |
| ୧୯୮୧-୮୨ | .. | ୨୭.୫୬୬ | ୭୬୨.୦୯ |
| ୧୯୮୨-୮୩ | .. | ୩୪.୬୪୨ | ୧,୦୬୬.୮୬ |
| ୧୯୮୩-୮୪ | .. | ୧୨.୪୩୯ | ୪୯୭.୬୯ |
| ୧୯୮୪-୮୫ | .. | ୧୪.୫୬୨ | ୪୯୯.୮୧ |

| | | ୧୯୭୯-୮୦ | ୧୯୮୦-୮୧ | ୧୯୮୧-୮୨ | ୧୯୮୨-୮୩ | ୧୯୮୩-୮୪ | ୧୯୮୪-୮୫ |
|---|---|---|---|---|---|---|---|
| ସ୍ୱଳ୍ପ ମିଆଦୀ | .. | ୪୧.୦୬ | ୫୪.୫୮ | ୫୮.୯୭ | ୬୯.୨୩ | ୭୦.୪୦ | ୫୦.୮୨ |
| ମଧ୍ୟମ ମିଆଦୀ | .. | ୨୧.୬୪ | ୧୨.୬୧ | ୧୦.୬୮ | ୩୫.୯୧ | ୧୬.୨୭ | ୫.୭୧ |
| ଦୀର୍ଘ ମିଆଦୀ | .. | ୧୧.୭୨ | ୧୦.୧୨ | ୯.୭୦ | ୯.୦୦ | ୭.୩୦ | ୭.୫୯ |

| | | ଆଇ. ଆର୍. ଡି. ପି. | | ଇ. ଆର୍. ଆର୍. ପି. | |
|---|---|---|---|---|---|
| | | ଉପକୃତ ସଂଖ୍ୟା | ପରିମାଣ | ସଂଖ୍ୟା | ପରିମାଣ |
| ୧୯୮୦-୮୧ | .. | ୧୯,୭୪୨ | ୩୮୬'୯୮ | ୨,୪୫୩ | ୪୮'୯୧ |
| ୧୯୮୧-୮୨ | .. | ୪୩,୭୭୬ | ୭୮୦'୪୧ | ୭,୧୧୧ | ୧୩୫'୮୧ |
| ୧୯୮୨-୮୩ | .. | ୫୨,୭୭୮ | ୧,୩୨୧'୫୩ | ୬,୮୨୮ | ୧୪୪'୯୧ |
| ୧୯୮୩-୮୪ | .. | ୪୫,୯୪୬ | ୧,୧୬୬'୯୭ | ୬,୫୨୨ | ୧୫୬'୪୪ |
| ୧୯୮୪-୮୫ | .. | ୧୫,୯୪୦ | ୪୦୪'୯୪ | ୬,୭୯୬ | ୧୪୯'୫୪ |

୩୦-୬-୧୯୮୫ ମସିହା ପର୍ଯ୍ୟନ୍ତ

## ଶସ୍ୟ ବୀମାଃ-(କ୍ରପ୍ ଇନ୍ସୁରାନ୍ସ)

ପ୍ରାକୃତିକ ଦୁର୍ବିପାକରୁ ଗରିବ ଚାଷୀଙ୍କୁ ରକ୍ଷା କରିବା ନିମନ୍ତେ ଏହି ଯୋଜନା ଆରମ୍ଭ କରାଯାଇଛି । ଏହା ରାଜ୍ୟରେ ସର୍ବପ୍ରଥମେ ୧୯୮୧ ମସିହାରେ ଆରମ୍ଭ ହେଲା । ସର୍ବପ୍ରଥମେ ଏହା ପରୀକ୍ଷାମୂଳକ ଭାବରେ ୧୫ ଗୋଟି ବ୍ଲକରେ ଆରମ୍ଭ ହୋଇ ଷଷ୍ଠ ଯୋଜନା କାଳରେ ୧୧୧ଟି ବ୍ଲକସ୍ତରରେ ପହଞ୍ଚି ପାରିଛି । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଭାରତ ସରକାର ଏହାକୁ ସମସ୍ତ ବ୍ଲକ ସ୍ତରରେ କାର୍ଯ୍ୟକାରୀ କରାଇବାର ଯୋଜନା ପ୍ରସ୍ତୁତ କରି ସାରିଛନ୍ତି । ସଂଶୋଧିତ ଯୋଜନା ଅନୁଯାୟୀ ଆମ ପ୍ରଦେଶରେ ସମସ୍ତ ଶ୍ରେଣୀର ଚାଷୀମାନଙ୍କୁ ଏହି ସୁବିଧା ଦିଆଯିବ । ସର୍ବ ପ୍ରଥମେ ଏହା କେବଳ ଧାନ ଚାଷ ପାଇଁ ପ୍ରଯୁଜ୍ୟ ହେବ । କ୍ଷୁଦ୍ର ତଥା ନାମ ମାତ୍ର ଚାଷୀ ଦେଉଥିବା ବୀମା ପରିମାଣର ମୁଦ୍ରାଂଶରୁ ରାଜ୍ୟ ସରକାର ଓ କେନ୍ଦ୍ର ସରକାର ମିଳିତ ଭାବରେ ଆର୍ଥିକ ସହାୟତା ଯୋଗାଇ ଦେବେ ।

## ସାର ବିକ୍ରୟ

| | | | |
|---|---|---|---|
| ୧୯୮୨-୮୩ | ଉଭୟ ଖରିପ୍ ଓ ରବି । | ୧୫'୩୦ | କୋଟି ଟଙ୍କା ମୂଲ୍ୟରେ । |
| ୧୯୮୩-୮୪ | .. | ୧୬'୭୦ | ,, |
| ୧୯୮୪-୮୫ | .. | ୧୭'୪୧ | ,, |

ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଏହି ପରିମାଣକୁ ଆହୁରି ବଢ଼ାଇବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

କେତେ ପରିମାଣର କୃଷିଜାତ ଦ୍ରବ୍ୟ ବିକ୍ରୟ କରାଯାଇଛି—

୧୯୮୦-୮୧ ବର୍ଷରେ ୧୩୧'୦୧ ଲକ୍ଷ ଟଙ୍କାର କୃଷିଜାତ ଦ୍ରବ୍ୟ ବିକ୍ରି କରାଯାଇ ଥିବାବେଳେ ଷଷ୍ଠ ଯୋଜନା କାଳରେ (୧୯୮୪-୮୫) ଏହି ପରିମାଣ ୪୩୫'୦୦ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇ ପାରିଛି ।

| ବର୍ଷ | | ଟଙ୍କା ମୂଲ୍ୟର ଶସ୍ୟ ବିକ୍ରି ହୋଇଛି (ଲକ୍ଷ ଟଙ୍କାରେ) |
|---|---|---|
| ୧୯୮୦-୮୧ | .. | ୧୩୧'୦୧ |
| ୧୯୮୧-୮୨ | .. | ୩୬୩'୨୧ |
| ୧୯୮୨-୮୩ | .. | ୧୦୦'୮୮ |
| ୧୯୮୩-୮୪ | .. | ୪୯'୯୨ |
| ୧୯୮୪-୮୫ | .. | ୪୩୫'୦୦ |

## ଧାନ ସଂଗ୍ରହ

ଧାନ ସଂଗ୍ରହ (ଆର. ସି. ଏମ୍. ଏସ୍.) ଆଞ୍ଚଳିକ ସମବାୟ ବାଣିଜ୍ୟ ସମିତିଗୁଡ଼ିକ ମାଧ୍ୟମରେ ସିଧାସଳଖ ଭାବରେ ଓ ଚାଷୀମାନଙ୍କୁ ସାର ଦେଇ ପ୍ରତିବଦଳରେ ଧାନ ସଂଗ୍ରହ କରାଯାଇଥାଏ । ୧୯୮୪-୮୫ ସୁଦ୍ଧା ଦିଆଯାଇଥିବା ପରିମାଣ ସମୁଦାୟ ବର୍ଷର ଏକ ଅଂଶ ବିଶେଷ ।

| ବର୍ଷ | | କେତେ ଟନ୍ ଧାନ ସଂଗୃହୀତ ହୋଇଛି | ଆନୁମାନିକ ମୂଲ୍ୟ |
|---|---|---|---|
| ୧୯୭୯-୮୦ | .. | ୮,୯୩୭ | ୮୮'୪୭ |

| ବର୍ଷ | | କେତେ ଟନ୍ ଧାନ ସଂଗୃହୀତ ହୋଇଛି | ଆନୁମାନିକ ମୂଲ୍ୟ |
|---|---|---|---|
| ୧୯୮୦-୮୧ | .. | ୬,୧୯୯ | ୭୪·୫୮ |
| ୧୯୮୧-୮୨ | .. | ୨୭,୭୬୨ | ୪୯୭·୨୦ |
| ୧୯୮୨-୮୩ | .. | ୨୦,୫୫୧ | ୩୨୪·୩୨ |
| ୧୯୮୩-୮୪ | .. | ୨୭,୩୦୫ | ୪୮୪·୦୦ |
| ୧୯୮୪-୮୫ | .. | ୨୦,୦୬୪ | ୨୭୫·୦୦ |

## ସମବାୟ ଚିନି କଳ

ରାଜ୍ୟର ଆଖୁଚାଷ ହେଉଥିବା ଅଞ୍ଚଳରେ ଦୁଇଟି ଚିନିକଳ କାର୍ଯ୍ୟ କରୁଛି—(୧) ଆସ୍କା ସମବାୟ ଚିନି କାରଖାନା,(୨) ବରଗଡ଼ ସମବାୟ ଚିନି କଳ । ଏତଦ୍‌ବ୍ୟତୀତ ପୁରୀ ଜିଲ୍ଲାର ନୟାଗଡ଼ ଓ କଟକ ଜିଲ୍ଲାର ବଡ଼ମ୍ବାଠାରେ ଚିନିକଳ ସ୍ଥାପନ ହେବା କଥା ସିଦ୍ଧାନ୍ତ ହୋଇ ସେଠାରେ ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।

ଚିନି କାରଖାନା ଦୁଇଟିର ଉତ୍ପାଦନ —

ଆସ୍କା ସମବାୟ ଚିନି କାରଖାନା —

| ବର୍ଷ | | କେତେ ମେଟ୍ରିକ ଟନ୍ ଆଖୁ ପେଡ଼ା ଯାଇଛି | ଶତକଡ଼ା ଉତ୍ପାଦନ |
|---|---|---|---|
| ୧୯୮୦-୮୧ | .. | ୧,୦୪,୮୬୫ | ୮·୯୬ |
| ୧୯୮୧-୮୨ | .. | ୧,୯୯,୩୧୨ | ୮·୧୫ |
| ୧୯୮୨-୮୩ | .. | ୨,୦୮,୭୯୦ | ୮·୧୧ |
| ୧୯୮୩-୮୪ | .. | ୧,୦୫,୯୪୦ | ୯·୭୪ |
| ୧୯୮୪-୮୫ | .. | ୧,୦୩,୭୬୫ | ୯·୧୦ |
| ବରଗଡ଼— | | | |
| ୧୯୮୦-୮୧ | .. | .. | .. |
| ୧୯୮୧-୮୨ | .. | ୩୦,୩୯୮ | ୭·୨୬ |
| ୧୯୮୨-୮୩ | .. | ୬୯,୬୫୬ | ୭·୨୦ |
| ୧୯୮୩-୮୪ | .. | ୬୪,୩୪୦ | ୮·୨୬ |
| ୧୯୮୪-୮୫ | .. | ୩୯,୭୬୮ | ୯·୦୭ |

## ଶୀତଳ ଭଣ୍ଡାର (କୋଲଡ ଷ୍ଟୋରେଜ୍)

ରାଜ୍ୟରେ ୨୪ ଗୋଟି ଆଳୁ ଉତ୍ପାଦନ ସଂସ୍ଥା ତଥା ଶୀତଳ ଭଣ୍ଡାର ରହିଛି । ସେଥିରୁ ଉତ୍ପାଦନ ନକରି କେବଳ ଶୀତଳ ଭଣ୍ଡାର ପରିଚାଳନା କରୁଥିବା ଶୀତଳ ଭଣ୍ଡାରର ପରିମାଣ ହେଉଛି ୧୩ । ଏହି ସମସ୍ତ ଶୀତଳ ଭଣ୍ଡାରର କ୍ଷମତା ହେଉଛି ୧୧,୨୫୦ ମେଟ୍ରିକ ଟନ୍ । ୧୯୮୪-୮୫ ସୁଦ୍ଧା ଏହି ପରିମାଣ ୧୪,୦୦୦ ମେଟ୍ରିକ ଟନ୍ ବୃଦ୍ଧି ହୋଇ ବର୍ତ୍ତମାନ କ୍ଷମତା ୨୫,୨୫୦ ମେଟ୍ରିକ ଟନ୍‌ରେ ପହଞ୍ଚି ପାରିଛି ।

| ବର୍ଷ | କେତେ ପରିମାଣରେ ସଂରକ୍ଷିତ ହୋଇଥିଲା | |
|---|---|---|
| ୧୯୮୧-୮୨ | ୫,୮୪୬ | ମେଟ୍ରିକ ଟନ୍ |
| ୧୯୮୨-୮୩ | ୪,୭୮୧ | ,, |
| ୧୯୮୩-୮୪ | ୭,୦୯୧ | ,, |
| ୧୯୮୪-୮୫ | ୭,୨୧୦ | ,, |

ଡାଲି କଳ —

ସପ୍ତମ ଯୋଜନା କାଳରେ କଟକ ଜିଲ୍ଲାର ଜଗତପୁରଠାରେ ଜାତୀୟ ସମବାୟ ଉନ୍ନୟନ ନିଗମ (ଏନ୍. ସି. ଡି. ସି.) ଓ ରାଜ୍ୟ ସରକାରଙ୍କ ମିଳିତ ପ୍ରଚେଷ୍ଟାରେ ଆରମ୍ଭ ହେବାକୁ ଯାଉଛି । ଏହି ପ୍ରକଳ୍ପର ମୂଲ୍ୟ ୮୪·୫୦ ଲକ୍ଷ । ଏହା ରାଜ୍ୟ ସରକାରଙ୍କର ବିଚାରାଧୀନ ରହିଛି ।

## ଖାଉଟୀ ସମବାୟ ଭଣ୍ଡାର

ରାଜ୍ୟର ପ୍ରତ୍ୟେକ ଗ୍ରାମପଞ୍ଚାୟତ ସ୍ତରରେ ଗୋଟିଏ କିମ୍ବା ଦୁଇଟି ସେବା ସମବାୟ ସମିତି ଖୋଲାଯାଇ ସରକାରଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ସାରିଛି । ଏବେ ନୂତନ ଗ୍ରାମପଞ୍ଚାୟତମାନ ଗଠନ କରାଯାଇଛି ଓ ଏହି ନବଗଠିତ ଗ୍ରାମପଞ୍ଚାୟତର ସଂଖ୍ୟା ରାଜ୍ୟର ହେଉଛି ୪,୩୮୯ । ଯେଉଁ ନବଗଠିତ ଗ୍ରାମପଞ୍ଚାୟତଗୁଡ଼ିକର ସମବାୟ ସମିତି ପହଞ୍ଚି ନପାରିଛି ସେଠାରେ ଏହାକୁ କାର୍ଯ୍ୟକାରୀ କରାଇବାକୁ ଯୋଜନା ପ୍ରସ୍ତୁତ ହୋଇସାରିଛି । ନବ ଗଠିତ ଗ୍ରାମପଞ୍ଚାୟତଗୁଡ଼ିକରେ ୫୬୮ଟି ସମବାୟ ସମିତି ଖୋଲା ଯାଇସାରିଛି । ୧୯୮୫-୮୬ ମସିହା ସୁଦ୍ଧା ଆହୁରି ୫୦ଟି ସମବାୟ ସମିତି ଗ୍ରାମପଞ୍ଚାୟତ ସ୍ତରରେ ଖୋଲାଯିବାର ଯୋଜନା ରଖାଯାଇଛି । ସପ୍ତମ ଯୋଜନା ଶେଷ ସୁଦ୍ଧା ସମସ୍ତ ଗ୍ରାମପଞ୍ଚାୟତରେ ଏହାକୁ କାର୍ଯ୍ୟକାରୀ କରାଯିବାର ଯୋଜନା ପ୍ରସ୍ତୁତ କରାଯାଇଛି ।

ସ୍କୁଲ କଲେଜ ସ୍ତରରେ ମଧ୍ୟ ସମବାୟ ଭଣ୍ଡାରମାନ ଖୋଲାଯାଇ ଛାତ୍ରମାନଙ୍କୁ ଅତ୍ୟାବଶ୍ୟକ ଦ୍ରବ୍ୟ ଯୋଗାଣରେ ସୁବିଧା ଦିଆଯାଇଛି ।

ସୁଷମ ବଣ୍ଟନ ଓ ଲାଭଖୋରୀ ବ୍ୟବସାୟୀମାନଙ୍କୁ ବାଧା ଦେବା ନିମନ୍ତେ ଏହା କାର୍ଯ୍ୟକାରୀ ହେଉଅଛି ।

୧୯୮୦-୮୧ରେ ସମବାୟ ପାଇକାରୀ ଭଣ୍ଡାରର ସଂଖ୍ୟା ଥିଲା—୩,୦୭୪, ୧୯୮୧-୮୨ରେ ୪,୨୯୪, ୧୯୮୨-୮୩ରେ ୪,୯୧୧, ୧୯୮୩-୮୪ରେ ୫,୦୦୪ ଓ ଅଦ୍ୟାବଧି ୧୯୮୪-୮୫ ସୁଦ୍ଧା ଏହି ସଂଖ୍ୟା ୫,୦୬୯ରେ ପହଞ୍ଚି ପାରିଛି ।

ଏହି ସବୁ ଭଣ୍ଡାରଗୁଡ଼ିକ ୧୯୮୦-୮୧ରେ ୪୫.୦୭ କୋଟି, ୧୯୮୧-୮୨ରେ ୩୧.୦୧ କୋଟି, ୧୯୮୨-୮୩ରେ ୪୮.୪୮ କୋଟି, ୧୯୮୩-୮୪ରେ ୪୬.୯୯ ଓ ୧୯୮୪-୮୫ମସିହାର ୩୦.୩-୧୯୮୫ ସୁଦ୍ଧା ୨୯.୭୯ କୋଟି ଟଙ୍କା ମୂଲ୍ୟର ଜିନିଷପତ୍ର ବିକ୍ରି କରି ପାରିଛି ।

କଂଟ୍ରୋଲ ଲୁଗା ବିକ୍ରୀ କ୍ଷେତ୍ରରେ ମଧ୍ୟ ଏହାର ସାଫଲ୍ୟ ଲକ୍ଷ୍ୟ କରାଯାଇ ପାରେ ।

| ୧୯୮୧-୮୨ | ୧୯୮୨-୮୩ | ୧୯୮୩-୮୪ | ୧୯୮୪-୮୫ (ମାର୍ଚ୍ଚ ୩୧ ସୁଦ୍ଧା) |
|---|---|---|---|
| ୧୬୩.୮୭ ଲକ୍ଷ ଟଙ୍କା | ୩୭୦.୦୩ | ୪୨୬.୫୩ | ୯୭.୩୫ |

ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଏହି ପରିମାଣକୁ ଆହୁରି ବୃଦ୍ଧି କରାଯିବା ନିମନ୍ତେ ସରକାର ଲକ୍ଷ୍ୟ ରଖିଛନ୍ତି ।

## ଗୃହ ନିର୍ମାଣ

ଉଭୟ ସହର ଓ ଗ୍ରାମାଞ୍ଚଳରେ ଗୃହର ଚାହିଦା ମେଣ୍ଟାଇବା ନିମନ୍ତେ ୬ଟି ସହରାଞ୍ଚଳ ସମବାୟ ଗୃହନିର୍ମାଣ ସଂସ୍ଥା (ଅରବାନ କୋ-ଅପରେଟିଭ୍ ହାଉସିଂ ସୋସାଇଟି) ସମବାୟ ଗୃହ ନିର୍ମାଣ ସମବାୟସମିତି କାର୍ଯ୍ୟ କରୁଅଛି । ସବ୍‌ଡିଭିଜନ୍ ସ୍ତରରେ ୫୭ଟି ପ୍ରାଥମିକ ଗୃହନିର୍ମାଣ ସମବାୟ ସମିତି କାର୍ଯ୍ୟ କରୁଛନ୍ତି । ଏମାନେ ଘରଡିହ ଓ ଗୃହ ନିର୍ମାଣ କରିବା ନିମନ୍ତେ ଦୀର୍ଘ ମିଆଦୀ ଋଣ ଯୋଗାଇ ଥାଆନ୍ତି । ରାଜ୍ୟ ଗୃହ ନିର୍ମାଣ ସଂସ୍ଥା ୧୯୮୦ ଠାରୁ ୧୯୮୪-୮୫ ବର୍ଷ ମଧ୍ୟରେ ୪.୫୦ କୋଟି ଟଙ୍କା ଜୀବନବୀମା ନିଗମ (ଏଲ୍. ଆଇ. ସି.) ଏବଂ ହୁଡକୋ । (ଏଚ୍. ଇଉ. ଡି. ସି. ଓ.) ସଂସ୍ଥାମାନଙ୍କଠାରୁ ଋଣ ଆଣି ୩ କୋଟି ୮୨ ଲକ୍ଷ ଟଙ୍କା ପ୍ରାଥମିକ ଗୃହ ନିର୍ମାଣ ସଂସ୍ଥାମାନଙ୍କୁ ଋଣ ପ୍ରଦାନ କରିଛି ।

## ଗୋଦାମ ଘର

ଫସଲ ଅମଳ ସମୟରେ ଫସଲର ମୂଲ୍ୟ ସାଧାରଣତଃ ବଜାରରେ ଭଲ ନଥାଏ । ଏତଦ୍‌ବ୍ୟତୀତ ଶସ୍ୟଗୁଡ଼ିକୁ ସଂରକ୍ଷିତ କରି ରଖିବା ନିମନ୍ତେ ଚାଷୀର ମଧ୍ୟ ଭଲମ ଗୃହ ନ ଥାଏ । ତେଣୁ ଚାଷୀ ଅଳ୍ପ ଦାମରେ ଶସ୍ୟକୁ ବିକ୍ରି କରିଦେବାକୁ ବାଧ୍ୟ ହୋଇଥାଏ । ତେଣୁ ସମବାୟ ମାଧ୍ୟମରେ ଗୋଦାମ ଘର ନିର୍ମାଣ କରାଯାଇ ସେଥିରେ ଚାଷୀମାନଙ୍କର ଶସ୍ୟକୁ ସଂରକ୍ଷିତ କରି ରଖାଯାଇ ଫସଲର ଦର ଠିକ୍ ଆସିବା ପରେ ତାକୁ ବିକ୍ରୟ କରାଯାଇଥାଏ । ୧୯୫୬-୫୭ଠାରୁ ୧୯୭୭-୭୮ ପର୍ଯ୍ୟନ୍ତ ଗ୍ରାମାଞ୍ଚଳରେ ୭୬ଟି ଓ ବାଣିଜ୍ୟିକ ସ୍ତରରେ ୨୩୧ଟି ଗୋଦାମ ଘର ଥିଲା ଏବଂ ସେମାନଙ୍କର ମୋଟ କ୍ଷମତା ଥିଲା ୧,୩୦,୧୦୦ ମେଟ୍ରିକ୍ ଟନ୍ । ପରବର୍ତ୍ତୀ ସମୟରେ ଏହା ବୃଦ୍ଧି ପାଇ ୭ମ ଯୋଜନା କାଳରେ ଗୋଦାମ ଘରଗୁଡ଼ିକରେ ୬.୪୫ ଲକ୍ଷ ମେଟ୍ରିକ୍ ଟନ୍ ଶସ୍ୟ ସଂରକ୍ଷିତ ହେବାର ଯୋଜନା ରହିଛି । ୧୯୭୮-୭୯ ଠାରୁ ୧୯୮୩-୮୪ ପର୍ଯ୍ୟନ୍ତ ନିର୍ମିତ ହୋଇଥିବା ଗୋଦାମ ଘରର ପରିମାଣ ହେଲା ୧,୧୪୫ ଓ ସେମାନଙ୍କର ସଂରକ୍ଷଣ କ୍ଷମତା ହେଲା ୧,୫୯,୮୧୦ ମେଟ୍ରିକ୍ ଟନ୍ ।

ସପ୍ତମ ଯୋଜନା କାଳରେ ଗୋଦାମ ଘରେ ୬.୪୫ ଲକ୍ଷ ମେଟ୍ରିକ୍ ଟନ୍ ଶସ୍ୟ ସଂରକ୍ଷିତ ହେବାର ଯୋଜନା ରହିଛି । ୧୯୭୭-୭୮ ସୁଦ୍ଧା ୧,୩୦,୧୦୦ ମେଟ୍ରିକ୍ ଟନ୍ କ୍ଷମତା ହାସଲ କରାଯାଇଥିଲା । ପରବର୍ତ୍ତୀ ସମୟରେ (ଏନ୍. ସି. ଡି. ସି.—୧) ଜାତୀୟ ସମବାୟ ଉନ୍ନୟନ ନିଗମ—୧ ଦ୍ୱାରା ଆହୁରି ୧,୫୯,୮୧୦ ମେଟ୍ରିକ୍ ଟନ୍ ଯୋଗ କରାଯାଇଥିଲା । ୧୯୮୫-୮୬ ବର୍ଷ ଶେଷ ସୁଦ୍ଧା ୪୮,୨୦୦ ମେଟ୍ରିକ୍ ଟନ୍ ସଂରକ୍ଷଣ କ୍ଷମତା ଏଥିରେ ଯୋଗ କରାଯାଇ ପାରିବ ।

## ଅନ୍ୟାନ୍ୟ ସମବାୟ ସମିତ

ରାଜ୍ୟ ଜନସାଧାରଣଙ୍କର ବିଭିନ୍ନ ଚାହିଦା ମେଣ୍ଟାଇବା ଦିଗରେ ଅନ୍ୟାନ୍ୟ ବହୁ ସମବାୟ ସମିତି କାର୍ଯ୍ୟ କରୁଅଛନ୍ତି । ଦୁଗ୍ଧ ଉତ୍ପାଦନ, ପଶୁପାଳନ, ମତ୍ସ୍ୟଚାଷ ସମବାୟ ସମିତିଗୁଡ଼ିକ ଅନୁନ୍ନତ ଅଞ୍ଚଳରେ କାର୍ଯ୍ୟ କରିଚାଲିଛି । ଶ୍ରମିକ ସମବାୟ ସମିତିଗୁଡ଼ିକ ଗଠିତ ହୋଇ ଶ୍ରମିକମାନଙ୍କୁ ସେମାନଙ୍କ ପରିଶ୍ରମର ଉପଯୁକ୍ତ ମୂଲ୍ୟ ଦେବାକୁ ସମିତିଗୁଡ଼ିକ ସକ୍ଷମ ହୋଇ ପାରିଛନ୍ତି ।

ଉପରୋକ୍ତ ସମିତିଗୁଡ଼ିକର କାର୍ଯ୍ୟ ତଥା ମୂଳଧନ ନିମ୍ନରେ ପ୍ରଦତ୍ତ ହେଲା ।

| ୧୯୮୩-୮୪ ସୁଦ୍ଧା | ସମବାୟ ସମିତି ସଂଖ୍ୟା | ସଭ୍ୟ ସଂଖ୍ୟା | ମୂଳଧନ (ଲକ୍ଷ ଟଙ୍କାରେ) | ବିକ୍ରି/କାର୍ଯ୍ୟ ସଂପାଦିତ ହୋଇଛି (ଲକ୍ଷ ଟଙ୍କାରେ) |
|---|---|---|---|---|
| ଆପେକ୍ସ ଦୁଗ୍ଧ | ୧ | ୬ | ୬,୩୧.୩୦ | ୧,୨୧.୫୨ ଦୁଗ୍ଧ ୧.୪୩ ଅନ୍ୟାନ୍ୟ ଉତ୍ପାଦିତ ଦ୍ରବ୍ୟ । |

| ୧୯୮୩-୮୪ ସୁଦ୍ଧା | | ସମବାୟ ସମିତି ସଂଖ୍ୟା | ସଭ୍ୟ ସଂଖ୍ୟା | ମୂଳଧନ (ଲକ୍ଷ ଟଂକାରେ) | ବିକ୍ରି/କାର୍ଯ୍ୟ ସଂପାଦିତ ହୋଇଛି (ଲକ୍ଷ ଟଂକାରେ) |
|---|---|---|---|---|---|
| ମତ୍ସ୍ୟ ପାଳନ | .. | ୧ | ୧୮୦ | ୫୭·୪୬ | .. |
| ବୁଣାକାର | .. | ୩ | ୬୦୪ | ୨୨,୩୮·୧୫ | ୧୨,୮୨·୪୦ (ଲୁଗା) |
| ଗୃହ ନିର୍ମାଣ | .. | ୧ | ୫୧୦ | ୪,୫୬·୫୬ | ୧୬·୮୯ (୫୪ଟି ଗୃହର ମୂଲ୍ୟ) |
| ସଂଘ | | | | | |
| ଦୁଗ୍ଧ | .. | ୯ | ୪୦୮ | ୮୮·୨୩ | ୫୦·୧୧ ଦୁଗ୍ଧ ୦·୯୯ ଅନ୍ୟାନ୍ୟ ଦ୍ରବ୍ୟ । |
| ମତ୍ସ୍ୟ ପାଳନ | .. | ୧ | ୧୦୩ | ୦·୦୫ | .. |
| ଶ୍ରମିକ | .. | ୩ | ୪୭ | ୧୨·୯୫ | .. |
| ପ୍ରାଥମିକ | | | | | |
| ଦୁଗ୍ଧ | .. | ୪୫୨ | ୨୪,୭୩୫ | ୨,୩୦·୭୧ | ୭୬·୩୮ ଦୁଗ୍ଧ ୨·୫୬ ଅନ୍ୟାନ୍ୟ ଦ୍ରବ୍ୟ । |
| ମତ୍ସ୍ୟ | .. | ୩୪୬ | ୩୯,୭୩୨ | ୫,୧୫·୪୨ | ୮୬·୨୯ (ମତ୍ସ୍ୟ) |
| ଶ୍ରମିକ | .. | ୧୯୦ | ୧୯,୪୧୭ | ୪,୪୮·୨୫ | ୧୬୯·୬୦ କାର୍ଯ୍ୟ ସଂପାଦିତ । |
| ବୁଣାକାର | .. | ୭୨୯ | ୯୦,୫୧୨ | ୨୨,୬୨·୧୯ | ୨୩,୪୫·୬୯ (ଲୁଗା) |
| ସମବାୟ ପ୍ରେସ | .. | ୯ | ୫୭୩ | ୩୧·୩୦ | ୧୩·୩୩ ଲକ୍ଷ |
| ଗୃହ ନିର୍ମାଣ | .. | ୧୧୩ | ୨୪,୨୮୫ | ୩,୦୬·୮୫ | ୪,୯୭·୦୩ ଗୃହର ମୂଲ୍ୟ |

ନିବନ୍ଧକ
ସମବାୟ ସମିତି ସମୂହ, ଓଡ଼ିଶା
ଭୁବନେଶ୍ୱର

ପ୍ରକୃତ ସୁଖ ବାହାରେ ମିଳେ ନାହିଁ, ମିଳେ ନିଜ ଅନ୍ତର ଭିତରୁ । 'ଗାନ୍ଧିଜୀ' ୯.୦୨.୧୯୪୪



# ଓଡ଼ିଶାରେ ପ୍ରାଥମିକ ଶିକ୍ଷାର ଅଗ୍ରଗତି

ଡକ୍ଟର ତାପସ କର

ଯେଉଁ ରାଷ୍ଟ୍ରର ନାଗରିକଗଣ ଯେତେ ସାକ୍ଷର, ଶିକ୍ଷିତ, ସେ ରାଷ୍ଟ୍ର ସେତେ ସକ୍ଷମ, ସମୃଦ୍ଧ । ଏଣୁ ପ୍ରଗତିର ଅନ୍ୟ ନାମ ହିଁ ଶିକ୍ଷା । ରାଷ୍ଟ୍ରର ଜନଶକ୍ତିକୁ ବିକାଶ ମୂଳକ କାର୍ଯ୍ୟରେ ଉପଯୁକ୍ତ ଭାବରେ ବିନିଯୋଗ କରିବାକୁ ହେଲେ ଏହାର ନାଗରିକମାନଙ୍କୁ ସାକ୍ଷର, ଶିକ୍ଷିତ କରିବାକୁ ପଡ଼ିବ । କୃଷି ହେଉ, ବାଣିଜ୍ୟ ହେଉ, ଶିଳ୍ପ ହେଉ ଶିଳ୍ପ ବିଜ୍ଞାନ ହେଉ, ସବୁର ମୂଳରେ ହିଁ ଶିକ୍ଷା । ସେଥିପାଇଁ ସଂପ୍ରତି ବିଶ୍ୱର ସମସ୍ତ ବିକାଶଶୀଳ ଦେଶ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ଆମ ଦେଶରେ ମଧ୍ୟ ଶିକ୍ଷା ପ୍ରସାରର ସମସ୍ତ ବିଧି ବ୍ୟବସ୍ଥାକୁ ଯଥାରୀତି ପାଳନ କରାଯାଉଛି ଓ ଶିକ୍ଷା ପ୍ରସାରକୁ ତ୍ୱରାନ୍ୱିତ କରାଯାଉଛି । ୧୯୯୦ ମସିହା ସୁଦ୍ଧା ଦେଶରୁ ସଂପୂର୍ଣ୍ଣ ଭାବରେ ନିରକ୍ଷରଣ ଦୂରୀକରଣ ପାଇଁ ସରକାର ସଂକଳ୍ପବଦ୍ଧ । ଏହି ଜାତୀୟ ଲକ୍ଷ୍ୟ ହାସଲ ଦିଗରେ ଆମ ରାଜ୍ୟରେ ମଧ୍ୟ ଶିକ୍ଷାର ପ୍ରସାର ପାଇଁ ବହୁମୁଖୀ ପଦକ୍ଷେପ ନିଆଯାଉଛି ।

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ପ୍ରଥମ-ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ (୬ରୁ ୧୪ ବର୍ଷ ବୟସ) ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ପ୍ରଚଳନ କରଯାଉଛି । ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ କିପରି ଅଧିକରୁ ଅଧିକ ଛାତ୍ରଛାତ୍ରୀ ନାମ ଲେଖାଇବେ, ସେଥିପ୍ରତି ଧ୍ୟାନ ଦିଆଯା ଉଛି । ପ୍ରତ୍ୟେକ ମଣ୍ଡଳ ଉନ୍ନୟନ ଅଧିକାରୀ (ବି. ଡ଼ି. ଓ.), ଶିକ୍ଷା ମଣ୍ଡଳାଧିକାରୀ (Cr I.) ଏବଂ ଜିଲ୍ଲା ଶିକ୍ଷା ପରିଦର୍ଶକ (D. I.) ମାନଙ୍କୁ ଏଥିପାଇଁ ସକଳ ପଦକ୍ଷେପ ନେବାପାଇଁ କୁହାଯାଉଛି । ସ୍ଥାନୀୟ ଭଦ୍ରବ୍ୟକ୍ତି ଓ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ସାହାଯ୍ୟ ସହଯୋଗ ଲୋଡ଼ିବା ପାଇଁ ମଧ୍ୟ ପରାମର୍ଶ ଦିଆଯାଉଛି । ଏହାବ୍ୟତୀତ ମଝିରୁ ପାଠଛାଡ଼ି ଚାଲିଯାଉଥିବା ପିଲାମାନଙ୍କୁ ଏବଂ ସେମାନଙ୍କର ଅଭିଭାବକମାନଙ୍କୁ, ପିଲାଏ ପାଠଛାଡ଼ି ନଯିବା ପାଇଁ ପ୍ରବର୍ତ୍ତାଇବାକୁ କୁହାଯାଉଛି । ପିଲାମାନେ ମଝିରୁ ପାଠଛାଡ଼ି ଚାଲିଯାଉଥିବା ସମସ୍ୟା ସମାଧାନ କରିବା ପାଇଁ ଚେଷ୍ଟା କରାଯାଉଛି । ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ଦାୟିତ୍ୱରେ ଥିବା ପରିଦର୍ଶକକାରୀ ଅଫିସରମାନଙ୍କୁ ଅନ୍ତତଃ-ପକ୍ଷେ ପ୍ରତି ତିନିମାସରେ ଥରେ ବିଦ୍ୟାଳୟ ପରିଦର୍ଶନ କରି ରିପୋର୍ଟ ଦେବାକୁ ନିର୍ଦ୍ଦେଶ ଦିଆଯାଉଛି ।

ବର୍ତ୍ତମାନ ଆମ ରାଜ୍ୟରେ ୩୬,୧୯୩ଟି ପ୍ରାଥମିକ ଓ ୮,୨୩୬ଟି ନିମ୍ନ ମାଧ୍ୟମିକ ବିଦ୍ୟାଳୟ ଅଛି । ରାଜ୍ୟରେ ବର୍ତ୍ତମାନ ୮୨,୬୧୯ ଜଣ ପ୍ରାଥମିକ ଶିକ୍ଷକ ଓ ୨୪,୦୯୬ ଜଣ ନିମ୍ନ ମାଧ୍ୟମିକ ଶିକ୍ଷକ ଅଛନ୍ତି । ସପ୍ତମ ଯୋଜନା କାଳର ୧୯୮୫-୮୬ରେ ୧୮୦୦, ୧୯୮୭-୮୮ରେ ୧,୦୦୦ ଓ ୧୯୮୯-୯୦ ୧୦୦୦ ନୂତନ ପ୍ରାଥମିକ ଶିକ୍ଷକଙ୍କୁ ନିଯୁକ୍ତି ଦେବାର ପରିକଳ୍ପନା ରହିଛି । ୧୯୮୪-୮୫ରେ ପ୍ରାଥମିକ (୬ରୁ ୧୧ ବର୍ଷ ବୟସ) ସ୍ତରରେ ୩୨,୦୯,୦୦୦ ଜଣ ଛାତ୍ର ଛାତ୍ରୀ ଥିଲେ । ସେଥିମଧ୍ୟରୁ ୫,୦୩,୦୦୦ ହରିଜନ ଓ ୬,୧୧,୦୦୦ ଆଦିବାସୀ ସଂପ୍ରଦାୟର ଛାତ୍ରଛାତ୍ରୀ ଅଛନ୍ତି ।

୧୯୮୪-୮୫ରେ ନିମ୍ନ ମାଧ୍ୟମିକ ସ୍ତରରେ (୧୧ରୁ ୧୪ ବର୍ଷ) ସମୁଦାୟ ୭,୮୩,୦୦୦ ଜଣ ଛାତ୍ରଛାତ୍ରୀ ଥିଲେ । ସେଥିମଧ୍ୟରୁ ଆଦିବାସୀ ସଂପ୍ରଦାୟର ଛାତ୍ରଛାତ୍ରୀ ୯୯,୦୦୦ ଏବଂ ହରିଜନ ସଂପ୍ରଦାୟର ୯୬,୦୦୦ । ୧୯୮୫-୮୬ରେ ପ୍ରାଥମିକ ସ୍ତରରେ ୫,୧୩,୦୦୦ ହରିଜନ ଓ ୬,୧୫,୦୦୦ ଆଦିବାସୀ ସଂପ୍ରଦାୟର ଛାତ୍ରଛାତ୍ରୀଙ୍କ ସମେତ ସମୁଦାୟ ୩୨,୫୦,୦୦୦ ଜଣ ଓ ନିମ୍ନ ମାଧ୍ୟମିକ ସ୍ତରରେ ୧,୦୧,୦୦୦ ହରିଜନ ଓ ୧,୦୩,୦୦୦ ଆଦିବାସୀ ସଂପ୍ରଦାୟର ଛାତ୍ରଛାତ୍ରୀଙ୍କ ସମେତ ମୋଟ ୭,୯୦,୦୦୦ ଜଣ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନର ବ୍ୟବସ୍ଥା ପାଇଁ ଲକ୍ଷ୍ୟ ରଖାଯାଇଛି ।

ଯେଉଁ ବାଳକବାଳିକାମାନେ (୯ରୁ ୧୪ ବର୍ଷ) ଆଦୌ ସ୍କୁଲକୁ ଆସିନାହାନ୍ତି ବା ମଝିରୁ ସ୍କୁଲ ଛାଡ଼ି ଚାଲିଯାଇଛନ୍ତି, ସେମାନଙ୍କ ପାଇଁ ଅଣଆନୁଷ୍ଠାନିକ ଚାଟଶାଳୀ ମାଧ୍ୟମରେ ଶିକ୍ଷା ବ୍ୟବସ୍ଥା କରାଯାଇଛି । ୧୯୮୩-୮୪ ପୂର୍ବରୁ ରାଜ୍ୟରେ ୪,୦୦୦ ଚାଟଶାଳୀ ଖୋଲା ଯାଇଥିଲା । ସେଥିମଧ୍ୟରୁ ୨,୯୭୯ଟି ପ୍ରାଥମିକ ଚାଟଶାଳୀ ଓ ୧,୦୨୧ଟି ମାଧ୍ୟମିକ ଚାଟଶାଳୀ । ୧୯୮୩-୮୪ରେ ୩୦୦୦ (ସହଶିକ୍ଷା) ଓ ୫୬୦ଟି କେବଳ ବାଳିକାମାନଙ୍କ ପାଇଁ ପ୍ରାଥମିକ ଚାଟଶାଳୀ ଖୋଲାଗଲା । ସହଶିକ୍ଷା ଚାଟଶାଳୀ (୩୦୦୦+୨୯୭୯=୫୯୭୯) ଗୁଡ଼ିକରେ ରାଜ୍ୟ ଓ କେନ୍ଦ୍ର ସରକାର ପ୍ରତ୍ୟେକ ୫୦ % ଅର୍ଥ ଖଟାଇଲେ ଓ ୫୬୦ଟି ବାଳିକା ପ୍ରାଥମିକ ଚାଟଶାଳୀ ପାଇଁ କେନ୍ଦ୍ରସରକାର ୯୦ % ଏବଂ ରାଜ୍ୟ ସରକାର ୧୦ % ଅର୍ଥ ଯୋଗାଇଲେ । ୧୯୮୪-୮୫ରେ ଆଉ କୌଣସି ନୂତନ ଚାଟଶାଳୀ ଅର୍ଥାଭାବରୁ ଖୋଲାଯାଇ ନାହିଁ । ସଂପ୍ରତି ସମୁଦାୟ ଯେଉଁ ୭୫୬୦ଟି ଚାଟଶାଳୀ ଚାଲିଛି ସେଥିମଧ୍ୟରୁ ରାଜ୍ୟ ଶିକ୍ଷା, ଗବେଷଣା ଓ ପ୍ରଶିକ୍ଷଣ ପରିଷଦ (SCERT) ୮୪୦ଟି (ପ୍ରାଥମିକ ୭୦୦+ ମାଧ୍ୟମିକ ୧୪୦) ଚାଟଶାଳୀ ନିଜ ଅଧୀନରେ ଥିବା ଶିକ୍ଷକ ପ୍ରଶିକ୍ଷଣ ସଂସ୍ଥାମାନଙ୍କ ଜରିଆରେ ପରିଚାଳନା କରୁଛନ୍ତି । ଅବଶିଷ୍ଟ ଶିକ୍ଷା ଜିଲ୍ଲା ପରିଦର୍ଶକମାନଙ୍କ ଜରିଆରେ ପରିଚାଳିତ ହେଉଛି । ଏହି ଚାଟଶାଳୀଗୁଡ଼ିକ ପାଇଁ ୧୯୮୪-୮୫ ବର୍ଷରୁ ୧୭୫ ଜଣ ପରିଦର୍ଶକଙ୍କୁ ମଧ୍ୟ ନିଯୁକ୍ତି ଦିଆଯାଇଛି । ଏପର୍ଯ୍ୟନ୍ତ ଏସବୁ ଚାଟଶାଳୀରେ ପରୀକ୍ଷା ପଦ୍ଧତି (Evalution) ପ୍ରଚଳନ କରାଯାଇ ନାହିଁ କିନ୍ତୁ ଚଳିତ ବର୍ଷ, କେନ୍ଦ୍ର ସରକାର ଏହି ଚାଟଶାଳୀଗୁଡ଼ିକର ପରୀକ୍ଷା କାର୍ଯ୍ୟ ପାଇଁ ଏକ ନିର୍ଦ୍ଦେଶକ ପଦବୀ ସୃଷ୍ଟି କରିଛନ୍ତି । ୧୯୮୪-୮୫ରେ ପ୍ରାଥମିକ ଚାଟଶାଳୀରେ ସମୁଦାୟ ୧,୫୯,୦୦୦ ଜଣ ଓ ମାଧ୍ୟମିକ ଚାଟଶାଳୀରେ ୯,୦୦୦ ଜଣ ବାଳକ ବାଳିକା ପାଠ ପଢୁଥିଲେ । ୭ମ ଯୋଜନା କାଳରେ ୨୦୦୦ ନୂତନ ପ୍ରାଥମିକ ଚାଟଶାଳୀ ଖୋଲାଯାଇ ଅଧିକ ୫୦,୦୦୦ ଛାତ୍ରଛାତ୍ରୀଙ୍କୁ ଅଣଆନୁଷ୍ଠାନିକ ଶିକ୍ଷା ପଦ୍ଧତିରେ ଶିକ୍ଷା ଦିଆଯିବା ପାଇଁ 'ବ୍ୟବସ୍ଥା ରହିଛି ।

ବୟସ୍କ ନିରକ୍ଷରମାନଙ୍କୁ ସାକ୍ଷର କରି ସେମାନଙ୍କର ବୃତ୍ତିଗତ ଦକ୍ଷତାର ବିକାଶ ଦିଗରେ ବିଭିନ୍ନ ପଦକ୍ଷେପ ନିଆଯାଉଛି । ବର୍ତ୍ତମାନ ଆମ ରାଜ୍ୟରେ ୨୧ଟି ଗ୍ରାମ୍ୟ ବୃତ୍ତିଭିତ୍ତିକ ସାକ୍ଷରଣ ପ୍ରକଳ୍ପ ଚାଲୁଅଛି । ଏଗୁଡ଼ିକ ଅଧୀନରେ ମୋଟ ୬,୭୦୦ ଗୋଟି (ପୁରୁଷ ୩୮୬୮ ଏବଂ ମହିଳା ୨୮୩୨ କେନ୍ଦ୍ର) ପ୍ରୌଢ଼ଶିକ୍ଷା କେନ୍ଦ୍ର କାର୍ଯ୍ୟ କରୁଛି । ବର୍ତ୍ତମାନ ସମୁଦାୟ ୨,୦୬,୪୧୩ ଜଣ ବୟସ୍କ ନିରକ୍ଷର (୧,୨୧,୭୩୫ ପୁରୁଷ ଏବଂ ୮୪,୬୭୮ ମହିଳା) ସାକ୍ଷରଣ ଜ୍ଞାନ ହାସଲ କରୁଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି ୨୫,୧୦୪ ଜଣ ହରିଜନ ଏବଂ ୪୬,୧୮୨ ଜଣ ଆଦିବାସୀ ସଂପ୍ରଦାୟର ପୁରୁଷ ଓ ମହିଳା । ଏହା ବ୍ୟତୀତ ବର୍ତ୍ତମାନ ଆମ ରାଜ୍ୟରେ ୩୧ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ ସରକାରଙ୍କଠାରୁ ଆର୍ଥିକ ଅନୁଦାନ ନେଇ ୨୭୦ଟି ପ୍ରୌଢ଼ଶିକ୍ଷା କେନ୍ଦ୍ର ଜରିଆରେ ୮୧୦୦ ଜଣ ବୟସ୍କ ନିରକ୍ଷରଙ୍କୁ ସାକ୍ଷର କରିବା ପାଇଁ ଚେଷ୍ଟିତ ଅଛନ୍ତି । ଜାତୀୟ ପ୍ରୌଢ଼ ଶିକ୍ଷା ଯୋଜନା କାର୍ଯ୍ୟକାରୀ ହେବା ଦିନଠାରୁ ବୃତ୍ତିଭିତ୍ତିକ ସାକ୍ଷରତା ଯୋଜନା ମାଧ୍ୟମରେ ସର୍ବମୋଟ ୭,୧୨,୬୪୮ ଜଣ ନିରକ୍ଷରଙ୍କୁ ସାକ୍ଷର କରାଯାଇ ପାରିଛି । ବୟସ୍କ ନବସାକ୍ଷରମାନଙ୍କ ପାଇଁ ମଧ୍ୟ ୧୩୦୦ଟି ସାକ୍ଷରତା ପରବର୍ତ୍ତୀ କେନ୍ଦ୍ର ମାଧ୍ୟମରେ ବିଭିନ୍ନ ଉପାଦେୟ ବହିପତ୍ର ଯୋଗାଇ ଦିଆଯାଇ ସେମାନଙ୍କ ବୃତ୍ତିଗତ ଦକ୍ଷତା ବୃଦ୍ଧିକରାଯିବା ସଙ୍ଗେ ସଙ୍ଗେ ସେମାନଙ୍କ ସାକ୍ଷରତା ଜ୍ଞାନ ବଜାୟ ରଖାଯିବା ପାଇଁ ବ୍ୟବସ୍ଥା ହୋଇଛି । ଶିଳ୍ପ, କାରଖାନା, ଖଣି ଖାଦାନର ନିରକ୍ଷର ଶ୍ରମିକମାନଙ୍କୁ ସାକ୍ଷର ବରିବା ପାଇଁ ନିକଟ ଭବିଷ୍ୟତରେ ରାଜ୍ୟରେ ତିନିଗୋଟି ଶ୍ରମିକ ବିଦ୍ୟାପୀଠ ଖୋଲାଯିବାର ପରିକଳ୍ପନା ଅଛି । ଏଦିଗରେ ବିହିତ ପଦକ୍ଷେପ ନିଆଯାଉଛି ।

ଏସବୁ ଦୃଷ୍ଟିରୁ ଦେଖିବାକୁ ଗଲେ ରାଜ୍ୟରେ ପ୍ରାଥମିକ ତଥା ଅଣଆନୁଷ୍ଠାନିକ ଓ ପ୍ରୌଢ଼ଶିକ୍ଷାର ଅଗ୍ରଗତି ପାଇଁ ସକଳ ଉଦ୍ୟମକୁ ଅଧିକରୁ ଅଧିକ ତ୍ୱରାନ୍ୱିତ କରାଯାଉଛି । ଜନସହଯୋଗ ମିଳିଲେ ଆମ ରାଜ୍ୟ ଜାତୀୟ ଲକ୍ଷ୍ୟ ପୂରଣ ପୂର୍ବକ ଏକ ନିରକ୍ଷରଣ ମୁକ୍ତ ରାଜ୍ୟର ସମ୍ମାନ ଲାଭ କରି ପାରିବ ବୋଲି ଆଶା କରାଯାଏ ।

ନିର୍ଦ୍ଦେଶକ,
ପ୍ରାଥମିକ ଓ ପ୍ରୌଢ଼ଶିକ୍ଷା, ଓଡ଼ିଶା ।

**ଯେଉଁ ଶିକ୍ଷାର ପ୍ରଭାବ ଆମ ଚରିତ୍ର ଉପରେ ନପଡ଼େ ତାହା ନିରର୍ଥକ ସେବା ।**

"ଗାନ୍ଧିଜୀ" ଯୋଧପୁର, 3.୧୯.୪୭ .

# ବର୍ମା ଶିମ୍ବ

ମେଜର ପ୍ରଣବ ଘୋଷ
(ଅବସର ପ୍ରାପ୍ତ)

ମଣିଷର ଶରୀର ପାଇଁ ଦରକାର ପୁଷ୍ଟିକର ଖାଦ୍ୟ କିନ୍ତୁ ଦୁର୍ଭାଗ୍ୟ, ପନିପରିବାର ଅତ୍ୟଧିକ ଦାମ ପାଇଁ ସାଧାରଣ ଲୋକଙ୍କ ପକ୍ଷରେ ତଟକା ପରିବା କିଣି ଖାଇବା ପ୍ରାୟ ଅସମ୍ଭବ । ଏପରିକି ଆଜିକାଲି ବାଇଗଣଟିଏ କିଣି ପୋଡ଼ି ଖାଇବା ଏକ ବିଳାସିତା ।

କଞ୍ଚାପରିବା ମଧ୍ୟରେ ଶିମ୍ବ ଏକ ଉପାଦେୟ ଖାଦ୍ୟ । ଆମ ଓଡ଼ିଶାରେ ବହୁ ପ୍ରକାର ଶିମ୍ବ ଚାଷର ପ୍ରଚଳନ ଅଛି । ହାଟ ବଜାରରେ ଶୀତଋତୁରେ ବିଭିନ୍ନ ପ୍ରକାରର ଶିମ୍ବ କିଣିବାକୁ ମିଳେ । ଆଉ ଏକ ପ୍ରକାର ଝାଲର ପରି ଚାରୋଟି ଦେଣାଯୁକ୍ତ ଶିମ୍ବ ଅଛି, ଯାହାର ଉଦ୍ଭିଦ ବିଜ୍ଞାନରେ ନାମ ହେଲା—ଫୋସାରପସ ଟେଟ୍ରାଗୋନୋଲୋବସ୍ (Phoscarpus Tetragonolobus) । ଓଡ଼ିଶାରେ ଆମେ ଏହାକୁ ବର୍ମା ଶିମ୍ବ ବୋଲି କହିଥାଉଁ । ପଶ୍ଚିମବଙ୍ଗ ଓ ମହାରାଷ୍ଟ୍ରରେ ଏହାକୁ ଚପାଟି ଶିମ୍, ଗୋଆରେ ଗୋଆବିନ୍, କର୍ଣ୍ଣାଟକରେ ରାକ୍ଷି ବା କାଲୁ ଆରଭାଇ ଏବଂ ତାମିଲନାଡୁରେ ଏହାକୁ ବୃଛି ବା ପେରେନଡ଼ାଇ ଆରଭାଇ ବୋଲି କହନ୍ତି ।

ଏହି ବର୍ମାଶିମ୍ବ ଅନ୍ୟାନ୍ୟ ଶିମ୍ବମାନଙ୍କ ଠାରୁ ଦେଖିବାକୁ ଭିନ୍ନ ପ୍ରକାର । ଅନେକଟା କରମଙ୍ଗା ପରି ଦେଖିବାକୁ । ଏହା ସାଧାରଣତଃ ଛଅଇଞ୍ଚରୁ ଅଠର ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ହୋଇଥାଏ । ଏହି ଆଶ୍ଚର୍ଯ୍ୟ ପରିବାଟିର ବିଶେଷ ଗୁଣାବଳୀ ଅନେକେ ହୁଏତ ଜାଣି ନାହାଁନ୍ତି । ବୋଧହୁଏ ଏହି କାରଣରୁ ଏହାର ବହୁଳ ଫସଲ ଓଡ଼ିଶାରେ ହୁଏ ନାହିଁ । ପ୍ରୀତି ବିଦ୍ପାଙ୍କର ଗବେଷଣା ଅନୁଯାୟୀ ଏହି ଶିମ୍ବ ଭାରତକୁ ୧୭୯୯ ମସିହାରେ ଅଣାଯାଇ କଲିକତାର ଶିବପୁର ବୋଟାନିକାଲ ଗାର୍ଡନରେ ଏହାର ପ୍ରଥମ ଚାଷ କରାଯାଇଥିଲା କିନ୍ତୁ ଏହି ବିସ୍ମୟକର ଶିମ୍ବର ଉତ୍ପାଦନ ବହୁ ବର୍ଷ ଧରି ଉପେକ୍ଷିତ ହୋଇ ଆସିଛି । ପଶ୍ଚିମବଙ୍ଗଳାର ଉତ୍ତର-ପୂର୍ବ ଅଞ୍ଚଳରେ ଆସାମ୍, ମଣିପୁର ଓ ମିଜୋରାମ ଅଞ୍ଚଳରେ ଏହାର ଚାଷ କେବଳ ସେଠାକାର ଆଦିବାସୀମାନେ କରନ୍ତି । ଏବେ ଦକ୍ଷିଣ ଭାରତରେ ଏହି ଶିମ୍ବର ପ୍ରକୃତ ଗୁଣାବଳୀ ଉପଲବ୍ଧି କରି ଏହାର ବହୁଳ ଚାଷ ଆରମ୍ଭ କରିଛନ୍ତି । ମହାରାଷ୍ଟ୍ର ସରକାର ମଧ୍ୟ ଏହାର ପ୍ରଶସ୍ତ ଚାଷ ଉଦ୍ଦେଶ୍ୟରେ ଏହି ଶିମ୍ବ ମଞ୍ଜି ତାଙ୍କର ଚାଷୀମାନଙ୍କୁ ଯୋଗାଇ ଉତ୍ସାହିତ କରୁଛନ୍ତି ।

ବର୍ମାଶିମ୍ବ ଗଛ ଅନ୍ୟାନ୍ୟ ଶିମ୍ବଲତା ଗଛମାନଙ୍କ ପରି ଲଟେ । ଏହାର ପତ୍ରର ଆକାର ପ୍ରକାର ମଧ୍ୟ ପ୍ରାୟ ଅନ୍ୟାନ୍ୟ ଶିମ୍ବପତ୍ର ପରି । ସାଧାରଣତଃ ଏହି ଶିମ୍ବ ଜୁନ୍‌ମାସର ଶେଷ ଭାଗରେ ଲଗା ଯାଇଥାଏ, ମାତ୍ର ଜଳସେଚିତ ଜମିରେ ଏହାର ଫସଲ ସାରାବର୍ଷ କରାଯାଇପାରେ । ପ୍ରତି ଏକର ଜମି ପାଇଁ କୋଡ଼ିଏରୁ ପଚିଶ କିଲୋଗ୍ରାମ ଶିମ୍ବ ମଞ୍ଜି ଯଥେଷ୍ଟ । ଏହି ମଞ୍ଜି ଦେଢ଼ ଫୁଟରୁ ଦୁଇଫୁଟ ଅନ୍ତରରେ ପୋତିବାର ବିଧି ।

ଏହାର ଅତ୍ୟାଶ୍ଚର୍ଯ୍ୟ ସ୍ୱୟଂ ଉତ୍ପାଦିତ ନାଇଟ୍ରୋଜେନ୍ ଓ ଫର୍ଟିଲାଇଜରର ସଂରକ୍ଷଣ କ୍ଷମତା ଯୋଗୁ ଏହି ଶିମ୍ବଗଛ ପ୍ରାୟ ସବୁ ପ୍ରକାର ମାଟିରେ ହୋଇଥାଏ । କେବଳ ଅତି କ୍ଷାରଯୁକ୍ତ ମାଟି କିମ୍ବା ଅତି ସନ୍ତସନ୍ତିଆ ମାଟିରେ ଏହା ଭଲ ଭାବରେ ବଢ଼ି ପାରେନା ।

ନିଜ ଗଛରୁ ନାଇଟ୍ରୋଜେନ୍ ଉତ୍ପାଦନକରି ମାଟିକୁ ସରସ କରିବାର ଅଦ୍ଭୁତ ଶକ୍ତି ଏହି ଶିମ୍ବ ଗଛର ଏକ ବିଚିତ୍ର ବିଶେଷତ୍ୱ । ସୁତରାଂ ଏହା ପାଇଁ କୌଣସି ଫର୍ଟିଲାଇଜର ଅର୍ଥାତ୍ ରାସାୟନିକ ସାରର ଆଦୌ ପ୍ରୟୋଜନ ହୁଏ ନାହିଁ । ବରଂ ଆମ୍ବ ନଡ଼ିଆ ପ୍ରଭୃତି ଗଛ ଚାରି ପାଖରେ ଏହାକୁ ଲଗାଇଲେ ସେମାନଙ୍କୁ ଯଥେଷ୍ଟ ସାର ଯୋଗାଇ ଗଛଗୁଡ଼ିକର ପୁଷ୍ଟିସାଧନ କରିଥାଏ । ଏପରିକି ଏହାଦ୍ୱାରା ଗଛଗୁଡ଼ିକରେ ପୂର୍ବାପେକ୍ଷା ଶତକଡ଼ା ପଚାଶ ଭାଗ ଅଧିକ ଫଳ ଫଳେ । ଅତ୍ୟଧିକ ରାସାୟନିକ ସାର ପ୍ରୟୋଗ ଦ୍ୱାରା ଯେଉଁ ଜମିଗୁଡ଼ିକର ଉତ୍ପାଦିକା ଶକ୍ତି ହ୍ରାସ ଲୋପ ପାଇଥାଏ, ଏହି ବର୍ମାଶିମ୍ବ ଚାଷ ଦ୍ୱାରା ପ୍ରାକୃତିକ ସାର ପୁଷ୍ଟିଯୁକ୍ତ କରି ମାଟି ଅଧିକ ଉର୍ବରତା ଲାଭ କରେ ।

ଏହି ବର୍ମାଶିମ୍ବ ଲତାଟିର ଆଉ ଏକ ବିଶେଷତ୍ୱ ହେଲା, ଏହାର ସବୁ ଅଂଶ ଯଥା—କଅଁଳିଆ ଗୋଟାଶିମ୍ବ, ମଞ୍ଜି, ଫୁଲ, ପତ୍ର ଓ ଚେର ଅତି ପୁଷ୍ଟିକର ଓ ଉପାଦେୟ ଖାଦ୍ୟ ।

କଅଁଳିଆ ବର୍ମାଶିମ୍ବ ଶରୀର ପକ୍ଷରେ ଖୁବ୍ ଉପକାରୀ । ଏହା ଶୀଘ୍ର ହଜମ ହୁଏ । ଏଥିରେ ଶତକଡ଼ା ୩ ଭାଗ

ପ୍ରୋଟିନ୍, ୩'୪ ଭାଗ ଚର୍ବି ଏବଂ ଯଥେଷ୍ଟ ପୁଷ୍ଟିସାର (Calorific) ଥାଏ । ଏହି ଶିମ୍ବ ଦକ୍ଷିଣ ଭାରତରେ ତରକାରୀ, ଭଜା ଓ ଆଚ୍ଚର କରି ଲୋକେ ଖୁବ୍ ଆନନ୍ଦରେ ଖାଆନ୍ତି । ଏହାକୁ ପୋଡ଼ି ମଧ୍ୟ ଖିଆଯାଏ ।

ବର୍ମାଶିମ୍ବ ମଞ୍ଜି ସୁପାଚ୍ୟ ଓ ଏହା କଞ୍ଚା ମଟର ପରି ସୁସ୍ବାଦୁ । ଏହି ମଞ୍ଜିରୁ ତେଲ ବାହାରକରି ରାନ୍ଧିବା ପାଇଁ ବ୍ୟବହାର କରାଯାଏ । ସୋୟାବିନ ତେଲରେ ଶତକଡ଼ା ୩୬'୧ ଭଗ ପ୍ରୋଟିନ୍ ଓ ୧୭'୭ ଭାଗ ଚର୍ବିଥିବା ସ୍ଥଳେ ବର୍ମାଶିମ୍ବ ମଞ୍ଜି ତେ ରେ ଶତକଡ଼ା ୪୧'୨ ଭାଗ ପ୍ରୋଟିନ୍ ଓ ୧୯'୯ ଭାଗ ଚର୍ବି ଥାଏ । ଏହାଛଡ଼ା ଏହି ତେଲ କ୍ୟାଲସିୟମ୍, ଫସଫରସ, ଭିଟାମିନ୍ 'ଏ', 'ବି'-୧, 'ବି-୧୨' ଏବଂ ପ୍ରଚୁର ଆଇରନ୍‌ରେ ପରିପୂର୍ଣ୍ଣ । ବର୍ମାଶିମ୍ବ ମଞ୍ଜିକୁ ପେଷି ଅଟା ମଧ୍ୟ ବାହାର କରାଯାଏ । ଏହି ଅଟାର ରୋଟି ବେଶ ସୁସ୍ୱାଦୁ ଓ ସ୍ୱାସ୍ଥ୍ୟ ପକ୍ଷରେ ହିତକର ।

ବର୍ମାଶିମ୍ବ ଫୁଲକୁ ଭାଜିଲେ କିମ୍ବା ତରକାରୀ କଲେ ପାଳ-ଛତୁ ପରି ଅପୂର୍ବ ସ୍ୱାଦ ମିଳେ । ଏହି ଫୁଲରେ ଶତକଡ଼ା ପାଞ୍ଚଭାଗ ପ୍ରୋଟିନ୍ ଥାଏ ।

ବର୍ମାଶିମ୍ବ କଅଁଳିଆ ପତ୍ରକୁ ଅନ୍ୟାନ୍ୟ ଶାଗ ପରି ଭାଜି କିମ୍ବା ତରକାରୀରେ ପକାଇ ରାନ୍ଧି ଖାଇଲେ ଖୁବ୍ ଭଲ ଲାଗେ । ଗାଈ ଓ ଛେଳିମାନଙ୍କ ପାଇଁ ମଧ୍ୟ ଏହି କଞ୍ଚାପତ୍ର ଖୁବ୍ ହିତକର । ଏଥିରେ ୫ରୁ ୧୦ ଭାଗ ପ୍ରୋଟିନ୍ ଥାଏ ।

ବର୍ମାଶିମ୍ବ ଚେର ଆଳୁପରି ଦେଖିବାକୁ ଏବଂ ଏହା ଆଳୁ ପରିହିଁ ସୁସ୍ୱାଦୁ । ଏହାକୁ ଆଳୁପରି ଭାଜି କିମ୍ବା ତରକାରୀ କରି ଖିଆ ଯାଏ । ତାପଜନକ ପୁଷ୍ଟିସାର ଛଡ଼ା ପ୍ରତି ଶହେ ଗ୍ରାମ ଚେରରେ ୧୫୦ କ୍ୟାଲୋରୀ ଥାଏ । ଏଥିରେ ଆଳୁ ଅପେକ୍ଷା ଅଧିକ ପ୍ରୋଟିନ୍ ମଧ୍ୟ ଥାଏ ।

ଏହି ଚେରର କିଛି ଅଂଶ ନଖୋଳି ମାଟିରେ ଛାଡ଼ିଦେଲେ ଏଥିରୁ ପୁଣି ବଳିଷ୍ଠ ଗଛ ବାହାରେ । ସୁତରାଂ ଆଗାମୀ ଫସଲ ପାଇଁ ଆଉ ମଞ୍ଜି ବୁଣିବାର ଦରକାର ହୁଏ ନାହିଁ ।

ମହାରାଷ୍ଟ୍ରର ଅମରାବତୀରେ ଏହାକୁ ନିୟମିତ ଚାଷ କରି ସେଠାକାର ଚାଷୀମାନେ ଏକର ପ୍ରତି ପ୍ରାୟ ପନ୍ଦର ହଜାର ଟଙ୍କା ପ୍ରତିବର୍ଷ ରୋଜଗାର କରନ୍ତି । ପ୍ରତ୍ୟେକ ବର୍ମାଶିମ୍ବ ଗଛରୁ ଦୁଇରୁ ଅଢ଼େଇ କିଲୋଗ୍ରାମ ଶିମ୍ବ, ୩୮୦ ଗ୍ରାମ ମଞ୍ଜି ଏବଂ ୧ କେ. ଜି. ୬୫ ଗ୍ରାମ୍ ଚେର ଆମଦାନୀ ହୁଏ ।

ଚାଷୀଭାଇମାନଙ୍କ ପାଇଁ ଏହା ପ୍ରକୃତିର ଏକ ମହାନ ଦାନ । ପ୍ରତ୍ୟେକ ବର୍ମାଶିମ୍ବ ଗଛ ଏକ ଉତ୍କୃଷ୍ଟ ନାଇଟ୍ରୋଜେନ୍ ପ୍ରସ୍ତୁତକାରୀ କାରଖାନା ସଦୃଶ । ନାଇଟ୍ରୋଜେନ୍ ଉତ୍ପାଦନ କରିବା ସଙ୍ଗେ ସଙ୍ଗେ ଏହାର ପୋକ-ନିବାରକ ଶକ୍ତି ମଧ୍ୟ ଅସାଧାରଣ । ଏହାପାଇଁ ଚାଷୀକୁ କୌଣସି କୀଟ-ନାଶକ ଔଷଧ କିଣି ଖର୍ଚ୍ଚାନ୍ତ ହେବାକୁ ପଡ଼େନା । ଏହା ମାଟିର ଉର୍ବରତା ବଢ଼ାଏ, ଏହାର ପ୍ରତ୍ୟେକ ଅଂଶରୁ ପୁଷ୍ଟିକର ଓ ରୁଚିକର ଖାଦ୍ୟ ଯୋଗାଏ ଏବଂ ଗରିବ ଚାଷୀର ଧନ ସମ୍ପଦ ବଢ଼ାଇବାରେ ମଧ୍ୟ ଯଥେଷ୍ଟ ସାହାଯ୍ୟ କରେ ।

ବାସନ୍ତୀ କୁଟୀର
ଡଗରପଡ଼ା (ଗୋପାଳସାହି), କଟକ-୨



ଉନ୍ନତ ଧାନ ଗୁଚ୍ଛ......

# ଗଞ୍ଜାମର ଉପଜାତି "ଉଡୁରାଣୀ"

ଶ୍ରୀ ସୀମାଞ୍ଚଳ ପ୍ରଧାନ

ଓଡିଶାର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ଉପଜାତି-ମାନଙ୍କ ମଧ୍ୟରେ ଗଂଜାମ ଜିଲ୍ଲାରେ ବସବାସ କରୁଥିବା ଉଡୁରାଣୀ (ଭରା) (୧) ନାମକ ଏକ ଉପଜାତି ଅନ୍ୟତମ । ଏହି ଜାତିକୁ କେହି କେହି କୁଡୁଲି, ଏନାଡ଼ରି ନାମରେ ମଧ୍ୟ ନାମିତ ହୋଇଥିବା ଲକ୍ଷ୍ୟ କରାଯାଏ । ସଭ୍ୟ ସମାଜର ସଂସ୍ପର୍ଶରେ ଆସୁଥିଲେ ସୁଦ୍ଧା ଅସଭ୍ୟର ବନ୍ଧନରୁ ଏମାନେ ମୁକ୍ତ ନୁହନ୍ତି । ଖାଦ୍ୟପେୟଠାରୁ ଆରମ୍ଭ କରି ଚାଲିଚଳନ, ଆସ୍ଥର ବ୍ୟବହାର, ପୋଷାକ ପରିଛଦ ସବୁଥିରେ ଏମାନଙ୍କର ଅଭାବ ପରିଦୃଷ୍ଟ ହୁଏ । ଆଲୋଚ୍ୟ ପ୍ରବନ୍ଧରେ ଉଡୁରାଣୀମାନଙ୍କର ଦୈନନ୍ଦିନ ଜୀବନ ଯାପନ ସଂପର୍କରେ କିଛିଟା ଆଲୋଚନା କରାଯାଇପାରେ ।

ଏ ଜାତିର ସ୍ତ୍ରୀ ଓ ପୁରୁଷ ଉଭୟେ କାର୍ଯ୍ୟରତ । ବର୍ଷସାରା କଠିନ ପରିଶ୍ରମ କରି ନିଜର ଭରଣପୋଷଣ ପାଇଁ ଖାଦ୍ୟ ସଂଗ୍ରହରେ ଲାଗିଥାନ୍ତି । ସେମାନେ ଅନ୍ୟ କୌଣସି ଲୋକର ଗୋଟିଏଟି, ମୂଲଲାଗି ଜୀବନ ଯାପନ କରନ୍ତି ନାହିଁ । ଗାଁ ରୁ ଗାଁ, ଜଙ୍ଗଲରୁ ଜଙ୍ଗଲକୁ ବୁଲନ୍ତି । ବନ୍ୟଜାତ ଫଳମୂଳ ମହୁ ମହୁଲ ସଂଗ୍ରହ କରି ସେ ସବୁର ବିକ୍ରି ପଇସାରେ ନିଜର ଗୁଜୁରାଣ ମେଣ୍ଟାନ୍ତି । କୌଣସି ଦିନ ଭୋକ ଉପାସରେ ସେମାନେ ରହିବା ଦେଖାଯାଏ ନାହିଁ । ଶିଶୁଠୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ନିଜ ନିଜର ପେଟ ପାଇଁ ଖାଦ୍ୟ ଅନ୍ୱେଷଣରେ ଲିପ୍ତ ରହନ୍ତି । ସକାଳୁ ଉଠି କିଛି ଆହାର ଖାଇଦେଇ ପରିବାରର ସମସ୍ତେ ବାହାରକୁ ଚାଲିଯାନ୍ତି । ସଂଧ୍ୟା ସମୟରେ ଘରକୁ ଫେରନ୍ତି । ଘର ବୋଇଲେ ଇଟା, ସିମେଣ୍ଟ ତିଆରି ଘର ନୁହେଁ ବା ନିଜର ସ୍ଥାୟୀ ଜମି ଉପରେ ସେମାନଙ୍କର ଘର ନିର୍ମିତ ନୁହେଁ । କେଉଁଠି ହେଲେ ମାଟିଝାଟିରେ କୁଡିଆ ଖଣ୍ଡେ ତିଆରି କରି ରହନ୍ତି । ସେହି ଘରେ ଯଦି ସେମାନଙ୍କର ସନ୍ତାନ ସନ୍ତତି ପ୍ରଥମ କରି ମୃତ୍ୟୁ ମୁଖରେ ପଡନ୍ତି ତେବେ ସେଠାରେ ରହିବା ଅନୁପଯୁକ୍ତ ଭାବି ସେହି ଘର ଛାଡିଦେଇ ଅନ୍ୟତ୍ର ଚାଲିଯାନ୍ତି । ଏ ଜାତିର ଲୋକଙ୍କୁ ଯାଯାବର ଶ୍ରେଣୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜିକାଲି ଓଡିଶା ସରକାର୍ ଏମାନଙ୍କ ମଧ୍ୟରୁ କେତେକ ପରିବାରର ରହିବା ସକାଶେ ଇଟା ସିମେଣ୍ଟରେ ତିଆରି ଟିଣ-ଚଦର ପକା ଘର ନିର୍ମାଣ କରି ଦେଇଛନ୍ତି । ଗଂଜାମ ଜିଲ୍ଲାର ଗଡ଼ଗୋବିନ୍ଦପୁର, ଜକର, ଦେଖାଳି, ଧାନ୍ୟରାଣୀ, ସିଦ୍ଧେଶ୍ୱର, ଗୌତମୀ ପ୍ରଭୃତି ଗାଁର ଶେଷ ମୁଣ୍ଡରେ ବର୍ତ୍ତମାନ ଏମାନେ ବାସ କରି ରହିଅଛନ୍ତି ।

ଏମାନଙ୍କ ଦେହର ରଙ୍ଗ କଳା, ଉନ୍ନତ ସ୍ୱାସ୍ଥ୍ୟ ଓ ପ୍ରତି-ଶୋଧ ପରାୟଣ ଅଟନ୍ତି । ସ୍ତ୍ରୀମାନଙ୍କ କଥାରେ ଏମାନେ ପରିଚାଳିତ ହୁଅନ୍ତି । ସଭ୍ୟ ସମାଜର ଆସ୍ଥର ବ୍ୟବହାରଠାରୁ ଏମାନେ ସଂପୂର୍ଣ୍ଣ ପୃଥକ୍ । ଚୋରୀବିଦ୍ୟା ଏମାନଙ୍କର ଜନ୍ମଗତ ପ୍ରବୃତ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ବେଳେବେଳେ ପୁରୁଷ-ମାନେ ଦେହ ଓ ମୁହଁରେ କାଦୁଅ, କଳା ବୋଳିହୋଇ ଲୋକଙ୍କୁ ନାଚ ଦେଖାନ୍ତି । ନାଚଶେଷରେ ଲୋକମାନଙ୍କଠାରୁ ଭାତ, ଜାଉ, କାଞ୍ଜି, ତିଅଣ ଇତ୍ୟାଦି ମାଗିକରି ଖାଆନ୍ତି । ଏପରି ଭାବରେ ସେମାନଙ୍କର ଦୈନନ୍ଦିନ ଜୀବନଯାପନ କଟିଥାଏ ।

ସାଧାରଣ ଖାଦ୍ୟପେୟର ରନ୍ଧନ ପ୍ରଣାଳୀ ଏମାନଙ୍କୁ ଜଣା ନ ଥାଏ । ବର୍ଷର ପ୍ରାୟ ସବୁ ସମୟରେ ଏମାନେ ଯେ କୌଣସି ପ୍ରାଣୀର ମାଂସ ଖାଆନ୍ତି । ସାପ, ବେଙ୍ଗ, ମୂଷା, କଙ୍କଡ଼ାଠାରୁ ଆରମ୍ଭ କରି ପଶୁ, ପକ୍ଷୀ ଏପରିକି ପାଣିରେ ରହୁଥିବା କୁଟିଆ ପ୍ରଭୃତିକୁ ଧରି ଆଣି ପୋଡି ଖାଆନ୍ତି ଓ ସମୟେ ସମୟେ ମଧ୍ୟ ସେହି ମାଂସକୁ ସିଦ୍ଧ କରି ଖାଆନ୍ତି । ଏତଦ୍‌ବ୍ୟତୀତ ଯେ କୌଣସି ଗ୍ରାମରେ ଭୋଜିଭାତ ହେଲେ ଏମାନେ ସେଠାରେ ଉପସ୍ଥିତ ରହନ୍ତି । ଭୋଜି ଶେଷରେ ଲୋକମାନେ ଖାଇସାରିବା-ପରେ ସେମାନଙ୍କର ଯାହା ଉଚ୍ଛିଷ୍ଟ ବଳି ପଡିଥାଏ ସେସବୁକୁ ଏମାନେ ସଂଗ୍ରହ କରି ଖାଆନ୍ତି । ଯଦିଓ ସେମାନଙ୍କର ଖାଇବା-ପରେ ମଧ୍ୟ ସେଥିରୁ କିଛି ବଳିଯାଏ, ତେବେ ସେସବୁକୁ ଖରାରେ ଶୁଖାଇ ଗୁଣ୍ଡକରି ହାଣ୍ଡିରେ ସାଇତି ରଖନ୍ତି । ଅନ୍ୟଦିନ ମାନଙ୍କରେ ସେହି ଗୁଣ୍ଡକୁ ତରକାରି ଇତ୍ୟାଦିରେ ପକାଇ ମସଲା-ରୂପେ ବ୍ୟବହାର କରିଥାନ୍ତି ।

ଆମ ସମାଜର ସ୍ତ୍ରୀମାନେ ଯେପରି ରନ୍ଧାବଢ଼ା କାର୍ଯ୍ୟ କରିଥାନ୍ତି, ସେମାନଙ୍କର ସ୍ତ୍ରୀମାନେ ରନ୍ଧନ କାର୍ଯ୍ୟ କରନ୍ତି ନାହିଁ । ସକାଳୁ ଉଠି ଖାଦ୍ୟରାନ୍ଧିବା ହେଉଛି ପୁରୁଷମାନଙ୍କର ନିତିଦିନିଆ କାର୍ଯ୍ୟ । ମାଇକିନିଆମାନେ ଜାଳ ସଂଗ୍ରହ, ଖଜୁରୀପତ୍ରରେ ମସିଣା (ପଟି) ତିଆରି କରିବା, ସନ୍ତାନ ସନ୍ତତିର ଯତ୍ନନେବା କାର୍ଯ୍ୟରେ ଲିପ୍ତ ରହନ୍ତି । ରନ୍ଧନ ପାତ୍ର ରୂପେ ସେମାନେ ମୁଖ୍ୟତଃ

୧ । କଳାହାଣ୍ଡିର ଆଦିବାସୀ—ଶ୍ରୀ ଗୋକୁଳଗୋବିନ୍ଦ ମିଶ୍ର, ଉତ୍କଳ ପ୍ରସଙ୍ଗ, ମାର୍ଚ୍ଚ-ଏପ୍ରେଲ ୧୯୮୪, ପୃଷ୍ଠା ୪୨ ।

ମାଟିହାଣ୍ଡି ଓ ଖାଦ୍ୟ ପଦାର୍ଥ ବାଢିବା ପାଇଁ ନଡ଼ିଆ ସଢ଼େଇରେ ତିଆରି ଡ଼ଙ୍କି ବ୍ୟବହାର କରିଥାନ୍ତି ।

ଆଧୁନିକୀକରଣ ପୋଷାକର ବ୍ୟବହାର ଏମାନଙ୍କଠାରେ ଦେଖାଯାଏ ନାହିଁ । ଦୁଆର ଦୁଆର ବୁଲି ଚିରା, ପୁରୁଣା ଲୁଗା ଏମାନେ ଯୋଗାଡ଼ କରି ସେ ସବୁକୁ ବ୍ୟବହାର କରନ୍ତି । ପର୍ବପର୍ବାଣିରେ ପେଡ଼ିସାଇତା ଲୁଗାପଟା ବ୍ୟବହାର କରିଥାନ୍ତି ।

ଏମାନଙ୍କର ମୁଖ୍ୟ ଉତ୍ସବ ପରିବାରର ପ୍ରତ୍ୟେକ ସନ୍ତାନ ସନ୍ତତିର ନାଁ ଦିଆ ସମୟରେ ପାଳିତ ହୋଇଥାଏ। । ଏହି ଉତ୍ସବରେ ବନ୍ଧୁ ବାନ୍ଧବ ସମସ୍ତଙ୍କୁ ନିମନ୍ତ୍ରିତ କରାଯାଇଥାଏ । ସେମାନଙ୍କ ଜାନି (ପୁରୋହିତ) ସନ୍ତାନଟିର ନାମକରଣ କରିଥାଏ । ସେହିଦିନ ଭୋଜିଭାତର ଆୟୋଜନ କରି ପରିବାରର ସମସ୍ତେ ନୂଆଲୁଗା ପିନ୍ଧିଥାନ୍ତି ।

ଏହି ଜାତିର ସବୁଠାରୁ କିମ୍ଭୂତକିମାକାର ଲୋକବିଶ୍ୱାସ ହେଉଛି ଯେ କୌଣସି ଲୋକର ସନ୍ତାନ ଜନ୍ମ ହେଲାଦିନଠାରୁ ସନ୍ତାନର ନାମକରଣ କରାଯିବା ପର୍ଯ୍ୟନ୍ତ ଏହି ସମୟସୀମା ମଧ୍ୟରେ ସ୍ତ୍ରୀ ଓ ପୁରୁଷର ଯୌନ ସଂପର୍କ ଆଦୌ ରହେ ନାହିଁ । ଏହି ନାମକରଣ ସମୟରେ ସେ ଜାତିଭାଇଙ୍କୁ ଭୋଜି ଦେବା ପାଇଁ ବାଧ୍ୟ ହୋଇଥାଏ । ତେଣୁ ନାମକରଣ ଉତ୍ସବ ପାଇଁ ସେମାନଙ୍କୁ ପଇସାପତ୍ର ସଂଚିତ କରିବାକୁ ପଡିଥାଏ । ଯେଉଁ ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥାଏ, ତା'ର ସନ୍ତାନର ନାମକରଣ ବିଳମ୍ବରେ କରାଯାଇଥାଏ । ଏପରିକି ସନ୍ତାନ ଜନ୍ମ ହେବାର ବର୍ଷେଠାରୁ ଦୁଇ କିମ୍ବା ତିନି ବର୍ଷ ଯାଏ ଗୋଟିଏ ଗୋଟିଏ ପରିବାରର ସନ୍ତାନ ସନ୍ତତିର ନାମକରଣ କରାଯାଇ ପାରେ ନାହିଁ । ତେଣୁ ଏହି ଦୀର୍ଘ ସମୟ ଧରି ସ୍ତ୍ରୀ ପୁରୁଷର ଯୌନ ସମ୍ବନ୍ଧୀୟ ମିଳନ ହୋଇ ନ ଥାଏ; ଫଳରେ ସେମାନଙ୍କ ସନ୍ତାନ ସଂଖ୍ୟା ଖୁବ୍ କମ୍ ଦେଖାଯାଏ ।

ଏମାନଙ୍କର ସ୍ଥାୟୀଗୃହ ନାହିଁ କହିଲେ ଚଳେ । ଯେଉଁଠାରେ ଖାଦ୍ୟ ଅନ୍ୱେଷଣର ସୁବିଧା ଓ ପରିବାରର ମଙ୍ଗଳ ହେବ ବୋଲି ସେମାନେ ମନେକରନ୍ତି, ସେହିଠାରେହିଁ କୁଡିଆ ଖଣ୍ଡିଏ ତିଆରି କରି ରହନ୍ତି । ଶୋଇବା ପାଇଁ ଖଜୁରୀପତ୍ରରେ ତିଆରି ମସିଣା ବ୍ୟବହାର କରନ୍ତି । ଏହି ମସିଣା ତିଆରି କରିବା ହେଉଛି ସ୍ତ୍ରୀମାନଙ୍କର କାର୍ଯ୍ୟ ।

ଶିକ୍ଷାଦୀକ୍ଷା କ'ଣ ଏମାନେ ଜାଣନ୍ତି ନାହିଁ । ସମଗ୍ର ଜିଲ୍ଲାର କେତେକ ଅଞ୍ଚଳରେ ବସବାସ କରୁଥିବା ଏହି ପରିବାରର ଯେ କୌଣସି ଜଣେ ହେଲେ ସନ୍ତାନ ସାକ୍ଷର ନୁହନ୍ତି । ସେମାନଙ୍କ ଭାଷାର ଲିପି ନାହିଁ । ତେଲୁଗୁ ଭାଷାର ସାମଞ୍ଜସ୍ୟ ସେମାନଙ୍କ ଭାଷାରେ ରହିଥିବା ଲକ୍ଷ୍ୟ କରାଯାଏ । ସେମାନଙ୍କ ଉଚ୍ଚାରିତ ବାକ୍ୟ ଗୁଡ଼ିକ ଏତେ ପ୍ରଖର ଯେ ସାଧାରଣ ଲୋକେ ସେ ସବୁର ଶବ୍ଦକୁ ସହଜରେ ମନେରଖି ପାରନ୍ତି ନାହିଁ ।

ଧାନ ଅମଳ ସମୟରେ ସେମାନେ ବିଲ ବାଡି ବୁଲି ମୂଷାଗାତ ଗୁଡ଼ିକରୁ ଧାନ ଇତ୍ୟାଦି ସଂଗ୍ରହ କରିବା ସଙ୍ଗେ ସଙ୍ଗେ ମୂଷା-ମାନଙ୍କୁ ଧରି ଆଣି ଖାଆନ୍ତି । ସେମାନେ ବାହାରକୁ ଗଲବେଳେ ସଙ୍ଗରେ ଶିକାରୀ କୁକୁରଟିଏ ଧରିଥାନ୍ତି । ବଣ, ପାହାଡ଼, ଜାଗାରୁ ନେଉଳ, ଗୋଇ, ସାଳିଆପତନୀ ଆଦି ଜାତ... ଧରି ଆଣି ଗାଁ ଗାଁ ବୁଲି ବିକ୍ରି କରନ୍ତି ।

ବିବାହ ଆଦିରେ ସେମାନଙ୍କର କୌଣସି ଆଡମ୍ବର ନ ଥା... ଯିଏ ଯାହାକୁ ପସନ୍ଦ କଲା, ସେ ତାହାକୁ ସ୍ତ୍ରୀ ରୂପେ ଗ୍ରହଣକର... ବେଦୀରେ ବସି ବିଧିପୂର୍ବକ ସେମାନେ ବିବାହ କରିବା ଦେ... ଯାଏ ନାହିଁ । ମାମୁଁଝିଅ, ପିଉସୀ ଝିଅକୁ ବିବାହ କରିବା ... ସେମାନଙ୍କଠାରେ ଦେଖାଯାଏ । ଆଦିବାସୀମାନଙ୍କ ... ଏମାନଙ୍କ ବିବାହ ପଦ୍ଧତି ଅଟେ । ପୁରୁଷ ସ୍ତ୍ରୀକୁ ବିବା... କେତେଦିନ ପରେ ଛାଡ଼ି ଦେଇ ପାରେ କିମ୍ବା ସ୍ତ୍ରୀ ତା ମନମୁତାବ... ଅନ୍ୟ ପୁରୁଷ ନିକଟକୁ ଗ୍ଲଲିଯାଇ ପାରେ । ଏଥିପାଇଁ ସେମାନ... ଜାତିରେ କିଛି ଧରାବନ୍ଧା ନିୟମ ନାହିଁ । ଯଦିଓ ସେମାନଙ୍କ... ସନ୍ତାନସନ୍ତତି ଜନ୍ମ ହେଲା ପରେ ମଧ୍ୟ ସ୍ତ୍ରୀ ଅନ୍ୟ ଏକ ପୁରୁ... ପସନ୍ଦ କରେ ତେବେ ପିଲାଛୁଆଙ୍କୁ ସଙ୍ଗରେ ନେଇ ସେହି ପୁରୁଷ... ଘରକୁ ଯାଇପାରେ । ଏହାପାଇଁ ତା ପୂର୍ବସ୍ୱାମୀ ଅପ... ଅଭିଯୋଗ କରେ ନାହିଁ ।

ସେମାନଙ୍କ ପରିବାରରେ ଯଦି ଝିଅଟିଏ ହୁଏ ତେବେ ସେମାନଙ୍କର ଆନନ୍ଦ କହିଲେ ନ ସରେ । ପୁଅଟିଏ ଯଦି ଜ... ହୁଏ ତେବେ ସେମାନଙ୍କ ମନରେ ସରସତା ଦେଖାଦେ... ନ ଥାଏ । ଝିଅଟିଏ ଜନ୍ମ ହେବାଦ୍ୱାରା ସେମାନେ ମନେ କରନ୍ତି ଘରକୁ ଜ୍ୱାଇଁଟିଏ ଆସି ରହିବ । ସାଧାରଣତଃ ଝିଅମାନେ ବିବାହ ପରେ ଶାଶୁ ଘରକୁ ଯାଆନ୍ତି ନାହିଁ ।

ଏମାନଙ୍କ ପରିବାରର ଯେ କୌଣସି ଲୋକ ଯେ କୌଣସି ରୋଗରେ ଆକ୍ରାନ୍ତ ହେଲେ ବାହାରର ଔଷଧ କିଣି ବ୍ୟବହାର କରନ୍ତି ନାହିଁ । ନିଜେ ଜାଣିଥିବା ଚେରମୂଳିକା ବ୍ୟବହାର କରନ୍ତି । ଯଦିଓ ସେ ଚେରମୂଳରେ ରୋଗ ଉପଶମ ନ ହୁଏ, ତେବେ ସେମାନେ ରାତିସାରା ଉଜାଗର ରହି ସେମାନଙ୍କ ଭାଷାରେ ଗୀତଗାଇ ତାଙ୍କ ଦେବତାଙ୍କୁ ପ୍ରାର୍ଥନା କରନ୍ତି । ଅଦ୍ୟାପି ସେମାନଙ୍କର ବିଶ୍ୱାସ ଯେ, ଦେବତା ହେଉଛନ୍ତି ତାଙ୍କ ପରିବାରର ତ୍ରାଣକର୍ତ୍ତା । ତାଙ୍କୁ ପ୍ରାର୍ଥନା କଲେ ସେ ନିଶ୍ଚୟ ରୋଗ ଉପଶମ କରିବେ । ଏହି ଦେବତାଙ୍କ ପ୍ରାର୍ଥନା ସମୟରେ ବାଦ୍ୟ ଓ ବାଉଁଶ ନିର୍ମିତ କାଠିରେ ଠକ୍ ଠକ୍ ଶବ୍ଦ କରିଥାନ୍ତି । ପ୍ରତି ପରିବାର ମଧ୍ୟରୁ ଜଣେ ପୂଜକ ଭାବେ ରହି ପୂଜାକାର୍ଯ୍ୟ କରୁଥାନ୍ତି । ସେ ପରିବାରର ଅନ୍ୟମାନଙ୍କ ପରି ଉଚ୍ଛିଷ୍ଟ ଖାଏ ନାହିଁ ।

ପ୍ରତିଦିନ ସକାଳୁ ସେମାନେ ଘର ନିକଟରେ ଥିବା ଯେ କୌଣସି ଗଛକୁ ଦେବତା ମନେକରି ଲୁଚ୍ଚା, ଲିଆ ଇତ୍ୟାଦିରେ ପୂଜା କରନ୍ତି । ପ୍ରସାଦ ସେବନ ପରେ ଖାଦ୍ୟପଦାର୍ଥ ଖୋଜି ଯେ ଯାହା କାର୍ଯ୍ୟରେ ଲାଗି ପଡ଼ନ୍ତି ।

ପରିଶେଷରେ ଏତିକି କୁହାଯାଇ ପାରେ ଯେ ଏ ଜାତିର ସମସ୍ତେ ଉପାର୍ଜନକ୍ଷମ । ପରିବାରର ସମସ୍ତେ ପିଲାଙ୍କୁ ସଂଙ୍ଗ ଯାଏ କୌଣସି ନା କୌଣସି କାର୍ଯ୍ୟରେ ଲିପ୍ତ ରହିଥାନ୍ତି । ଘୁଷୁରୀ ପାଳନ କରିବା ଏମାନଙ୍କର ବୃତ୍ତି ହେଲେ ସୁଦ୍ଧା ସମସ୍ତ ପରିବାର ଘୁଷୁରୀ ରଖିବାର ଦେଖାଯାଏ ନାହିଁ । ଏହି ଜାତି ଅଦ୍ୟାପି ଅସଭ୍ୟର ବନ୍ଧନରୁ ମୁକ୍ତ ନ ହେଲେ ସୁଦ୍ଧା ପରିବାରର କେହି ହେଲେ ଅନ୍ୟଉପରେ ନିର୍ଭର କରନ୍ତି ନାହିଁ ।

ଗବେଷଣା ସହକାରୀ ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ୭୬୦୦୦୭ (ଗଂଜାମ)

# ଆଇନ ବିଭାଗର କାର୍ଯ୍ୟାବଳୀ

ନ୍ୟାୟ ଦାନକୁ ନିକଟତର ଓ ସହଜଲଭ୍ୟ କରାଇବା ପାଇଁ ସରକାରଙ୍କ ସଂକଳ୍ପର ପ୍ରଥମ ସୋପାନ କାର୍ଯ୍ୟକାରୀ କରିବାକୁ ଯାଇ ଆମ ସରକାର ବିଗତ ବର୍ଷ ମଧ୍ୟରେ ଆଦିବାସୀ ବହୁଳ ଅଞ୍ଚଳ ମାନଙ୍କରେ କେତେକ ବିଚାର ବିଭାଗୀୟ କୋର୍ଟ ଖୋଲିଅଛନ୍ତି । ସେହି କ୍ରମରେ ଫୁଲବାଣୀ ଜିଲ୍ଲାକୁ ଏକ ସ୍ୱତନ୍ତ୍ର ବିଚାର ବିଭାଗୀୟ ଜିଲ୍ଲା ରୂପେ ପରିଣତ କରାଯାଇ ସେଠାରେ ଜିଲ୍ଲା ଜଜ୍‌ଙ୍କ କୋର୍ଟ ଖୋଲାଯାଇଛି । ସେହିପରି ସମ୍ବଲପୁର ଜିଲ୍ଲାର ପଦ୍ମପୁର ଠାରେ ଏକ ସବ୍-ଜଜ୍ କୋର୍ଟ ସ୍ଥାପନ କରାଯାଇଛି । କୋରାପୁଟ ଜିଲ୍ଲାର ଆଦିବାସୀ ବହୁଳ ମାଲ୍‌କାନଗିରି ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ମୁନ୍‌ସିଫ୍ କୋର୍ଟ କରାଯାଇଛି ।

ବିଚାର ବିଭାଗୀୟ କୋର୍ଟ ମାନଙ୍କର ସୁପରିଚାଳନା ଏବଂ କାର୍ଯ୍ୟଦକ୍ଷତା ବୃଦ୍ଧି କରିବା ପାଇଁ ରାଜ୍ୟ ସରକାର କୋର୍ଟ ଗୃହ ଗୁଡ଼ିକ ସଂପ୍ରସାରଣ, ନୂତନ କୋର୍ଟ ଗୃହ ନିର୍ମାଣ ପ୍ରଭୃତି କାର୍ଯ୍ୟ ହାତକୁ ନେଇଛନ୍ତି । ଆଲୋଚ୍ୟ ବର୍ଷରେ କଟକ ଜିଲ୍ଲା ବାଙ୍କି ଠାରେ କୋର୍ଟ ଗୃହ ନିର୍ମାଣ କାର୍ଯ୍ୟ ସରିଛି ଏବଂ କଟକଠାରେ ଏକ ବହୁତଳ ପ୍ରାସାଦ ନିର୍ମାଣର ଶୁଭାରମ୍ଭ ହୋଇ କାର୍ଯ୍ୟ ଆଗେଇ ଚାଲିଛି । ସୁନ୍ଦରଗଡ଼ ଠାରେ କୋର୍ଟ ଗୃହ ନିର୍ମାଣ କାର୍ଯ୍ୟ ପ୍ରାୟ ସରିବା ଉପରେ ଏବଂ ଭୁବନେଶ୍ୱର ଦେବୋତ୍ତର କମିଶନରଙ୍କ କାର୍ଯ୍ୟାଳୟର ତିଆରି ନିର୍ମାଣ ପାଇଁ ଅର୍ଥ ବନ୍ଦୋବସ୍ତ କରାଯାଉଛି । ଏ ବାବଦରେ ରାଜ୍ୟ ଯୋଜନା ବାବଦ ଖର୍ଚ୍ଚ ପାଇଁ ୩୦ ଲକ୍ଷ ଟଙ୍କା ମଞ୍ଜୁର କରିବାରେ ପ୍ରସ୍ତାବ ମଧ୍ୟ ରହିଛି ।

ସରକାରଙ୍କ ଓଡ଼ିଆ ଭାଷା: ସରକାରୀ ଭାଷା ରୂପେ ବ୍ୟବହାର କରିବା ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବା ପାଇଁ ଏହି ବିଭାଗର ଅନୁବାଦ ଉପବିଭାଗ ବିଶେଷ ତତ୍‌ପରତା ପ୍ରକାଶ କରିଅଛି । ସରକାରୀ କାର୍ଯ୍ୟାଳୟମାନଙ୍କର ବ୍ୟବହାର ଉପଯୋଗୀ ଏକ ଶବ୍ଦ କୋଷ 'ପ୍ରଶାସନ ଶବ୍ଦ କୋଷ' ପ୍ରଣୀତ ଏବଂ ପ୍ରକାଶିତ ହୋଇ ସରକାରୀ ଦପ୍ତର ମାନଙ୍କରେ ବଣ୍ଟନ କରାଯାଇଛି । ବିଭିନ୍ନ ବିଭାଗର କେତେକ ଅନୁବାଦକଙ୍କୁ ତାଲିମ ଦେବା ଉଦ୍ଦେଶ୍ୟରେ ଏକ ବିଶେଷ ସଂସ୍ଥା ମାଧ୍ୟମରେ ୨୨ ଜଣ ବିଭିନ୍ନ ବିଭାଗୀୟ କର୍ମଚାରୀ ମାନଙ୍କୁ ତାଲିମ ଦିଆଯାଇଛି ଏବଂ ଏ ସଂପର୍କରେ ବିଭିନ୍ନ ବିଭାଗରେ ବ୍ୟବହୃତ ସରକାରୀ କାଗଜ ପତ୍ର ଓ ଫର୍ମ ଗୁଡ଼ିକୁ ଓଡ଼ିଆରେ ଅନୁବାଦ କରାଯାଇଛି । ବର୍ତ୍ତମାନ ସୁଦ୍ଧା ୧,୧୫୪ଟି ଫର୍ମ ଓଡ଼ିଆ ଅନୁବାଦ ସରିଛି ଏବଂ ଅବଶିଷ୍ଟ ଫର୍ମ ଗୁଡ଼ିକ ଅନୁବାଦ କାର୍ଯ୍ୟ ଚାଲୁ ରହିଛି । ଆଇନ ଗୁଡ଼ିକର ଅନୁବାଦର ସୁବିଧା ପାଇଁ ଆଇନଗତ ଶବ୍ଦଗୁଡ଼ିକର ଏକ ଅଭିଧାନ ପ୍ରସ୍ତୁତି କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି ।

ବିଧି ବିଭାଗର ଅଧୀନରେ ପରିଚାଳିତ ଦେବୋତ୍ତର ଓ ଓ୍ୱାକଫ୍ ସଂସ୍ଥାମାନ ସୁପରିଚାଳନା ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଛି । ଏ ସଂପର୍କରେ ଏକ ଉଲ୍ଲେଖନୀୟ ଘଟଣା ହେଉଛି ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ହୁଣ୍ଡୀ ସ୍ଥାପନ । ବିଗତ ବର୍ଷରେ ହୁଣ୍ଡୀ ମାଧ୍ୟମରେ ଟ ୪୧,୯୨,୭୧୧'୬୫ ପଇସା ଏବଂ କେତେକ ସୁନା ଓ ରୂପା ଅଳଙ୍କାର ସଂଗୃହୀତ ହୋଇଛି । ଏହି ଅର୍ଥକୁ ବ୍ୟାଙ୍କରେ ଜମା ରଖି ତହିଁର ସୁଧ ବାବଦକୁ ଶତକଡ଼ା ୪୫ ଭାଗ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟକୁ ଅନୁଦାନ ଦେବାର ସିଦ୍ଧାନ୍ତ ଗ୍ରହଣ କରାଯାଇଛି । ଅବଶିଷ୍ଟ ସୁଧର ଶତକଡ଼ା ୫୦ ଭାଗ ଶ୍ରୀ ଜଗନ୍ନାଥ ମନ୍ଦିର ପାଣ୍ଠିକୁ ଦିଆଯିବା ସଙ୍ଗେ ସଙ୍ଗେ ବାକି ୫ ଭାଗ ସେବକମାନଙ୍କର ମଙ୍ଗଳ ପାଇଁ ନିୟୋଜିତ ହେବ ।

ପୁରୀର ତୀର୍ଥଯାତ୍ରୀମାନଙ୍କର ରହିବା ସୁବିଧା ପାଇଁ ଗୋଟିଏ ଧର୍ମଶାଳା ତିଆରି କରିବା ଏବଂ ଶ୍ରୀ ଜଗନ୍ନାଥ ସଂସ୍କୃତି ଗବେଷଣା ପାଇଁ ଏକ ପାଣ୍ଠି ଗଠନ ର ପ୍ରସ୍ତାବ ମଧ୍ୟ ଗ୍ରହଣ କରାଯାଇଛି । ଶ୍ରୀ ଜଗନ୍ନାଥ ମନ୍ଦିରରେ ସୁପରିଚାଳନା ପାଇଁ ଏକ ସ୍ଥାନୀୟ କମିଟି ଗଠିତ ହୋଇଅଛି ଏବଂ ଉକ୍ତ କମିଟିର ସୁପାରିଶ କ୍ରମେ ୫ କୋଟି ଟଙ୍କା ବ୍ୟୟରେ ଜଗନ୍ନାଥ ମନ୍ଦିର ବେଢ଼ାର ଶ୍ରୀବୃଦ୍ଧି ଓ ଠାକୁରଙ୍କ ନୀତିର ସୁପରିଚାଳନା ପାଇଁ ପ୍ରସ୍ତାବ ରହିଅଛି । ଶ୍ରୀ ଜଗନ୍ନାଥଙ୍କ ରଥ ଯାତ୍ରା ପାଇଁ ଏବଂ ମନ୍ଦିର ପରିଚାଳନା ପାଇଁ ଯଥାକ୍ରମେ ୩ ଲକ୍ଷ ୫୦ ହଜାର ଟଙ୍କା ଓ ୮ ଲକ୍ଷ ୩୦ ହଜାର ଟଙ୍କା ସରକାରୀ ଅନୁଦାନ ଆକାରରେ ଦିଆଯାଇଅଛି ।

ଆଲୋଚ୍ୟ ବର୍ଷରେ ବିଭିନ୍ନ ହିନ୍ଦୁ ମଠ, ମନ୍ଦିର ଓ ଧର୍ମାନୁଷ୍ଠାନମାନଙ୍କ ପାଇଁ ସରକାରୀ ଅନୁଦାନ ଆକାରରେ ୧୫ ଲକ୍ଷ ୩୨ ହଜାର ଟଙ୍କା ଉକ୍ତ ଅନୁଷ୍ଠାନ ଗୁଡ଼ିକର ମରାମତି ଓ ରକ୍ଷଣାବେକ୍ଷଣ ପାଇଁ ୭ ଲକ୍ଷ ୮୩ ହଜାର ଟଙ୍କା ମଧ୍ୟ ମଞ୍ଜୁର କରାଯାଇଛି ।

ମୁସଲମାନ ଅନୁଷ୍ଠାନଗୁଡ଼ିକ ପାଇଁ ୩ ଲକ୍ଷ ଟଙ୍କା ଅତିରିକ୍ତ ଅନୁଦାନ ଦିଆଯିବା ଦ୍ୱାରା ୨୭ ଗୋଟି ଅନୁଷ୍ଠାନ ତଦ୍ୱାରା ଉପକୃତ

ହେଉଛନ୍ତି ଏବଂ ଚଳିତ ବର୍ଷ ସେହିପରି ଭାବରେ ଅନୁଦାନ ଦେବାର ବ୍ୟବସ୍ଥା ମଧ୍ୟ ରହିଅଛି ।

ବିଧି ବିଭାଗର ଅଧୀନରେ ସାମାଜିକ ନ୍ୟାୟ ସମସ୍ତଙ୍କୁ ମିଳି ପାରିବା ଉଦ୍ଦେଶ୍ୟ ନେଇ ଗଠିତ ହୋଇଥିବା ରାଜ୍ୟର ଗରିବଙ୍କୁ ଆଇନଗତ ସାହାଯ୍ୟ ସଂସ୍ଥା ବିଶେଷ ଉଲ୍ଲେଖନୀୟ କାର୍ଯ୍ୟ ଆଲୋଚ୍ୟ ବର୍ଷରେ କରିପାରିଅଛି । ଏହି ସଂସ୍ଥାର ଅଧ୍ୟକ୍ଷ ଭାବରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଏବଂ ଉପାଧ୍ୟକ୍ଷ ଭାବରେ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି, ସେମାନଙ୍କର ବହୁମୂଲ୍ୟ ସାହାଯ୍ୟ ସହାନୁଭୂତି ଦ୍ୱାରା ସଂସ୍ଥାଗୁଡ଼ିକୁ ଖୁବ୍ ଲୋକପ୍ରିୟ କରାଇ ପାରିଛନ୍ତି । ସମାଜରେ ଦୁର୍ବଳ ଓ ଗରିବ ଶ୍ରେଣୀର ଲୋକମାନଙ୍କୁ ସେମାନଙ୍କର ବିଭିନ୍ନ ଦାବୀ ସଂପର୍କରେ ସଚେତନ କରାଇବା ପାଇଁ ଉକ୍ତ ସଂସ୍ଥା ବିଶେଷ ତତ୍ପରତା ପ୍ରକାଶ କରିଅଛି । ଏଥିପାଇଁ ବିଭିନ୍ନ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସଭାସମିତି କରିଆରେ ଲୋକମାନଙ୍କୁ ସାମାଜିକ ଦାୟିତ୍ୱ ବିଷୟରେ ସଚେତନ କରାଇବା ପଦକ୍ଷେପ ନିଆଯାଇଛି । ରାଜ୍ୟରେ ଗରିବ ଓ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ସଂପର୍କରେ ଏକ ସମୀକ୍ଷା ପାଇଁ ଉପରୋକ୍ତ ସଂସ୍ଥା ସିଦ୍ଧାନ୍ତ କରିଛନ୍ତି, ଯାହା କି ଓଡ଼ିଶାର ୩ଟି ବିଶ୍ୱବିଦ୍ୟାଳୟର ୩୦ ଜଣ ଆଇନ ଛାତ୍ରଙ୍କ ଜରିଆ[illegible] ହେବ ।

ଉପରୋକ୍ତ ସଂସ୍ଥା ରାଜ୍ୟରେ ଲୋକ ଅଦାଲତ[illegible] କରି ମଫସଲ ଅଞ୍ଚଳମାନଙ୍କରେ ଲୋକଙ୍କ ମଧ୍ୟରେ[illegible] ଛୋଟ ଛୋଟ ମାଲି ମକଦ୍ଦମାର ଆପୋଷ ସମାଧାନ [illegible] ପଦକ୍ଷେପ ନେଉଛନ୍ତି । ରାଜ୍ୟ ସରକାର ଏହି ଅନୁଷ୍ଠାନ[illegible] ବର୍ଷ ବିଧି ବିଭାଗ ଜରିଆରେ ୬ ଲକ୍ଷ ଟଙ୍କା ମଞ୍ଜୁର କରି[illegible] କେନ୍ଦ୍ର ସରକାର ମଧ୍ୟ ଏକ ଲକ୍ଷ ଟଙ୍କା ଦେଇ ଅଛନ୍ତି ।

ଉପରୋକ୍ତ ସଂସ୍ଥା ଜରିଆରେ ଗରିବ ଲୋକମାନଙ୍କୁ [illegible] ସାହାଯ୍ୟ ପାଇଁ ୧୯ ହଜାର ୪୯୮ ଗୋଟି ଦରଖାସ୍ତ [illegible] ଏବଂ ତନ୍ମଧ୍ୟରୁ ୧୪ ହଜାର ୧୮୮ ଗୋଟି ଦରଖାସ୍ତ[illegible] ହୋଇଛି । ଏଥି ମଧ୍ୟରେ ୪,୫୬୮ ଗୋଟି [illegible] ହରିଜନ ଏବଂ ୨,୩୩୩ ଗୋଟି ଦରଖାସ୍ତ ଅ[illegible] ମାନଙ୍କଠାରୁ ମିଳିଥିଲା । ନିଃସହାୟା ନାରୀମାନଙ୍କର ସଂ[illegible] ଦରଖାସ୍ତକାରୀ ମାନଙ୍କ ମଧ୍ୟରେ ୨,୨୦୭ ଅଟେ ।



ଏନ୍.ଏସ୍.ଏସ୍. ଅଫିସର ଓ ଛାତ୍ରମାନଙ୍କ ଗହଣରେ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ସ୍ତୁତ୍ ।

# ବନ୍ୟପ୍ରାଣୀ ସଂରକ୍ଷଣ

ଚୌଧୁରୀ ଗୌରହରି ମିଶ୍ର

ଅରଣ୍ୟର ଅଭୟ କୋଳରେ ପ୍ରତିପାଳିତ ମୂକ ପ୍ରାଣୀଜଗତ ସହିତ ଯେ ପରିଚିତ ସେ ଜାଣେ କେତେ ମନମୁଗ୍ଧକର ସେହି ପରିବେଶ, କେତେ ନିର୍ଭରଶୀଳ ସେମାନଙ୍କର ପାରସ୍ପରିକ ନିବିଡ଼ ସଂପର୍କ ଓ କେତେ କମନୀୟ ସେମାନଙ୍କର ଆକର୍ଷଣ । ହାରାହାରି ୫୦୦ ନିୟୁତ ବର୍ଷ ପୂର୍ବେ ଭୂପୃଷ୍ଠରେ ଜୀବନର ପ୍ରଥମ ଉନ୍ମେଷ ହେଲା ଦିନରୁ କ୍ରମାନ୍ୱୟ ଭାବେ ପରିବର୍ତ୍ତିତ ପରିସ୍ଥିତି ସହିତ ଖାପ ଖୁଆଇ ଚଳିପାରିବା ଭଳି ଅଧିକରୁ ଅଧିକତର ଉପଯୋଗୀ ଜୀବନର କ୍ରମବିକାଶ ହୋଇ ଆସୁଅଛି । ଏହି ଧାରାରେ କେତେ ବଂଶ ଲୋପ ପାଇଗଲେଣି ଓ କେତେ ନୂତନ ସୃଷ୍ଟି ଦୃଷ୍ଟିପଥାରୂଢ଼ ହେଲାଣି । ମନୁଷ୍ୟ ହିଁ ଏହି ପ୍ରଣାଳୀର ସର୍ବଶ୍ରେଷ୍ଠ ଶ୍ରେଷ୍ଠତମ ସୃଷ୍ଟି ଓ ଜୀବନ ସଂଗ୍ରାମରେ ଆବଶ୍ୟକ ଥାଉ ବା ନ ଥାଉ ଅନ୍ୟ ସମସ୍ତଙ୍କୁ ପଛରେ ପକାଇ ଦେବାର ଅପୂର୍ବ ସାମର୍ଥ୍ୟ ତାର ରହିଛି । ଦୁଃଖର ବିଷୟ ଏହି ଯେ, ସେ ଏହି ଅସାଧାରଣ ଶକ୍ତିକୁ ପ୍ରାକୃତିକ ବିବର୍ତ୍ତନର ଧାରା ପ୍ରତିହତ କରିବାରେ ପ୍ରୟୋଗ କରିବାରେ କୁଣ୍ଠାବୋଧ କରୁନାହିଁ । ଏହାହିଁ ପ୍ରାଣୀ ଜଗତ ପ୍ରତି ବର୍ତ୍ତମାନ ପ୍ରଥମ ଓ ପ୍ରଧାନ ବିପଦର କାରଣ ରୂପେ ଦେଖା ଦେଇଛି ।

ପୂର୍ବରୁ ବଣ୍ୟ ପ୍ରାଣୀମାନେ ସେମାନଙ୍କ ଭିତରେ ସ୍ୱାଭାବିକ ପ୍ରତିଯୋଗିତା, ଖାଦ୍ୟ-ଖାଦକ ସଂପର୍କ, ବିବର୍ତ୍ତନର ନୂତନ ଅଭ୍ୟୁଦୟ ପ୍ରଭୃତି ବିପଦର ସମ୍ମୁଖୀନ ହେଉଥିଲେ ମାତ୍ର ବିଗତ ଶତାବ୍ଦୀଠାରୁ ସେମାନେ ଯେଉଁ ରକମର ବିପଦର ସମ୍ମୁଖୀନ ହେଉଛନ୍ତି ତାହା ସବୁଠାରୁ ବେଶୀ ବିପଦଜନକ । ଏହି ଦୃଷ୍ଟିରୁ ବର୍ତ୍ତମାନର ସଭ୍ୟ-ସମାଜ ଆଗରେ ପ୍ରଶ୍ନ ହେଉଛି ଯେ ଆମର ଏହି ପଶୁପକ୍ଷୀମାନଙ୍କୁ ଏହିପରି ଭାବରେ ଧ୍ୱଂସ ହେବାକୁ ଛାଡ଼ି ଦେବା ନା ସେମାନଙ୍କୁ ଆମର ପାରଂପରିକ ଐତିହ୍ୟର ସଭା ସ୍ୱରୂପ ଅନତିବିଳମ୍ବେ ସେମାନଙ୍କର ସୁରକ୍ଷା ଦିଗରେ କିଛି ପଦକ୍ଷେପ ନେବା ?

ବନ୍ୟଜନ୍ତୁ ସଂରକ୍ଷଣ ପ୍ରଶ୍ନଟିକୁ ଏହି ଭାବରେ ବିସ୍ତାର କରାଯାଇ-ପାରେ । ବନ୍ୟପ୍ରାଣୀମାନେ କାହିଁକି ଲୋପ ପାଇଯାଉଛନ୍ତି ? ଆମ୍ଭେମାନେ ସେମାନଙ୍କୁ ଏହି ଧ୍ୱଂସ ମୁଖରୁ କାହିଁକି ରକ୍ଷା କରିବା ଏବଂ ଯଦି ରକ୍ଷା କରିବା, ତେବେ ଏ ପ୍ରଚେଷ୍ଟାରେ କିପରି କୃତକାର୍ଯ୍ୟ ହେବା ?

ପ୍ରଥମ ପ୍ରଶ୍ନଟିର ଉତ୍ତର ଏତେ ସହଜସାଧ୍ୟ ନୁହେଁ । ମଣିଷ ସମାଜ ଅଜାଣତରେ ପଶୁପକ୍ଷୀମାନଙ୍କ ଉପରେ ବହୁଭାବରେ ନିର୍ଭରଶୀଳ । ବିଭିନ୍ନ ରକମର ମାଛ, ମାଂସ, ଅଣ୍ଡା, ଚମଡ଼ା ପ୍ରଭୃତି ଆମର ନିତ୍ୟ ବ୍ୟବହାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଆମର ଆବଶ୍ୟକତା ପୂରଣ ବେଳେ ସେମାନଙ୍କର ବଂଶବୃଦ୍ଧିର ଆବଶ୍ୟକତା କଥା ଆମେ ବିଶ୍ୱରକୁ ନେଇ ନ ଥିବାରୁ ଏଥିଯୋଗୁ ବହୁପ୍ରାଣୀଙ୍କର ଲୋପସାଧନ ହୋଇଥାଏ । ୧୮୦୦ ଖ୍ରୀଷ୍ଟାବ୍ଦ ବେଳେ ଦେଖା-ଯାଉଥିବା ପ୍ରାୟ ୫୦ଟି କିସମର ସ୍ତନ୍ୟପାୟୀ ପ୍ରାଣୀ ଓ ବହୁ ପ୍ରକାରର ପକ୍ଷୀ ଏହି କାରଣରୁ ଲୋପ ପାଇଗଲେଣି । ବର୍ତ୍ତମାନର ଦୃଷ୍ଟାନ୍ତ ଦେଲେ, ଆପଣ ନାଗାଲାଣ୍ଡରେ କୌଣସି ପକ୍ଷୀ ଏପରିକି କୁଆଟିଏ ମଧ୍ୟ ଦେଖିବାକୁ ପାଇବେ ନାହିଁ । ବର୍ତ୍ତମାନ ସମୁଦ୍ରରେ ତିମିମାଛ ସଂଖ୍ୟା ବହୁତ କମଯାଉଛି । ସେହିପରି ଅନିୟନ୍ତ୍ରିତ ଭାବେ ଶୀକାର ଦ୍ୱାରା ପ୍ରାଣୀ ସଂଖ୍ୟା ହୁ ହୁ ହ୍ରାସ ପାଇବାରେ ଲାଗିଛି । ଶୀକାରୀ ସାଧାରଣତଃ ଲୋଭ ଓ ଲାଭ ଏହି ଦୁଇକାରଣରୁ ମାତେ ଓ ଆଉ କେତେକ ସଉକରେ ଜନ୍ତୁ ମାରନ୍ତି । ଦୁର୍ଭାଗ୍ୟର ବିଷୟ ଏହି ଯେ ବେନିୟମ ଶୀକାର ଏକ ପ୍ରକାର ବ୍ୟବସାୟ ହୋଇଯାଇଛି ଓ ସେଥିପ୍ରତି ଆମର ସାମାଜିକ ଚେତନା ଯେତିକି ଜାଗ୍ରତ ଓ ଦୃଢ଼ ହେବାକଥା ତାହା ହୋଇନାହିଁ, ଏହା ଯେ ଏକ ଅମାର୍ଜନୀୟ ଅପରାଧ ଏହି ଭାବ ସୃଷ୍ଟି ନହେଲେ କେବଳ ଆଇନ ଦ୍ୱାରା ଏଭଳି ଜଘନ୍ୟ କାଣ୍ଡ ବନ୍ଦ କରିହେବ ନାହିଁ । ବନ୍ୟଜନ୍ତୁ ସଂରକ୍ଷଣ ଦିଗରେ ଏହାହିଁ ସର୍ବ ପ୍ରଥମ ଆବଶ୍ୟକତା । ଦ୍ୱିତୀୟ କାରଣ ହେଲା ଜନସଂଖ୍ୟା ବୃଦ୍ଧି ଓ ଜଙ୍ଗଲ ଉପରେ ତାହାର ପ୍ରତିକୂଳ ପ୍ରଭାବ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଚାପ ସମ୍ଭାଳି ନପାରି କୃଷିକ୍ଷେତ୍ରର ପ୍ରସାର ନିମନ୍ତେ ପ୍ରକୃତିର ପୁଣ୍ୟସୀମା ସଂକୁଚିତ ହୋଇଯିବାରେ ଲାଗିଛି ଓ ତା'ସହିତ ସରି ସରି ଆସୁଛି ବନ୍ୟପ୍ରାଣୀମାନଙ୍କର ଅଭୟ ଆଶ୍ରୟ- ସ୍ଥଳୀ ଓ ଚରଣ ଭୂମିର ଆୟତନ । ଏଇଥିଯୋଗୁଁ ବେଳେ ବେଳେ ସେମାନେ ଜନପଦ ଭିତରକୁ ପଶିଆସି ବିପଦ ସୃଷ୍ଟି କରୁଅଛନ୍ତି । ତୃତୀୟତଃ ଗୃହପାଳିତ ପଶୁମାନଙ୍କର ଅସ୍ୱାଭାବିକ ବଂଶବୃଦ୍ଧି । ସେମାନଙ୍କର ଚାପ ବଢ଼ୁଛି ସେହି ଏକ ଜଙ୍ଗଲ ଚରଣ ଭୂମି ଉପରେ ଓ ଖାଦ୍ୟ ଉପରେ । ଏହି କ୍ରମବର୍ଦ୍ଧମାନ ଚାପ ମଧ୍ୟ ବନ୍ୟପ୍ରାଣୀମାନଙ୍କର ସଂଖ୍ୟା ହ୍ରାସର ଅନ୍ୟ ଏକ କାରଣ । ଏତଦ୍‌ବ୍ୟତୀତ ଛେଳି, ମେଣ୍ଢାମାନେ ସ୍ଥାନୀୟ ବୃକ୍ଷଲତାମାନଙ୍କର ବହୁତ କ୍ଷତି ସାଧନ କରିଥାଆନ୍ତି ଓ ସମୟ ସମୟରେ ଗୃହପାଳିତ ପଶୁମାନଙ୍କ ମାଧ୍ୟମରେ ବନ୍ୟ ପ୍ରାଣୀମାନେ ରିଣ୍ଡରପେଷ୍ଟ ଓ ଫାଟୁଆ ରୋଗ ପ୍ରଭୃତି ସାଂଘାତିକ ସଂକ୍ରାମକ ରୋଗଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁ ମୁଖରେ

ପଡ଼ନ୍ତି । ଥରେ ଏହିଭଳି ପରିସ୍ଥିତିରେ ଭାରତୀୟ ଗଣ୍ଡାର ରିଣ୍ଡରପେଷ୍ଟ ରୋଗ ଆକ୍ରମଣରେ ସମ୍ମୁଖୀନ ହୋଇଥିଲେ । କେତେବର୍ଷ ତଳେ ସୁ-ପ୍ରସିଦ୍ଧ ହାଇଦ୍ରାବାଦ ପ୍ରାଣୀ ଉଦ୍ୟାନ ମଧ୍ୟ ଏହି ରୋଗ ଆକ୍ରମଣରେ ବହୁପ୍ରାଣୀ ହରାଇ ବସିଥିଲା । ଚତୁର୍ଥତଃ, ସ୍ଥାନୀୟ ଜୀବଜଗତର ସ୍ଥିତି ଓ ଆବଶ୍ୟକତା ସମ୍ୟକ ଭାବରେ ଅନୁଶୀଳନ ନ କରି ସେଠାରେ କୌଣସି ଜୀବନକୁ ଶୀକାର ଦ୍ୱାରା ଓ ଅନ୍ୟ ଉପାୟରେ ସଂଖ୍ୟା ହ୍ରାସ କରାଇଦେବା ଯେତିକି କ୍ଷତିକାରକ, କୌଣସି ନୂତନ ଜୀବ ଆଣି ଛାଡ଼ିବା ମଧ୍ୟ ସେତିକି କ୍ଷତିକାରକ ହୋଇପାରେ । ଏହାର ବହୁ ଦୃଷ୍ଟାନ୍ତ ରହିଛି । ଏଠାରେ ଚଳିତ ଶତାବ୍ଦୀ ଆରମ୍ଭର ଏକ ଦୃଷ୍ଟାନ୍ତ ଆଲୋଚନା କରିବା । ଆମେରିକାର ତଦାନୀନ୍ତନ ପ୍ରେସିଡେଣ୍ଟ ରୁଜ୍ ଭେଲ୍ଟ ଜଣେ ଜୀବଜନ୍ତୁ ପ୍ରେମୀ ହିସାବରେ ଜଣା ଯାଆନ୍ତି । ତାଙ୍କର ରାଜତ୍ୱ କାଳରେ ଆମେରିକାର କାଇବାନ ମାଳଭୂମି ଅଞ୍ଚଳରେ ବାସ କରୁଥିବା ଏକ ପ୍ରକାର ସୁନ୍ଦର ହରିଣର ବଂଶବୃଦ୍ଧି କରିବା ଅଭିପ୍ରାୟରେ ପ୍ରେସିଡେଣ୍ଟ ରୁଜ୍ ଭେଲ୍ଟଙ୍କ ଅନୁମୋଦନ କ୍ରମେ ସେମାନଙ୍କୁ ମାରି ଖାଇଯାଉଥିବା ପୁମା ଓ ହେଟା ବାଘମାନଙ୍କୁ ଧ୍ୱଂସ କରିଦେବା ପାଇଁ ଅନୁମତି ନିଆଗଲା ମାତ୍ର ଯାହା ଫଳ ଆଶା କରାଯାଉଥିଲା, ତାହା ହେଲନାହିଁ । ସେମାନଙ୍କର ପ୍ରାକୃତିକ ଖାଦକ ବଂଶ ଲୋପ ପାଇଯିବାରୁ ସେମାନେ ଶୀଘ୍ର ଶୀଘ୍ର ଅସ୍ୱାଭାବିକ ରୂପେ ବଂଶବୃଦ୍ଧି କଲେ ଓ ଖୁବ୍ ଶୀଘ୍ର ସେମାନଙ୍କର ଚାରଣଭୂମି ଚରଣପାଇଁ ଅନୁପଯୋଗୀ ହୋଇପଡ଼ିଲା । ଯେଉଁଠାରେ ଦିନେ ଖୁବ୍ ସବୁଜ ସୁନ୍ଦର ଘାସ ପଡ଼ିଆ ଥିଲା ସେଗୁଡ଼ିକ ମରୁଭୂମି ସଦୃଶ ଏତେ ଶୁଷ୍କ ଓ ନିରସ ହୋଇ ଉଠିଲା ଯେ ତାହା ଆଉ କୌଣସି ଜୀବ ବାସୋପଯୋଗୀ ହୋଇପାରିଲା ନାହିଁ । ଖାଇବାକୁ ନ ପାଇ ସେମାନଙ୍କ ମଧ୍ୟରୁ ଅଧିକାଂଶ ମୃତ୍ୟୁ ମୁଖରେ ପଡ଼ିଲେ ଓ ସେମାନଙ୍କର ସଂଖ୍ୟା ଆଶାତୀତ ଭାବରେ କମିଗଲା । ପଶୁ-ପକ୍ଷୀମାନଙ୍କର ମଧ୍ୟରେ ଖାଦ୍ୟ-ଖାଦକ ସଂପର୍କର ପ୍ରାକୃତିକ ଭାରସାମ୍ୟ ରକ୍ଷା ଦିଗରେ ଅବଦାନ ଏହି ଉଦାହରଣରୁ ସହଜରେ ଅନୁମେୟ । ପଞ୍ଚମତଃ ବନ୍ୟପ୍ରାଣୀମାନଙ୍କୁ ସର୍କସ ତଥା ଚିଡ଼ିଆଖାନା ପାଇଁ, ଚିକିତ୍ସା ପ୍ରଣାଳୀର ଗବେଷଣା ନିମିତ୍ତ ତଥା ପୋଷା ମନାଇବା ଉଦ୍ଦେଶ୍ୟରେ ଧରି ନିଆହୁଏ ଓ ସେଥିଯୋଗୁଁ ସେମାନଙ୍କର ସଂଖ୍ୟା ହ୍ରାସ ଘଟିଥାଏ । ଷଷ୍ଠତଃ, ମୂଷାମରା ଓ ପୋକମରା ଔଷଧର ବହୁଳ ପ୍ରସାର ଓ ଅପପ୍ରୟୋଗ ବନ୍ୟଜନ୍ତୁମାନଙ୍କର ମୃତ୍ୟୁର ଅନ୍ୟ ଏକ ପ୍ରଧାନ କାରଣ ହୋଇଛି । ଆମ ଦେଶରେ ଏହା ବର୍ତ୍ତମାନ ଏକ ମୁଖ୍ୟ ସମସ୍ୟା ରୂପେ ଦେଖାଦେଇଛି । ଶସ୍ୟ ରକ୍ଷା ପାଇଁ ନିଆଯାଉଥିବା ବନ୍ଧୁକ ଏବଂ ଔଷଧ ଉଭୟ ବନ୍ୟଜନ୍ତୁମାନଙ୍କର ସୁରକ୍ଷାକୁ ପ୍ରତିହତ କରିଛନ୍ତି । ଏହି କୀଟନାଶକ ଔଷଧର ଅପପ୍ରୟୋଗ କରି ବହୁ ବ୍ୟାଘ୍ର ଓ କୁମ୍ଭୀର ପ୍ରଭୃତି ମାରି ଦିଆଗଲଣି । ସପ୍ତମରେ କେତେକ ପ୍ରାକୃତିକ କାରଣବଶତଃ କେତେଗୁଡ଼ିଏ ପଶୁପକ୍ଷୀ ଆପେ ଆପେ ଲୋପ ପାଇ ଆସୁଥିବାର ଲକ୍ଷ୍ୟ କରାଯାଇଛି ।

ବର୍ତ୍ତମାନ ଏହିପରି ଲୋପୋନ୍ମୁଖୀ ବନ୍ୟପ୍ରାଣୀମାନଙ୍କୁ ଯେ କିପରି ଧ୍ୱଂସ ମୁଖରୁ ରକ୍ଷା କରାଯାଇ ପାରିବ, ସେହି ବିଷୟରେ ଆଲୋଚନା କରିବା । ଏହି ପ୍ରଶ୍ନରେ ହିଁ ଏହାର ଉତ୍ତର ନିହିତ । କାରଣ, ଧ୍ୱଂସର କାରଣ ନିର୍ଣ୍ଣୟ କରାଯାଇପାରିଲେ ସୁରକ୍ଷାର ଉପାୟ ବାହାର କରାଯାଇ ପାରି... ସେମାନଙ୍କ ଆବାସସ୍ଥଳୀ ରୂପେ ଜଣାଶୁଣା ସ୍ଥାନମାନ... କଠୋର ନିରାପତ୍ତାର ବ୍ୟବସ୍ଥା କରିବା ହିଁ ଏ ଦିଗରେ ପ୍ର... ପ୍ରଧାନ ଓ ପ୍ରକୃଷ୍ଟ ପଦକ୍ଷେପ ଏବଂ ଏହା ତିନି ଉପାୟରେ ହା... କରାଯାଇ ପାରିବ । ପ୍ରଥମେ ସେମାନଙ୍କୁ କୌ... ପ୍ରକାରରେ ମାରିବା, ଧରିନେବା ଓ ରପ୍ତାନୀ କରିବା ଉପ... କଠୋର କଟକଣା । ଦ୍ୱିତୀୟରେ ସେମାନଙ୍କର ଆବା... ସ୍ଥଳୀକୁ 'ଅଭୟାରଣ୍ୟ' ରୂପେ ଗଢ଼ି ତୋଳିବା ଯଦ୍ବା... ସେମାନେ ଏବଂ ସେମାନଙ୍କ ଜୀବନ ପ୍ରଣାଳୀ ସହ ସମ... ଅନ୍ୟାନ୍ୟ ପଶୁପକ୍ଷୀ ଓ ବୃକ୍ଷଲତା ମଧ୍ୟ ସୁରକ୍ଷିତ ହୋ... ପାରିବେ । ତୃତୀୟରେ ସେମାନଙ୍କ ବଂଶବୃଦ୍ଧି ନିମନ୍ତେ ବୈଜ୍ଞାନିକ ଗବେଷଣାର ବନ୍ଦୋବସ୍ତ । ଆମ୍ଭ ପ୍ରଦେଶର କୁମ୍ଭୀରପାଳନ ଯୋଜନା, କଇଁଛପାଳନ ଯୋଜନା ଓ ବାଘ... ଯୋଜନା ଏ ଦିଗରେ ଏକ ଏକ ସଫଳ ପ୍ରୟାସ । ଏ... ଅଳ୍ପଦିନ ତଳେ ଯେଉଁ କନିକା ଜଙ୍ଗଲରେ କୁହୁଡ଼ିଏ ଦେଖିବା କଷ୍ଟସାଧ୍ୟ ଥିଲା, ଆଜି ଭିତର କନିକା ଅଭୟାରଣ୍ୟ ଘୋଷିତ ହେଲାପରେ ସେଠାରେ ପଲ ପଲ ହରିଣ, କୁମ୍ଭୀର ଓ ଗହିରମଥା ଅଞ୍ଚଳରେ ଲକ୍ଷାଧିକ କଇଁଛ ଅଣ୍ଡା ଦେବାକୁ ଆସିବା ଓ ନନ୍ଦନକାନନର କୁମ୍ଭୀର ତଥା ଧଳାବାଘ ପ୍ରଜନନ ଯୋଜନା ବାସ୍ତବିକ ଆମ ରାଜ୍ୟ ପକ୍ଷରେ ଗର୍ବ ଓ ଗୌରବର ବିଷୟ ହୋଇପଡ଼ିଛି । ଏହା ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ । ଏତଦ୍‌ବ୍ୟତୀତ ଆମ ରାଜ୍ୟରେ କେତେକ ଅଭୟାରଣ୍ୟ କରାଯାଇ ତାର ପରିଚାଳନା ନିମନ୍ତେ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଉଅଛି ।

ମଣିଷର ଲୋଭଗ୍ରସ୍ତ କାର୍ଯ୍ୟକଳାପ ଯେ କେତେକ ଜୀବଜନ୍ତୁ-ମାନଙ୍କର ବଂଶଲୋପ କରିବା ନିମନ୍ତେ ମୁଖ୍ୟତଃ ଦାୟୀ, ଏହା ବିଗତ ଶତାବ୍ଦୀର ଶେଷ ଆଡ଼କୁ ସ୍ୱୀକାର କରାଗଲା । ଏହିଭଳି ଏକ ଧାରଣା ସ୍ୱୀକାର କରି କେତେକ ସତ୍‌ସାହାସର ସହିତ ଏ ଦିଗରେ ଚିନ୍ତା କରିବାକୁ ଲାଗିଲେ ଓ ପଶୁପକ୍ଷୀମାନଙ୍କ ସୁରକ୍ଷା ନିମନ୍ତେ ସଂଘବଦ୍ଧ, ସମ୍ମିଳିତ ଉଦ୍ୟମ କରିବାକୁ ଦୃଢ଼ ସଙ୍କଳ୍ପ ନେଲେ । ତା ୧୧-୧୨-୧୯୦୩ ରିଖରେ ଜନ୍ମ ନେଲା Society for the Preservation of the wild fauna of the Empire ଲଣ୍ଡନରେ Natural History Museumରେ ୧୯୩୦ ଆଡ଼କୁ ଅନ୍ୟାନ୍ୟ ଦେଶରେ ଏହିଭଳି ସଂସ୍ଥାମାନ ଗଢ଼ି ଉଠିଲା । ମାତ୍ର ଦ୍ୱିତୀୟ ପୃଥିବୀ ମହାସମର ପରେ ଜଣା ପଡ଼ିଲା ଯେ ବନ୍ୟପ୍ରାଣୀମାନେ ତଥାପି ଆଶାନୁରୂପ ଭାବେ ସୁରକ୍ଷିତ ହୋଇ ପାରିନାହାନ୍ତି । ତେଣୁ ୧୯୪୮ ମସିହାରେ ଏହିଭଳି ସଙ୍ଗଠନମାନଙ୍କ କାର୍ଯ୍ୟରେ ସମନ୍ୱୟ ରକ୍ଷା କରିବା ପାଇଁ International Union for the conservation of Nature ନାମକ ଆଉ ଏକ ସଂସ୍ଥା ଗଢ଼ାଗଲା । ସେମାନଙ୍କ ଆନୁକୂଲ୍ୟରେ ୧୯୬୬ ମସିହାରେ ପ୍ରକାଶିତ ଏକ ସମୀକ୍ଷାରୁ ଜଣାଯାଏ ଯେ ୨୭୭ ପ୍ରକାରର ସ୍ତନ୍ୟପାୟୀ ପ୍ରାଣୀ ଓ ୩୨୧ ପ୍ରକାରର ପକ୍ଷୀବଂଶ ସେତେବେଳେ ଧ୍ୱଂସର ଦ୍ୱାରଦେଶରେ ପହଞ୍ଚିଥିଲେ । ତା'ପରେ ସେମାନଙ୍କର ସୁରକ୍ଷା ଦିଗରେ ଆରମ୍ଭ ହେଲା କେତେ ସଂଘବଦ୍ଧ ଉଦ୍ୟମ । ପଶୁପକ୍ଷୀମାନଙ୍କ ସୁରକ୍ଷା ଦିଗରେ ଏହିପରି ସଂଘବଦ୍ଧ ପ୍ରଚେଷ୍ଟାର ଅବଦାନ ଅତୁଳନୀୟ । ବିଶ୍ୱ ବନ୍ୟପ୍ରାଣୀ ସଂସ୍ଥା (World Wild Life Fund) ବର୍ତ୍ତମାନ ଭାରତର ବିଭିନ୍ନ ବ୍ୟାଘ୍ର ସୁରକ୍ଷା ଯୋଜନା କାର୍ଯ୍ୟରେ

ସହାୟତା କରୁଛନ୍ତି । ଆମ ସିମିଳିପାଳ ଜଙ୍ଗଲର ପ୍ରୋଜେକ୍ଟ ଟାଇଗର ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ । ଏଠାରେ ଉଲ୍ଲେଖ-ଯୋଗ୍ୟ ଯେ ଆମର ଓଡ଼ିଶାରେ ମଧ୍ୟ ପ୍ରକୃତି ତାର ଅଭୟ କୋଳରେ ଲାଳିତ ପାଳିତ ପଶୁପକ୍ଷୀମାନଙ୍କ ସୁରକ୍ଷା ନିମିତ୍ତ ଏକ ସଂସ୍ଥା "Nature & wild life conservation society of Orissa" ଗଠନ କରାଯାଇଛି ।

ପୂର୍ବେ ନନ୍ଦନକାନନ ଭଳି ପ୍ରାଣୀ ଉଦ୍ୟାନମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜନମନରଞ୍ଜନ ମାତ୍ର ଏବେ ଏହି ଅଭିମୁଖ୍ୟ ସହିତ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ହେଲା ବନ୍ୟ-ପ୍ରାଣୀ ସମ୍ବନ୍ଧରେ ଜନମାନସରେ ସମୁଚିତ, ସମ୍ବେଦନଶୀଳ ଶିକ୍ଷଣୀୟ ଲୋକଚେତନା ଜାଗ୍ରତ କରାଇବା । ଜୀବଜନ୍ତୁ-ମାନଙ୍କ ଚଳଣୀ, ରୋଗ, ଚିକିତ୍ସା ଓ ପ୍ରଜନନ ପ୍ରକ୍ରିୟାର ଅନୁଶୀଳନ ଓ ସେମାନଙ୍କର ବଂଶବୃଦ୍ଧି ସମ୍ବନ୍ଧୀୟ ଗବେଷଣା ଇତ୍ୟାଦି । ଏବେ ଲୋପୋନ୍ମୁଖୀ ପଶୁପକ୍ଷୀମାନଙ୍କ ସମ୍ବନ୍ଧରେ ଗବେଷଣା କରି ସେମାନଙ୍କର ସୁରକ୍ଷା ତଥା ବଂଶବୃଦ୍ଧିର ବନ୍ଦୋବସ୍ତ କରାଇବା ପ୍ରାଣୀ ଉଦ୍ୟାନମାନଙ୍କର ପ୍ରଥମ ଓ ପ୍ରଧାନ ଉଦ୍ଦେଶ୍ୟ ରୂପେ ଦେଶ ବିଦେଶରେ ସ୍ୱୀକୃତ ହେଲାଣି । ଆମ ନନ୍ଦନକାନନରେ ମଧ୍ୟ ଏ ଦିଗରେ କାର୍ଯ୍ୟ କରାଯାଉଅଛି ।

ବର୍ତ୍ତମାନ ପ୍ରଥମ ଏବଂ ତୃତୀୟ ପ୍ରଶ୍ନର ଉତ୍ତର ପର୍ଯ୍ୟାଲୋଚନା କରି ସାରିବା ପରେ ଆସନ୍ତୁ ଦ୍ୱିତୀୟ ପ୍ରଶ୍ନଟିର ବିଚାର କରିବା । ଆମେ ବନ୍ୟଜନ୍ତୁ ସଂରକ୍ଷଣ କରିବା କାହିଁକି ? ଏହି ପ୍ରଶ୍ନଟିକୁ ଅର୍ଥନୈତିକ ତଥା ନୈତିକ ଉଭୟ ଦୃଷ୍ଟିକୋଣରୁ ବିଚାର କରାଯିବା ସମିଚୀନ ହେବ । ପର୍ଯ୍ୟଟନ ଶିଳ୍ପ ଉପରେ ବନ୍ୟପ୍ରାଣୀମାନଙ୍କ ପ୍ରଭାବ ଅନସ୍ୱୀ-କାର୍ଯ୍ୟ । ସେହିପରି ମଣିଷର ବ୍ୟବହାରରେ ଲାଗୁଥିବା ପଶୁପକ୍ଷୀମାନଙ୍କର ଅର୍ଥନୈତିକ ଉପଯୋଗିତା ଓ ସେହି ଅର୍ଥନୈତିକ ଦୃଷ୍ଟି ଦିଗରୁ ସେମାନଙ୍କର ସୁରକ୍ଷା ଯେ ଅପରିହାର୍ଯ୍ୟ ଏହା କାହାକୁ ବୁଝାଇବା କଷ୍ଟସାଧ୍ୟ ନୁହେଁ ମାତ୍ର କୌଣସି ଗୋଟିଏ ପ୍ରକାର ଜୀବଜନ୍ତୁକୁ ଧ୍ୱଂସ କରିବାକୁ ଯାଇ ଆମେ କି ଭଳି ଭାବେ ପ୍ରାକୃତିକ ନୈତିକ ସମତାକୁ ପ୍ରତିହତ କରୁଛୁ ଓ ଏହା ଯେ ମଣିଷର ସ୍ୱାଭାବିକ ଜୀବନଯାତ୍ରା ପଥରେ ବିପଦସଙ୍କୁଳ ହୋଇପାରେ ଏହା ବୁଝାଇବା ସହଜ ନୁହେଁ । କାରଣ ଗବେଷଣା ଅଭାବରୁ ଅଧିକାଂଶ କ୍ଷେତ୍ରରେ ଗୋଟିଏ ପ୍ରାଣୀର ବିନାଶରେ ସମୂହ ଜୀବନଧାରା ଯେ କିଭଳି ଭାବେ ବିପର୍ଯ୍ୟସ୍ତ ହେଉଛି ତାହା ଏ ପର୍ଯ୍ୟନ୍ତ ସଠିକ ଭାବେ ନିର୍ଦ୍ଧାରିତ ହୋଇପାରି ନାହିଁ । ଏ କ୍ଷେତ୍ରରେ କେତେକ ପୂର୍ବ ଘଟଣା-ବଳୀର ନଜିର ମାତ୍ର ଦିଆଯାଇ ପାରିବ । ତେବେ କେବଳ ଏତିକି ମାତ୍ର ନିଶ୍ଚିତଭାବେ କୁହାଯାଇ ପାରିବ ଯେ, ଗୋଟିଏ ପ୍ରକାର ପ୍ରାଣୀ କୁଳର ବିନାଶରେ ସମୂହ ଜୀବନଯାତ୍ରା ନିଶ୍ଚିତଭାବେ ପ୍ରତିହତ ହେବ ଏବଂ ତଦ୍‌ଜନିତ ପରିବର୍ତ୍ତନ କ୍ଷତିକାରକ ହେବ । ନୈତିକ ଦୃଷ୍ଟିରୁ ବିଚାର କଲେ ଆମର କଳା, ସଂସ୍କୃତି ଓ ସଭ୍ୟତା ସହିତ ଯେ ବନ୍ୟଜନ୍ତୁମାନେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଏହା ସର୍ବଜନ ବିଦିତ । ତେଣୁ ଏ ଦେଶର ନଦୀ, ନାଳ, ବୃକ୍ଷଲତା ପରି ସେମାନେ ମଧ୍ୟ ଆମ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ ଓ ସେମାନଙ୍କର ସୁରକ୍ଷା ଆମର ପବିତ୍ର କର୍ତ୍ତବ୍ୟ ।

ବନ୍ୟଜନ୍ତୁମାନଙ୍କ ସୁରକ୍ଷା ନିମିତ୍ତ ଭାରତ ସରକାର ୧୯୭୨ ମସିହାରୁ ଆଇନ ପ୍ରଣୟନ କରିଛନ୍ତି ଓ ଏହା ଗତ ୧୪-୮-୧୯୭୪ ମସିହାରୁ ଆମ ରାଜ୍ୟରେ ଲାଗୁ କରାଯାଇ-ଅଛି । ସେମାନଙ୍କର ସୁରକ୍ଷା ଓ ଅଭିବୃଦ୍ଧି ନିମିତ୍ତ ଜନସାଧାରଣ ତାଙ୍କର ଦୃଢ଼ ମନୋବଳ ଓ ସକ୍ରିୟ ସହଯୋଗ ଆଜିର ପ୍ରଧାନ ଆବଶ୍ୟକତା ।



# ଲୁପ୍ତ ଗୌରବ

ଶ୍ରୀ ସରୋଜ କୁମାର ରଥ

ସୃଷ୍ଟିର ପ୍ରାରମ୍ଭରୁ ବର୍ତ୍ତମାନ ସୁଦ୍ଧା ଦେଖିବାକୁ ଗଲେ ପଶୁପକ୍ଷୀ ପ୍ରଭୃତି ପ୍ରାଣୀମାନଙ୍କ ସହ ମାନବ ସମାଜର ନିବିଡ଼ ସଂପର୍କ ରହି ଆସିଥିବା କଥାକୁ କେହି କେବେ ଅସ୍ୱୀକାର କରିପାରିବେ ନାହିଁ । ଏହା ସୁସ୍ପଷ୍ଟଯେ, ଧରଣୀ ବକ୍ଷରୁ ପାପର ଭାରା ଲଘବ କରିବାପାଇଁ ସ୍ୱୟଂ ନାରାୟଣଂକ ଅବତାର ଗ୍ରହଣ କରିବା ମଧ୍ୟରେ ମତ୍ସ୍ୟ, କଚ୍ଛପ, ବରାହ ଓ ନୃସିଂହ ଅବତାରମାନ ଅନ୍ୟାନ୍ୟତମ । ଦେବାଦେବୀଗଣ ମଧ୍ୟ ଏହି ପଶୁପକ୍ଷୀମାନଂକ ମଧ୍ୟରୁ ସେମାନଂକର ବାହନ ସ୍ୱରୂପ ସିଂହ, ହସ୍ତୀ, ଗଯଳ, ମୟୂର, ଗରୁଡ଼ପକ୍ଷୀ, ମଗର ପ୍ରଭୃତିଂକୁ ଗ୍ରହଣକରି ନେଇଛନ୍ତି । ତ୍ରେତୟା ଯୁଗରେ ଲଂକାର ରାଜା ରାବଣ ସୀତାଦେବୀଂକୁ ଅପହରଣକରି ଯାଉଥିବା ସମୟରେ ଜଟାୟୁ ସହିତ ତୁମୁଳ ସଂଘର୍ଷହେବା, ସୀତାଦେବୀଂକ ଅପହରଣ ସଂବାଦ ପ୍ରଭୁ ଶ୍ରୀରାମଚଂଦ୍ରଂକୁ ଜଣାଇବା ତଥା ଏମାନଂକ ସହାୟତାରେ ସେତୁବଂଧ ବାଂଧିବାଠାରୁ ଲଂକା ଅଭିଯାନକରି ରାବଣକୁ ନିହତକରି ସୀତାଦେବୀଂକୁ ଉଦ୍ଧାରକରିବା ଓ ଦ୍ୱାପରଯୁଗରେ ଅର୍ଜୁନଂକ ବନବାସ ସମୟରେ ଶ୍ରୀକୃଷ୍ଣ 'ନବଗୁଂଜର' ରୂପରେ ଅର୍ଜୁନଂକୁ ଦର୍ଶନଦେଇ ପ୍ରକୃତ ମିତ୍ର ପରୀକ୍ଷା ପ୍ରଭୃତି ବହୁ ଘଟଣାସହ ଜଗତରନାଥ ଶ୍ରୀଜଗନ୍ନାଥଂକ ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ଥିବା ଦ୍ୱାରମାନଂକ ସମ୍ମୁଖରେ ଯଥାକ୍ରମେ ସିଂହ, ବ୍ୟାଘ୍ର, ହସ୍ତୀ ଓ ଅଶ୍ୱର ପ୍ରତିମୂର୍ତ୍ତିମାନ ବିରାଜମାନ ହେବାସହ ଏମାନଂକ ନାମରେ ଦ୍ୱାରଗୁଡ଼ିକୁ ନାମିତକରିବା ବହୁ ଘଟଣା ପରିଲକ୍ଷିତ ହୁଏ । ଆମ ସ୍ୱାଧୀନ ଭାରତବର୍ଷର ଜାତୀୟ ପଶୁ ଓ ପକ୍ଷୀ ଭାବରେ ଯଥାକ୍ରମେ ସିଂହ (ବର୍ତ୍ତମାନ ବାଘ) ଓ ମୟୂରକୁ ସ୍ଥାନ ଦିଆଯାଇଛି ଓ ଗତ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତାରେ ହସ୍ତୀକୁ ଏକ ସମ୍ମାନର ପ୍ରତୀକଭାବେ ମଧ୍ୟ ଗ୍ରହଣ କରାଯାଇଥିବା ଆଉ ଏକ ଜ୍ୱଳନ୍ତ ଉଦାହରଣ ।

କେବଳ ଏତିକିନୁହେଁ, ମାନବ ସମାଜ ତିଷ୍ଠି ରହିବା ପଛରେ ଏହି ନିରୀହ ପ୍ରାଣୀମାନଂକ ଅବଦାନ ଅତୁଳନୀୟ । ଯେହେତୁ ମାନବ ସମାଜ ଏମାନଂକଠାରୁ ଶିକ୍ଷା, ଶକ୍ତି, ଖାଦ୍ୟ-ପେୟଠାରୁ ଆରମ୍ଭକରି ନିତ୍ୟବ୍ୟବହାର୍ଯ୍ୟ ସୌଖୀନ ପଦାର୍ଥ, ଔଷଧ ସାମଗ୍ରୀ ସଂଗ୍ରହ କରିବା ସହ ଏମାନଙ୍କୁ ଦେଖି ଓ ଏମାନଂକ ସଂପର୍କରେ ବହୁ ରୋମାଂଚକର କାହାଣୀମାନ ଶ୍ରବଣକରି ତାର କର୍ମମୟ ଜୀବନରେ ଅଫୁରନ୍ତ ଆନଂଦଲାଭ କରିଥାଏ । ସେଥିପାଇଁ ଜୈନ ଧର୍ମର ପ୍ରବର୍ତ୍ତକ ଭଗବାନ ମହାବୀର ତାଂକର ଅମୃତବାଣୀରେ ଜୀବହତ୍ୟା ମହାପାପ ବୋଲି ବର୍ଣ୍ଣନା କରିଛନ୍ତି । ବୁଦ୍ଧଦେବଂକର ମଧ୍ୟ ସେପରି ଅମୃତବାଣୀଥିଲା 'ଜୀବେ ଦୟା' । ସେହି ଆଦର୍ଶରେ ଅନୁପ୍ରାଣୀତ ହୋଇ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେବାସହ ତାଂକ ଶାସନ କାଳରେ ଜୀବହତ୍ୟା ସଂପୂର୍ଣ୍ଣ ନିଷିଦ୍ଧକରି ତାଂକ ନାମରେ ନାମିତ 'ଅଶୋକସ୍ତମ୍ଭ'ରେ ସିଂହର ପ୍ରତିମୂର୍ତ୍ତିକୁ ସ୍ଥାନ ଦେଇଥିଲେ । ଜାତିର ଜନକ ମହାତ୍ମାଗାଂଧୀ, ପଣ୍ଡିତ ଜବାହାରଲାଲ ନେହେରୁ ପ୍ରଭୃତି ମହାପୁରୁଷଗଣ ମଧ୍ୟ ଜୀବହତ୍ୟା ନକରିବାପାଇଁ ବାରମ୍ବାର ଆହ୍ୱାନମାନ ଦେଇଆସିଥିଲେ । ଏପରିକି ଆମର ସ୍ୱର୍ଗୀୟା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଏମାନଂକ ସଂରକ୍ଷଣ ଦିଗରେ ବହୁ ପଦକ୍ଷେପମାନ ଗ୍ରହଣ କରିଥିଲେ । ସେ କହିଥିଲେ — "The survival of man is dependent on the survival of animal and bird life."

ବାସ୍ତବିକ ଦେଖିବାକୁ ଗଲେ ଏମାନଙ୍କ ଅଭାବରେ ଚାଣକ୍ୟଙ୍କର ନୀତିବାକ୍ୟ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ତୁଳନାତ୍ମକ ତଥା ଶୃଙ୍ଗାର କାବ୍ୟାବଳୀ, ପ୍ରକୃତି କବି ଗଙ୍ଗାଧର ମେହେରଙ୍କର ହୃଦୟସ୍ପର୍ଶୀ କାବ୍ୟ (ତପସ୍ୱିନୀ ଇ-), କବିସୂର୍ଯ୍ୟ ବଳଦେବ ରଥଙ୍କ ଅଭିମାନାତ୍ମକ (ଜଗନ୍ନାଥ ଜଣାଣ ଇ-) କବିବର ରାଧାନାଥଙ୍କର ବ୍ୟଙ୍ଗାତ୍ମକ (ଦରବାର ଇ-), ଉତ୍କଳ ଗୌରବ ମଧୁସୂଦନଙ୍କର ଦେଶାତ୍ମବୋଧକ (ଉତ୍କଳ ଜନନୀ ଇ-) ତଥା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ଆହ୍ୱାନାତ୍ମକ (ଉଠକଙ୍କାଳ ଇ.) କାବ୍ୟଗୁଡ଼ିକ ଆଜି ଜୀବନ୍ତ ତଥା ଜନାଦୃତ କରିପାରି ନ ଥାନ୍ତା ।

ଏହାସତ୍ତ୍ୱେ ଆମ୍ଭେମାନେ ନିଜର କର୍ତ୍ତବ୍ୟବୋଧକୁ ଭୁଲି ଓ ଆମର ଗୌରବକୁ ଜଳାଞ୍ଜଳି ଦେଇ କ୍ଷଣିକ ଆନନ୍ଦ-ଉନ୍ମାଦନାର ବଶବର୍ତ୍ତୀ ହୋଇ ଏପରି ନିରୀହ ପଶୁପକ୍ଷୀ-ମାନଙ୍କୁ ଅତ୍ୟନ୍ତ ଜଘନ୍ୟ ତଥା ଅବିଶ୍ୱସିତଭାବେ ଧ୍ୱଂସ କରିବା ସହ ନିଜର ତଥା ସମାଜର ପ୍ରକୃତ କ୍ଷତି ସାଧନରେ ସହାୟକ ହେବା କ'ଣ ଅତ୍ୟନ୍ତ କ୍ଷୋଭର ବିଷୟ ନୁହେଁ କି ? ବର୍ତ୍ତମାନ ମଧ୍ୟ ପ୍ରତିବର୍ଷ କେବଳ ଓଡ଼ିଶାରେ ନହେଁ ଭାରତର ସୁପ୍ରସିଦ୍ଧ ସିମିଳିପାଳ ଜଙ୍ଗଲରେ 'ଅଖଣ୍ଡ

ଶିକାର' ନାମରେ ସଂଘବଦ୍ଧଭାବେ ଆମର ଆଦିବାସୀ ଭାଇଭଉଣୀମାନେ କେତେକ ନିଃସ୍ୱାର୍ଥ ବ୍ୟକ୍ତିଙ୍କ କବଳରେ ପଡ଼ି ଅତ୍ୟନ୍ତ ନୃଶଂସଭାବେ ଏପରି ନିରୀହ ପ୍ରାଣୀ ମାନଙ୍କୁ ହତ୍ୟା କରିବା ଅତ୍ୟନ୍ତ ପରିତାପର ବିଷୟ ।

ସୌଭାଗ୍ୟକ୍ରମେ ମାନବ ସମାଜର ଏପରି ଦୁର୍ଦ୍ଦାନ୍ତ ଓ ଶିକାରୀ ମନୋଭାବକୁ ନିନ୍ଦା କରାଯାଇ ଏଥିରୁ କ୍ଷାନ୍ତ ହେବା ପାଇଁ ପ୍ରଥମେ ଇଂଲଣ୍ଡର "'Natural History of Museum" ଆନୁକୂଲ୍ୟରେ ତା ୧୧ । ୧୨ । ୧୯୦୩ ରିଖରେ 'ବନ୍ୟପ୍ରାଣୀ ସଂରକ୍ଷଣ' ନାମରେ ଗୋଟିଏ ସଂସ୍ଥା ଗଠନ କରାଗଲା । ଯାହାଫଳରେ କି ୧୯୩୦ ମସିହା ସୁଦ୍ଧା ୟୁରୋପ ମହାଦେଶର ଅଧିକାଂଶ ଦେଶ ଏହାକୁ ନୀତିଗତଭାବେ ଶାସନ ସ୍ୱୀକୃତି ପ୍ରଦାନ କରିଥିଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ପରେ ଅର୍ଥାତ୍ ୧୯୪୮ ମସିହାରେ ବିଭିନ୍ନ ଦେଶର 'ବନ୍ୟପ୍ରାଣୀ ସଂରକ୍ଷଣ ସଂସ୍ଥା' ମାନଙ୍କ ମାଧ୍ୟମରେ ସମନ୍ୱୟ ସ୍ଥାପନ କରିବାପାଇଁ ଜାତିସଂଘ ସହାୟତାରେ ସୁଇଜରଲ୍ୟାଣ୍ଡର ଜେନେଭା ସହରଠାରେ 'ଆନ୍ତର୍ଜାତୀୟ ବନ୍ୟପ୍ରାଣୀ ସଂସ୍ଥା' ନାମକ ଗୋଟିଏ ସଂସ୍ଥା ଜନ୍ମଲାଭ କଲା । ବସ୍ତୁତଃ ତାହା ଆଜି 'ବିଶ୍ୱବନ୍ୟପ୍ରାଣୀ ସଂସ୍ଥା'ରେ ପରିଣତ ହୋଇ ପାରିଛି । ଠିକ୍ ସେହିପରି ଆମ ଭାରତ ସରକାର ସମ୍ବିଧାନ କାର୍ଯ୍ୟକାରୀ କରିବାର ୨ ବର୍ଷ ମଧ୍ୟରେ ଅର୍ଥାତ୍ ୧୯୫୨ ମସିହାରେ 'Indian Board for Wildlife' ନାମରେ ଏକ ସଂସ୍ଥା ଗଠନ କରିଛନ୍ତି । ବର୍ତ୍ତମାନ ଏହି ବୋର୍ଡର ଅଧ୍ୟକ୍ଷ ଅଛନ୍ତି ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ । ୧୯୭୨ ମସିହାଠାରୁ ସମଗ୍ର ଦେଶରେ 'ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍' ପ୍ରଚଳନ କରାଯାଇଛି । ଯହିଁରେ ଅପରାଧୀମାନଙ୍କ ପାଇଁ ଦଣ୍ଡର ବିଧାନ ମଧ୍ୟ ରଖା ଯାଇଅଛି । ଆମ ରାଜ୍ୟ ସରକାର ଅନୁରୂପଭାବେ ମଧ୍ୟ ୧୯୭୪ ମସିହାଠାରୁ 'ଓଡ଼ିଶା ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍' ପ୍ରଣୟନ କରିବା ସହ ସଂରକ୍ଷଣର ଦୃଢ଼ ସଫଳତା ନିମିତ୍ତ ତା ୧ । ୮ । ୧୯୭୮ ରେ 'ରାଜ୍ୟ ବନ୍ୟପ୍ରାଣୀ ଉପଦେଷ୍ଟା ମଣ୍ଡଳୀ' ଓ ତା ୧୫ । ୭ । ୧୯୮୨ରେ 'ଓଡ଼ିଶାର ପ୍ରକୃତି ଓ ବନ୍ୟପ୍ରାଣୀ ସଂରକ୍ଷଣ ସମିତି' ଗଠନ କରିଛନ୍ତି ।

କେନ୍ଦ୍ରର ଓ ରାଜ୍ୟ ସରକାରମାନଙ୍କ ମିଳିତ ଉଦ୍ୟମ ଫଳରେ ଆଜି ଆମ ଦେଶରେ ବନ୍ୟପ୍ରାଣୀମାନଙ୍କ ସଂରକ୍ଷଣ ଦିଗରେ ବହୁ ପଦକ୍ଷେପମାନ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ କେତେକ ଦୁର୍ଲ୍ଲଭ ପଶୁପକ୍ଷୀ, ଯେଉଁମାନଙ୍କର ବଂଶ କ୍ରମଶଃ ଲୋପ ହୋଇ ଯାଉଥିଲା, ସେମାନଙ୍କର ସଂରକ୍ଷଣ ସମ୍ଭବ ହୋଇ ପାରୁଛି । ଆମ ରାଜ୍ୟପ୍ରତି ଦୃଷ୍ଟି ନିକ୍ଷେପ କଲେ ଏହା ସହଜରେ ଅନୁମେୟ ହୋଇ ପାରିବ ଯେ ସିମିଳିପାଳରେ 'ବ୍ୟାଘ୍ର ପ୍ରକଳ୍ପ ଯୋଜନା' କାର୍ଯ୍ୟକାରୀ ହେବାପରେ 'ଖଇରୀ' ବାଘୁଣୀ ବିଶ୍ୱବାସୀଙ୍କ ମନରେ ଆଲୋଡ଼ନ ସୃଷ୍ଟି କରିବାଠାରୁ ଡାଙ୍ଗମାଳସ୍ଥିତ 'କୁମ୍ଭୀର ଗବେଷଣା କେନ୍ଦ୍ର'ରୁ ବୈଦ୍ୟୁତିକ ଉପାୟରେ କୁମ୍ଭୀର ଅଣ୍ଡା ଫୁଟାଯାଇ ଛୁଆ ଜନ୍ମ କରାଇ ପାରିବା, ନନ୍ଦନକାନନଠାରେ ଧଳା ବାଘ ଓ କଳା ବାଘର ବଂଶ ବୃଦ୍ଧି କରାଯାଇପାରି ବିଶ୍ୱ ରେକର୍ଡ ସୃଷ୍ଟି କରି ପାରିଛି । ଏପରିକି ପୃଥିବୀରେ ଦେଖା ଦେଇଥିବା କେବଳ ମାତ୍ର ଧଳା ଶଙ୍ଖୁଆ କୁମ୍ଭୀର ମଧ୍ୟରେ ଓଡ଼ିଶାର ଡାଙ୍ଗମାଳଠାରେ ଥିବା ଏହି ପ୍ରକାର କୁମ୍ଭୀର ଅନ୍ୟତମ । କେବଳ ଏତିକି ନୁହେଁ, କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଆନ୍ତରିକ ଉଦ୍ୟମ ଫଳରେ ଆଜି ଆମ ରାଜ୍ୟରେ ନନ୍ଦନକାନନଠାରେ 'ରାଜ୍ୟ ପ୍ରାଣୀ ଉଦ୍ୟାନ' ଓ 'ସିଂହ ସଫାରୀ', ସିମିଳିପାଳ ଜଙ୍ଗଲରେ 'ଜାତୀୟ ଉଦ୍ୟାନ' ଓ 'ବ୍ୟାଘ୍ର ପ୍ରକଳ୍ପ', ଗହୀରମଥା—ଯେଉଁଠାରେ ପ୍ରତିବର୍ଷ ଲକ୍ଷ ଲକ୍ଷ ସାମୁଦ୍ରିକ କଇଁଛ ଅଣ୍ଡା ଦେବା ପାଇଁ ଆସିଥାନ୍ତି, ସେଠାରେ 'ସାମୁଦ୍ରିକ କଇଁଛ ଗବେଷଣା ଓ ପ୍ରଜନନ କେନ୍ଦ୍ର', ଟିକରପଡ଼ା, ନନ୍ଦନକାନନ, ଡାଙ୍ଗମାଳ ଓ ରାମତୀର୍ଥଠାରେ କୁମ୍ଭୀର ଗବେଷଣା ଓ ପ୍ରଜନନ କେନ୍ଦ୍ରମାନ, ଚନ୍ଦକା-ଡମପଡ଼ା ବନାଞ୍ଚଳରେ 'ହସ୍ତୀ ବିହାର, ହରିଶଙ୍କର, କପିଳାସ, ମୋତିଝରନ୍ ଓ କୁଆଁରିଆଠାରେ 'ମୃଗବିହାର', କୋଣାର୍କ-ବାଲୁଖଣ୍ଡ ବନାଞ୍ଚଳରେ କୃଷ୍ଣସାର ମୃଗ ଅଭୟାରଣ୍ୟ, ଚିଲିକାଠାରେ ବିହଙ୍ଗ ବିହାର ଅଭୟାରଣ୍ୟ ପ୍ରଭୃତି ପ୍ରତିଷ୍ଠା ହୋଇ ପାରିଛି ଓ ରାଜ୍ୟରେ ଚିହ୍ନଟ କରାଯାଇଥିବା ୨୧ ଗୋଟି ବନାଞ୍ଚଳ ମଧ୍ୟରୁ ଭିତର-କନିକା, ସାତକୋଶିଆ, ବାଇଶିପଲ୍ଲୀ, ସିମିଳୀପାଳ, ଖଲସୁଣ୍ଡା ପ୍ରଭୃତି ୧୪ ଗୋଟି ଅଞ୍ଚଳକୁ ଅଭୟାରଣ୍ୟ ଭାବେ ଘୋଷଣା କରାଯିବା ସହ ଅବଶିଷ୍ଟ ୭ ଗୋଟି ଅଞ୍ଚଳକୁ ଅଭୟାରଣ୍ୟ ଭାବେ ଘୋଷଣା କରାଯିବା ପାଇଁ ସରକାର ବିଚାର କରୁଛନ୍ତି ।

କେବଳ ସରକାରୀ ସ୍ତରରେ ଉପରୋକ୍ତ ଉଦ୍ୟମ ହେଲେ ଯେ ସମସ୍ୟାର ସମାଧାନ ହେବା ସହ ଆମର ହୃତ ଗୌରବ ଫେରି ପାଇବା ତାହା ନୁହେଁ, ପରନ୍ତୁ ଗଞ୍ଜାମ ଜିଲ୍ଲାର ଭେତନଇ ଅଞ୍ଚଳର ଗ୍ରାମବାସୀମାନଙ୍କ ଉଦ୍ୟମରେ ଯେପରି ସେଠାରେ କୃଷ୍ଣସାର ମୃଗ ତଥା ଜଙ୍ଗଲକୁ ସୁରକ୍ଷିତ ରଖିବାର ଆନ୍ତରିକତା ଉଦ୍ୟମ ପ୍ରକାଶ ପାଇଛି, ସେମାନଙ୍କୁ ଏଥିପାଇଁ ସାଧୁବାଦ ଜଣାଇବା ସହ ଆମ୍ଭେମାନେ ପ୍ରତିବର୍ଷ ପରି ଆମ ଦେଶ ତଥା ରାଜ୍ୟରେ ଏବର୍ଷ ମଧ୍ୟ ପାଳିତ ହେବାକୁ ଯାଉଥିବା ୩୧ ତମ ବନ୍ୟପ୍ରାଣୀ ସଂରକ୍ଷଣ ସପ୍ତାହ ପରିପ୍ରେକ୍ଷୀରେ ବନ୍ୟ ସଂପଦ ଓ ବନ୍ୟପ୍ରାଣୀମାନଙ୍କର ସୁରକ୍ଷା ତଥା ସଂରକ୍ଷଣରେ ସରକାରୀ ଉଦ୍ୟମକୁ କାର୍ଯ୍ୟକାରୀ କରିବାରେ ସାହାଯ୍ୟ ଓ ସହଯୋଗ କରିବା ସହ ନିଜର ଆନ୍ତରିକତା ପ୍ରକାଶ ପାଇଁ ଦୃଢ଼ ସଂକଳ୍ପ ନେବା ଆଜି ହିଁ ଆମ୍ଭମାନଙ୍କର ଅନୁଚିନ୍ତା ହେଉ ।

---

ଅତିରିକ୍ତ ମୁଖ୍ୟ ବନ୍ୟ ସଂରକ୍ଷକ,
ଇ/୭, ବକ୍ସି ଜଗବନ୍ଧୁ ନଗର,
ଭୁବନେଶ୍ୱର—୭୫୧୦୧୪

"ଶାରୀରିକ ଦୁର୍ବଳତା ପ୍ରକୃତ ଦୁର୍ବଳତା ନୁହେଁ, ମନର ଦୁର୍ବଳତା ହିଁ ପ୍ରକୃତ ଦୁର୍ବଳତା" ଗାନ୍ଧୀଜୀ. ୩.୧.୧୯୪୬

# ଓଡ଼ିଶାରେ ମହାତ୍ମା ଗାନ୍ଧୀ

ଶ୍ରୀ ବଳରାମ ମହାନ୍ତି

ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ୧୯୧୪ ମସିହାରେ ଭାରତକୁ ଫେରି ଆସି ଗୁଜୁରାଟର ସାବରମତୀ ଆଶ୍ରମରେ ଅବସ୍ଥାନ କରି ବ୍ରିଟିଶ ଶାସନ ବିରୁଦ୍ଧରେ ସମଗ୍ର ଭାରତରେ ଅସହଯୋଗ ସଂଗ୍ରାମ ପାଇଁ ପରିକଳ୍ପନା କରୁଥିଲା ବେଳେ ଦୁର୍ଭିକ୍ଷ ପ୍ରପୀଡ଼ିତ ଓଡ଼ିଶା ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପୁରୀ ଜିଲ୍ଲାରେ ୧୯୨୦ରେ ଭୟାବହ ଦୁର୍ଭିକ୍ଷର ସମ୍ବାଦ ପାଇ ଗାନ୍ଧୀଜୀ ଦେଶର ବିଶିଷ୍ଟ ସମାଜସେବୀ ଅମୃତଲାଲ ଠକ୍କର (ଠକ୍କର ବାପ୍ପା)ଙ୍କୁ ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଜଣାଇବା ପାଇଁ ପଠାଇଥିଲେ । ଠକ୍କର ବାପା ପୁରୀ ଜିଲ୍ଲାର ୧୯ଟି ଗ୍ରାମ ବୁଲିସାରି ସେତେବେଳେ ଗାନ୍ଧୀଜୀଙ୍କୁ ଜଣାଇଲେ ଯେ ସେ ବୁଲି ସାରିଥିବା ଛ'ଟି ଗ୍ରାମରେ ୪୦ ଜଣ ଅନାହାରରେ ମରିଥିବା ଖବର ପାଉଛନ୍ତି, ଏବେ ମଧ୍ୟ ଲୋକ ମରୁଛନ୍ତି । ଜଣେ ବୁଢ଼ାଲୋକ ତାଙ୍କରି ଆଗରେ ମରିଗଲା । ଯେକୌଣସି ଯାଗାକୁ ଗଲେ ଦେଖିବେ ଲୋକେ କଙ୍କାଳସାର ହୋଇ ଯାଇଛନ୍ତି । ସରକାରଙ୍କ ପକ୍ଷରୁ ଯାହା ସାହାଯ୍ୟ ଦିଆଯାଉଛି, ତାହା ଅତି ଅଳ୍ପ । ଏହା ଜଣାଇ ଶୀଘ୍ର ଟଙ୍କା ପଠାନ୍ତୁ ବୋଲି ଲେଖିଥିଲେ । ସେତେବେଳେ ଗାନ୍ଧୀଜୀ ବିଚଳିତ ହୋଇ ୧୯୨୦ ମଇ ମାସରେ 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ଓଡ଼ିଶାର ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ନିବେଦନ କରି ଲେଖିଥିଲେ । ଯେଉଁଠି ଜଣେ ସୁଦ୍ଧା ଲୋକ ଦୁର୍ଭିକ୍ଷ-ଜନିତ ଅନାହାରରେ ପ୍ରାଣ ହରାଏ, ସେଠି ଅନ୍ୟମାନଙ୍କର ଶାନ୍ତିରେ ଖାଇପିଇ ରହିବାର ଅଧିକାର ନାହିଁ । ଆମେ ଯେଉଁମାନେ ଭାରତୀୟ ବୋଲି ଗର୍ବ ଅନୁଭବ କରୁଛୁ, ଆମର ଧର୍ମତଃ କର୍ତ୍ତବ୍ୟ ହେଉଛି, ଭାରତର କୌଣସି ଅଞ୍ଚଳର ଅଧିବାସୀ ଦୁଃଖ ଭୋଗ କଲେ ଆମେ ନିଜେ ଦୁଃଖ ଭୋଗ କରିବା । ଓଡ଼ିଶାର ଦୁଃଖରେ ବିଚଳିତ ନହେଲେ ଆମେ କିପରି ରହି ପାରିବା ?

ସେତେବେଳେ ଉତ୍କଳମଣି ଗୋପବନ୍ଧୁ ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ସେବାରେ ଆତ୍ମ ନିୟୋଗ କରିଥାନ୍ତି ଏବଂ ଦୁର୍ଭିକ୍ଷର ଭୟାବହ ଚିତ୍ର ବିହାର ଓଡ଼ିଶା ବ୍ୟବସ୍ଥା ପରିଷଦରେ ଦକ୍ଷତାର ସହିତ ଉପସ୍ଥାପିତ କରି ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରିଥିଲେ । ଗୋପବନ୍ଧୁଙ୍କ ଉଦ୍ୟମ ଫଳରେ ବିହାର ଓଡ଼ିଶାର ଲାଟ ଓଡ଼ିଶାର ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳ ବୁଲି ଯାହା ହେବାର କଥା, ସରକାରଙ୍କ ପକ୍ଷରୁ ତାହା ହୋଇନାହିଁ ବୋଲି ମତବ୍ୟକ୍ତ କଲେ ଏବଂ କିଛି ଅଧିକା ସାହାଯ୍ୟ ପାଇଁ ସରକାରଙ୍କ ପକ୍ଷରୁ ବ୍ୟବସ୍ଥା କରାଯାଇଥିଲା ମାତ୍ର ସେ ସାହାଯ୍ୟ ମଧ୍ୟ 'ସମୁଦ୍ରକୁ ଶଙ୍ଖେ ପାଣି' ପରି ହେଲା । ସେଥିପାଇଁ ଠକର ବାପା ଅଧିକ ସାହାଯ୍ୟ ପାଇଁ ନିବେଦନ କରି ଗାନ୍ଧୀଜୀଙ୍କୁ ଲେଖିଥିଲେ । ଏହି ସମୟରେ ଗାଁ ଗାଁ ବୁଲୁଥିଲାବେଳେ ଠକ୍କର ବାପା ଉତ୍କଳମଣି ଗୋପବନ୍ଧୁଙ୍କ ଏକନିଷ୍ଠ ସେବା ସଂଗଠନରେ ଦକ୍ଷତାର ପରିଚୟ ପାଇ ତାହା ଗାନ୍ଧୀଜୀଙ୍କୁ ଜଣାଇଥିଲେ । ଏହିପରି ଭାବରେ ଠକ୍କର ବାପାଙ୍କ ଜରିଆରେ ହିଁ ଗାନ୍ଧୀଜୀ ଗୋପବନ୍ଧୁଙ୍କ ପରିଚୟ ପାଇଥିଲେ । ଏ ସଂପର୍କରେ ପରେ ଗାନ୍ଧୀଜୀ ଲେଖିଥିଲେ ଯେ ସମଗ୍ର ଭାରତରେ ଓଡ଼ିଶା ମୋ ପାଇଁ ଶ୍ରଦ୍ଧାର ଭୂମି । ଭାରତରେ ପଦାର୍ପଣ କରିବା ପରେ ମୁଁ ଓଡ଼ିଶାର ଦାରିଦ୍ର୍ୟ ଓ ଦୁର୍ଭିକ୍ଷ ବିଷୟରେ ଶୁଣିବାକୁ ପାଇଥିଲି । ଠକ୍କର ବାପା ଓଡ଼ିଶାର ଏହି ଅବସ୍ଥା ଦେଖି ଦୁର୍ଭିକ୍ଷ ସାହାଯ୍ୟ ପାଇଁ ବ୍ୟବସ୍ଥା କରିଥିଲେ । ସେ ମଧ୍ୟ ଉପଲବ୍ଧି କରିଥିଲେ ଯେ ମୁଁ ଓଡ଼ିଶାର ସେବା କରିପାରିବ, ତଦ୍ୱାରା ଭାରତର ସେବା କରିବି ।

## ଗାନ୍ଧୀଜୀଙ୍କ ପ୍ରଥମ ଓଡ଼ିଶା ପରିଦର୍ଶନ

୧୯୧୯ ମସିହା ଜାଲିଆନାବାଗ୍ ହତ୍ୟାକାଣ୍ଡ ପରେ ସମଗ୍ର ଦେଶରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅହିଂସ ଅସହଯୋଗ ସଂଗ୍ରାମ ଚଳାଇବା ପାଇଁ ଜାତୀୟ କଂଗ୍ରେସ ଅନୁଷ୍ଠାନ ଯେଉଁ ନିଷ୍ପତ୍ତି ନେଲେ, ୧୯୨୦ ଡିସେମ୍ବର ମାସରେ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ତାହା ଯେତେବେଳେ ଗୃହୀତ ହେଲା, ସେହି ଅଧିବେଶନରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଯୋଗ ଦେଇଥିବା ୪୫ ଜଣ ପ୍ରତିନିଧି ତାହା ପୂର୍ଣ୍ଣ ପ୍ରାଣରେ ସମର୍ଥନ କରି ଓଡ଼ିଶାକୁ ଫେରି ଆସିଥିଲେ । ଆନୁଷ୍ଠାନିକ ଭାବରେ ୧୯୨୧ ମସିହା ଜାନୁଆରୀ ମାସଠାରୁ ଅସହଯୋଗ ସଂଗ୍ରାମ କାର୍ଯ୍ୟକ୍ରମ ଆରମ୍ଭ ହେଲା । ପ୍ରଥମ ଛ ମାସ ମଧ୍ୟରେ କଂଗ୍ରେସ ସଭ୍ୟ ଓ ତିଳକପାଣ୍ଠି ସଂଗ୍ରହ କାର୍ଯ୍ୟକ୍ରମ ସ୍ଥିରିଥିଲା । ଏହି ସମୟରେ ମହାତ୍ମାଗାନ୍ଧୀ ଭାରତର ବିଭିନ୍ନ ଅଞ୍ଚଳ ଗସ୍ତ କରିଥିଲେ । ଗାନ୍ଧୀଜୀ ପାଞ୍ଚଦିନ ଓଡ଼ିଶାପାଇଁ ଦେଇଥିଲେ । ଗାନ୍ଧୀଜୀ ଓଡ଼ିଶା ଆସିବେ ବୋଲି ଉତ୍କଳମଣି ଗୋପବନ୍ଧୁଙ୍କୁ

ତାରବାର୍ତ୍ତା ପଠାଇବା ମାତ୍ରେ ସର୍ବତ୍ର ଓଡ଼ିଆଭାଷୀ ଅଞ୍ଚଳରେ ଉତ୍ସାହ ଖେଳି ଯାଇଥିଲା । ଗାନ୍ଧୀଜୀ ୧୯୨୧ ମାର୍ଚ୍ଚ ୨୩ ତାରିଖ ଦିନ କଟକରେ ପ୍ରଥମେ ପଦାର୍ପଣ କଲେ । ଏହା ଗାନ୍ଧୀଜୀଙ୍କର ପ୍ରଥମ ଓଡ଼ିଶା ପରିଦର୍ଶନ ଏବଂ ସେଦିନ ଦୋଳ ପୂର୍ଣ୍ଣମୀ । କଟକରେ ୭୨ ମଣ୍ଡଳ ସଂକୀର୍ତ୍ତନ ଦଳସହ ୩୦ ହଜାର ନରନାରୀ ଗାନ୍ଧୀଜୀଙ୍କୁ ସ୍ୱାଗତ ଜଣାଇ ଥିଲେ । 'ମହାତ୍ମାଗାନ୍ଧୀକି ଜୟ' ନାଦରେ ସମଗ୍ର କଟକ ସହର ପ୍ରକମ୍ପିତ ହୋଇ ଉଠିଥିଲା । ପରଦିନ ମାର୍ଚ୍ଚ ୨୪ ତାରିଖ ସକାଳେ ସେ କଟକର କଦମରସୁଲଠାରେ ଏବଂ ତା'ପରେ ବିନୋଦ ବିହାରୀ ମନ୍ଦିରରେ ମହିଳାମାନଙ୍କର ଏକ ସଭାରେ ଭାଷଣ ଦେଲେ ଏବଂ ସନ୍ଧ୍ୟାବେଳେ କାଠଯୋଡ଼ି ନଦୀ କୂଳରେ ଏକ ବିରାଟ ଜନସଭାରେ ଭାଷଣ ଦେଇ ତିଳକ ସ୍ୱରାଜ ପାଣ୍ଠିକୁ ଯଥାଶକ୍ତି ଦାନ କରିବା ପାଇଁ ଏବଂ ଅଧିକ ସଂଖ୍ୟାରେ କଂଗ୍ରେସ ସଭ୍ୟ ହେବା ପାଇଁ ନିବେଦନ କରିଥିଲେ । ପରଦିନ ରେଳଯୋଗେ ଭଦ୍ରଖ ଯାଇ ସେଠାରେ ଗୋଟିଏ ଦିନ ରହିଲେ ଏବଂ ସେଠାରୁ ପୁରୀ ଜିଲ୍ଲାର ସତ୍ୟବାଦୀ, ପୁରୀ ଏବଂ ତା ପରେ ବ୍ରହ୍ମପୁର ପରିଦର୍ଶନ କରି ବେଜୱାଡ଼ା ଯାଇଥିଲେ । ଗାନ୍ଧୀଜୀ ସତ୍ୟବାଦୀଠାରେ ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ବନ ବିଦ୍ୟାଳୟ ପରିଦର୍ଶନ କରି ସେଠାରେ ଶିକ୍ଷାଦାନ ପଦ୍ଧତି ଓ ଏହାର ପ୍ରାକୃତିକ ପରିବେଶରେ ମୁଗ୍ଧ ହୋଇଥିଲେ । ଗାନ୍ଧୀଜୀଙ୍କ ଗସ୍ତବେଳେ ଉତ୍କଳମଣି ଗୋପବନ୍ଧୁ ତାଙ୍କ ସଙ୍ଗେ ରହିଥିଲେ ଏବଂ ତାଙ୍କ ଭାଷଣକୁ ଓଡ଼ିଆରେ ଅନୁବାଦ କରି କହୁଥିଲେ ।

ମାର୍ଚ୍ଚ ୨୬ ତାରିଖରେ ସନ୍ଧ୍ୟାବେଳେ ପୁରୀରେ ପଦାର୍ପଣ କଲାବେଳେ ମହାତ୍ମାଗାନ୍ଧୀଙ୍କୁ ୨୦ ହଜାର ଲୋକ ବିପୁଳ ସମ୍ବର୍ଦ୍ଧନା ଜଣାଇ ଥିଲେ । ଗୋପାଳ କୋଠିଠାରେ ଅବସ୍ଥାନ କରି ଗାନ୍ଧୀଜୀ ପ୍ରଥମେ ପୁରୀର ଦୁର୍ଭିକ୍ଷ ସମ୍ବନ୍ଧରେ ସ୍ଥାନୀୟ ନେତାମାନଙ୍କ ସହିତ ଆଲୋଚନା କରିଥିଲେ । ପୂର୍ବରୁ ଠକ୍କର ବାପାଙ୍କୁ ପଠାଇ ଗାନ୍ଧୀଜୀ ପୁରୀଜିଲ୍ଲାର ଦୁର୍ଭିକ୍ଷ ସମ୍ବନ୍ଧରେ ସଂପୂର୍ଣ୍ଣ ବିବରଣୀ ସଂଗ୍ରହ କରି ଦୁର୍ଭିକ୍ଷଗ୍ରସ୍ତ ପୁରୀବାସୀଙ୍କୁ ସାହାଯ୍ୟ କରିବାପାଇଁ ନିବେଦନ କରିବା ଫଳରେ ଦେଶର ବିଭିନ୍ନ ଅଞ୍ଚଳରୁ ଯଥେଷ୍ଟ ସାହାଯ୍ୟ ଆଦି ପହଞ୍ଚିଥିଲା । ସରକାରୀ ସାହାଯ୍ୟ ଏହା ତୁଳନାରେ ଥିଲା ଅତି ସାମାନ୍ୟ । ଗାନ୍ଧୀଜୀ ସେଦିନ ସନ୍ଧ୍ୟାବେଳେ ପୁରୀର ଶରଧାବାଲିଠାରେ ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେଇଥିଲେ । ତାଙ୍କ ପରିଦର୍ଶନର ଶେଷଦିନ ଗାନ୍ଧୀଜୀ ୨୯ ତାରିଖରେ ବ୍ରହ୍ମପୁର ଯାତ୍ରା କରିଥିଲେ ।

ଓଡ଼ିଶା ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପିତ ହେବାପରେ ଗାନ୍ଧୀଜୀ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ବିଷୟରେ ଶୁଣିଥିଲେ । ଗାନ୍ଧୀଜୀଙ୍କ ପ୍ରଦର୍ଶିତ ଗଠନମୂଳକ କାର୍ଯ୍ୟକ୍ରମ– ଦେଶର କୁଟୀର ଶିଳ୍ପର ପୁନରୁତ୍‌ଥାନ ପାଇଁ ମଧୁସୂଦନ ବହୁ ପୂର୍ବରୁ ଉଦ୍ୟମ ଆରମ୍ଭ କରିଥିଲେ । ୧୮୯୭ ମସିହାରେ ମଧୁସୂଦନ କଟକର ତାରକସି କାମ ଓ ଶିଙ୍ଗ କାମର ଶିଳ୍ପୀମାନଙ୍କୁ ନେଇ ତାଙ୍କ ବାସଭବନରେ ଏହି ଶିଳ୍ପର ପୁନରୁଦ୍ଧାର ଓ ଆଧୁନିକୀ-କରଣ ପାଇଁ ଉଦ୍ୟମ କରିଥିଲେ ଓ ନିଜେ ୧୯୦୫ରେ କଟକଠାରେ ଉତ୍କଳ ଟାନେରୀ ସ୍ଥାପିତ କରି ଜୋତାଶିଳ୍ପର ପୁନରୁଦ୍ଧାର କରିଥିଲେ । ବିଚ୍ଛିନ୍ନାଞ୍ଚଳ ଓଡ଼ିଆଭାଷୀ ଅଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆନ୍ଦୋଳନର ନେତୃତ୍ୱ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାର ଏହି ପ୍ରସିଦ୍ଧ କୁଟୀର ଶିଳ୍ପର ପୁନରୁଦ୍ଧାର କାର୍ଯ୍ୟକ୍ରମ ଗାନ୍ଧୀଜୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଗାନ୍ଧୀଜୀ ଉତ୍କଳ ଗୌରବ ମଧୁସୂଦନଙ୍କ ନିମନ୍ତ୍ରଣ କ୍ରମେ ୧୯୨୫ ମସିହା ଅଗଷ୍ଟ ମାସ ୧୯ ତାରିଖରେ ଓଡ଼ିଶା ପରିଦର୍ଶନ କରିଥିଲେ । ଏହା ତାଙ୍କର ଦ୍ୱିତୀୟ ଓଡ଼ିଶା ପରିଦର୍ଶନ । ସେଦିନ ଗାନ୍ଧୀଜୀ ଏକ ବିରାଟ ପଟୁଆରରେ କଟକ ଷ୍ଟେସନରୁ ମଧୁସୂଦନଙ୍କ ବାସଭବନକୁ ଯାଇଥିଲେ । ସେଠାରେ ସେ ଅବସ୍ଥାନ କରି ଅପରାହ୍ନରେ ମଧୁସୂଦନଙ୍କ ଜୋତା କାରଖାନା ପରିଦର୍ଶନ କରିଥିଲେ । ସେଠାରେ ହରିଜନମାନେ ତାଙ୍କୁ ଏକ ଅଭିନନ୍ଦନ ପତ୍ର ପ୍ରଦାନ କରିଥିଲେ । ଏହି ଜୋତା କାରଖାନାର ଅଭିଜ୍ଞ ଅବସ୍ଥା ଅନୁଧ୍ୟାନ କରିବା ପାଇଁ ଗାନ୍ଧୀଜୀ ତାଙ୍କ ସାଙ୍ଗରେ ବିଖ୍ୟାତ ଗାନ୍ଧିବାଦୀ ବୈଜ୍ଞାନିକ ସତୀଶ ଦାସଗୁପ୍ତ ଓ ଅନ୍ୟ କେତେକ କଲିକତା ବ୍ୟବସାୟୀଙ୍କୁ ଆଣିଥାନ୍ତି । ସେତେବେଳକୁ ମଲା ଗୋରୁ ଚମଡ଼ାରେ ଜୋତା ତିଆରି ସେହି କାରଖାନାରେ ହେଉଥିଲା । ସତୀଶ ବାବୁ କଲିକତାରେ ସେହି ପ୍ରଣାଳୀ କରୁଥାନ୍ତି । ୨୦ ତାରିଖ ସକାଳେ କଟକ ଗୀର୍ଜାଠାରେ ଏକ ସଭାରେ ଗାନ୍ଧୀଜୀ ଉଦ୍‌ବୋଧନ ଦେଇଥିଲେ ଏବଂ ମଧୁସୂଦନ ତାଙ୍କ ଭାଷଣକୁ ଓଡ଼ିଆରେ ଅନୁବାଦ କରିଥିଲେ । ଅପରାହ୍ନରେ କଟକ ସ୍ୱରାଜ ଆଶ୍ରମଠାରେ ଅନୁଷ୍ଠିତ ଏକ ସୂତାକଟା ପ୍ରଦର୍ଶନୀରେ ଗାନ୍ଧୀଜୀ ଯୋଗ ଦେଇଥିଲେ । ସେଠାରୁ ସେ କଲିକତା ଯାତ୍ରା କରିଥିଲେ । ସେତେବେଳେ ଉତ୍କଳ ଗୌରବ ମଧୁସୂଦନ ବିହାର-ଓଡ଼ିଶା ମନ୍ତ୍ରୀ ପରିଷଦରୁ ଇସ୍ତଫା ଦେଇ ସାରି ଥିବାରୁ ଓଡ଼ିଶାର ସବୁଶ୍ରେଣୀର ଲୋକଙ୍କ ନିକଟରେ ତାଙ୍କର ସମ୍ମାନ ଅଧିକ ବୃଦ୍ଧି ପାଇଥିଲା ।

## ଓଡ଼ିଶାରେ ଖଦୀ କାମର ପ୍ରସାର ପାଇଁ ଗାନ୍ଧୀଜୀଙ୍କ ଗସ୍ତ

ମୁଖ୍ୟତଃ ଖଦୀ କାମର ପ୍ରସାର ଉଦ୍ଦେଶ୍ୟରେ ହିଁ ଗାନ୍ଧୀଜୀ ୧୯୨୭ ମସିହାରେ ତୃତୀୟଥର ଓଡ଼ିଶା ପରିଦର୍ଶନ କରିଥିଲେ । ଏହି କାର୍ଯ୍ୟରେ ଏକ ମାସ ପର୍ଯ୍ୟନ୍ତ ଓଡ଼ିଶାରେ ଗସ୍ତ କରିବେ ବୋଲି ତାଙ୍କର ଇଚ୍ଛା ଥିଲା ମାତ୍ର ଏହି ଗସ୍ତରେ କିଛିଦିନ ଅସୁସ୍ଥ ହୋଇ ପଡ଼ିଲେ ତଥାପି ସେ ଡ଼ିସେମ୍ବର ୫ ଠାରୁ ୨୧ ତାରିଖ ପର୍ଯ୍ୟନ୍ତ ଗସ୍ତ କରିଥିଲେ । ଏହି ଗସ୍ତ ଭିତରେ ସେ ବ୍ରହ୍ମପୁର, ଛତ୍ରପୁର, ପୁରୁଷୋତ୍ତମପୁର, ବୋଇରାଣୀ, ପୋଲସରା, ଜୋବ୍ରା, ଖଲ୍ଲିକୋଟ, ରମ୍ଭା, ଜଳେଶ୍ୱର, ଭଦ୍ରଖ, ଗୁରିବାଟିଆ ଓ କଟକ ପରିଦର୍ଶନ କରିଥିଲେ । ମୁଖ୍ୟତଃ ଖଦୀ ପ୍ରସାର ପାଇଁ ଗାନ୍ଧୀଜୀ ଆସିଥିଲେ ମଧ୍ୟ ସେତେବେଳର ଲୋକଙ୍କ ଅବସ୍ଥା ଦେଖି ସେ ଲୋକଙ୍କୁ ଖଦୀ ପ୍ରସାର ସଙ୍ଗେ ସଙ୍ଗେ ନିର୍ଭୟତା ଶିକ୍ଷା ଦେଉ ଥିଲେ । ସେତେବେଳକୁ ଗାନ୍ଧୀଜୀ ଗଠନମୂଳକ କାର୍ଯ୍ୟ ଉପରେ ଅଧିକ ଜୋର ଦେଉଥିଲେ । ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ପାଇଁ ଲୋକଙ୍କୁ ପ୍ରସ୍ତୁତ କରିବା ନିମନ୍ତେ କଂଗ୍ରେସ କର୍ମୀଙ୍କ ସକାଶେ ଯେଉଁ ଗଠନମୂଳକ କାର୍ଯ୍ୟକ୍ରମ ପ୍ରଣୟନ କରାଯାଇଥିଲା, ସେଥିରେ ଖଦୀ ପ୍ରସାର ଥିଲା ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସର୍ବଭାରତୀୟ ସ୍ତରରେ ଅଖିଳଭାରତ ସୂତା କଟାଳି ସଂଘ ଗଠିତ ହୋଇଥିଲା । ଏହି ସଂସ୍ଥାର ଓଡ଼ିଶା

ଶାଖା ବିଶିଷ୍ଟ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକଙ୍କ ଦାୟିତ୍ୱରେ ବ୍ରହ୍ମପୁରଠାରେ ସ୍ଥାପିତ ହୋଇଥିଲା । ସେଥିପାଇଁ ଗାନ୍ଧୀଜୀ ପ୍ରଥମ ବ୍ରହ୍ମପୁର ଓ ଗଞ୍ଜାମ ଜିଲ୍ଲାର ଅନ୍ୟାନ୍ୟ ସ୍ଥାନ ପରିଦର୍ଶନ କରିଥିଲେ ।

ଗାନ୍ଧୀଜୀ ଏହି ଗସ୍ତରେ ଆସିବା ପୂର୍ବରୁ 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ଲେଖିଥିଲେ ଯେ ଓଡ଼ିଶା ଆମର ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାର ପ୍ରତୀକ ବୋଲି ମୋର ମନେ ହୁଏ । ଓଡ଼ିଶାର ଉଦ୍ଧାର ହେଲେ ଭାରତର ଉଦ୍ଧାର ହେବ ବୋଲି ମୁଁ ଭାବେ । ଏ ପ୍ରଦେଶଟି ଦେଶର ଦରିଦ୍ରତମ ଅଞ୍ଚଳ ହେବାର କଥା ନୁହେଁ । ଭାରତର ଅନ୍ୟ ଅଞ୍ଚଳମାନଙ୍କଠାରୁ ଓଡ଼ିଶାର ଲୋକେ ନ୍ୟୁନ ନୁହନ୍ତି । ଓଡ଼ିଶାର ଏକ ଉଜ୍ଜ୍ୱଳ ଇତିହାସ ଅଛି । ସେଠାରେ ବିଶାଳ ମନ୍ଦିରମାନ ଅଛି । ସେଠ ଜଗନ୍ନାଥ ଅଛନ୍ତି ଯେ କି ପ୍ରାଣୀଙ୍କ ମଧ୍ୟରେ ପ୍ରଭେଦ ବିଶ୍ୱାସ କରନ୍ତି ନାହିଁ । ମାତ୍ର ଦୁଃଖର କଥା ସେହି ବିଶାଳ ମନ୍ଦିରର ଛାୟାତଳେ ହଜାର ହଜାର ଲୋକ ଭୋକରେ ମରନ୍ତି । ଦରିଦ୍ରତା, ଦୁର୍ଭିକ୍ଷ ଓ ବ୍ୟାଧି ଅନବରତ ସେଠି ଲାଗି ରହିଛି । ଶୂନ୍ୟତା, ନିରାଶା ଓ ନିର୍ଜୀବତା ସେଠାରେ ଯେପରି ଦେଖିଛି ଅନ୍ୟତ୍ର ଦେଖି ନାହିଁ । ଆଉ ଏକ ପ୍ରବନ୍ଧରେ ସେ ଲେଖିଥିଲେ–ଓଡ଼ିଶାର ଗରିବ ଭଉଣୀମାନଙ୍କର ଶାଢୀ ନାହିଁ । ସେମାନେ କନା ପିନ୍ଧନ୍ତି । ସେମାନେ ଲଜ୍ଜ୍ୟାବୋଧ ହରାଇ ନାହାନ୍ତି କିନ୍ତୁ ମୁଁ କହେ ଆମେମାନେ ତାହା ହରାଇଛୁ । ଲୁଗା ପିନ୍ଧି ମଧ୍ୟ ଆମେ ଲଙ୍ଗଳା । ସେମାନେ ଲଙ୍ଗଳା ହୋଇ ମଧ୍ୟ ଲୁଗା ପିନ୍ଧିଛନ୍ତି । ସେଇଥିରେ ଗାନ୍ଧୀଜୀ ପୁଣି କହିଥିଲେ– ଓଡ଼ିଶାରେ ସୂତାକଟା ସହଜରେ ସଂଗଠିତ ହୋଇ ପାରିବ ଓ ହେବା ଉଚିତ କାରଣ ଲୋକଙ୍କୁ କାମ କରିବାକୁ ହେବ । ସମସ୍ତ ଓଡ଼ିଶାବାସୀଙ୍କୁ ବଙ୍ଗଳାର କଳକାରଖାନାକୁ ନେଇ ହେବ ନାହିଁ । ଏହା ସମ୍ଭବ ହେଲେ ମଧ୍ୟ ଅନ୍ୟାୟ ହୁଅନ୍ତା । ଗଞ୍ଜାମ ଓ ପୁରୀ ଜିଲ୍ଲାରେ ଗସ୍ତ କରୁଥିବା ସମୟରେ ବିଭିନ୍ନ ସଭା ଓ କର୍ମୀ ସମାବେଶରେ ଗାନ୍ଧୀଜୀ ଏହିଭଳି ଉପଦେଶ ଦେଇଥିଲେ ।

ବାଣପୁରରୁ ଆସ ବୋଲଗଡ଼ଠାରେ ପହଞ୍ଚିବା ପରେ ଗାନ୍ଧୀଜୀ କ୍ଳାନ୍ତ ହୋଇ ପଡ଼ିଲେ ଏବଂ ବୋଲଗଡ଼ ଡାକ ବଙ୍ଗଳାରେ କିଛି ସମୟ ବିଶ୍ରାମ ନେଇଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ଏଠାରେ ଅବସ୍ଥାନ କରୁଥିବାବେଳେ ଗାନ୍ଧୀଜୀ ଶୁଣିଲେ ଯେ ଲୋକେ ତାଙ୍କୁ ଦେଖିବାକୁ ଆସିବା ବେଳେ ପୁଲିସ କର୍ମଚାରୀମାନେ ସେମାନଙ୍କୁ ଧମକ ଦେଉଛନ୍ତି ଯେ ଗାନ୍ଧୀଜୀଙ୍କୁ ଦେଖିବାକୁ ଗଲେ ଗିରଫ କରାଯିବ । ଏହାଶୁଣି ଗାନ୍ଧୀଜୀ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ ଏବଂ ବୋଲଗଡ଼ଠାରୁ ତାଙ୍କୁ ଯେଉଁ ମାନପତ୍ର ଦିଆଯାଇଥିଲା ତାର ଉତ୍ତରରେ ପୁଲିସଙ୍କ ଧମକରେ ଲୋକେ ଯେପରି ଭୟଭୀତ ହୋଇ ଯାଇଥିଲେ ତାକୁ ଲକ୍ଷ୍ୟ କରି କହିଥିଲେ ଯେ ଭୟ ହଇଜା, ବସନ୍ତ ଓ ମେଲେରିଆ ଠାରୁ ମଧ୍ୟ ଭୟାବହ । କାରଣ ରୋଗ ଏ ଶରୀରକୁ ଦିନା ନଷ୍ଟ କରି ଦିଏ ମାତ୍ର ଭୟ ଆତ୍ମାକୁ ନଷ୍ଟ କରି ଦିଏ ଏବଂ ଭୟଭୀତ ଲୋକ ଭଗବାନଙ୍କ ସ୍ପର୍ଶ ପାଇ ପାରିବ ନାହିଁ । ମୋଠାରୁ ବା ଖଦୀ କାମଠାରୁ ଲୋକଙ୍କୁ ଅଲଗା କରି ରଖିଲେ ସରକାର କିପରି ସନ୍ତୋଷ ଲାଭ କରିବେ ମୁଁ ବୁଝି ପାରୁନାହିଁ । ଲୋକଙ୍କୁ ଲକ୍ଷ୍ୟ କରି ଗାନ୍ଧୀଜୀ କହିଥିଲେ ଯେ ତୁମେ କାହିଁକି ଭୟ କରୁଛ, ଯେକୌଣସି ଅପରାଧ କରି ନାହିଁ ତା'ର କାହାରିକୁ ଭୟ କରିବାର ନାହିଁ । ତୁମେ ଯଦି ଭୟଭୀତ ହେବାକୁ ଅସ୍ୱୀକାର କର ତା ହେଲେ ତୁମକୁ ଭୟ ଦେଖାଇବାକୁ କେହି ନଥିବେ ।

ଗାନ୍ଧୀଜୀ ଡ଼ିସେମ୍ବର ୧୨ ତାରିଖରେ ବୋଲଗଡ଼ଠାରୁ ଯାଇ ସାକ୍ଷୀଗୋପାଳଠାରେ ପହଞ୍ଚିଲେ ଏବଂ ସେଠାରୁ ପୁରୀ ଗଲେ । ପୁରୀଠାରୁ ବଲେଶ୍ୱର ଯାଇ ଦୁଇଦିନ ରହିବା ପରେ ୧୮ ତାରିଖ ଦିନ କଟକରେ ଯାଇ ପହଞ୍ଚିଲେ । କଟକରୁ ସେ ଚମ୍ପାପୁର ଆଶ୍ରମର ଭିତ୍ତି ସ୍ଥାପନ କରିବା ପାଇଁ ଯିବାର କାର୍ଯ୍ୟକ୍ରମ ଥିଲା ମାତ୍ର ଡାକ୍ତରଙ୍କ ପରାମର୍ଶ ଅନୁସାରେ ଗାନ୍ଧୀଜୀ ଯାଇ ପାରିଲେ ନାହିଁ । ଭଉଣୀ ମିରାବେନ ଯାଇ ଚମ୍ପାପୁର ଆଶ୍ରମର ଭିତ୍ତି ସ୍ଥାପନ କଲେ ଏବଂ ସେଠାରେ ଗାନ୍ଧୀଜୀ ବାର୍ତ୍ତା ପାଠ କରାଯାଇଥିଲା । ଏହି ଗସ୍ତର ଶେଷ ଦିନ ଡ଼ିସେମ୍ବର ୨୧ ତାରିଖରେ ଗାନ୍ଧୀଜୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ବାସଭବନରେ ତାଙ୍କ ପ୍ରଣୀତ ଭାଷାକୋଷ ପ୍ରଣୟନ କାର୍ଯ୍ୟ ଦେଖିଥିଲେ ।

## ଗାନ୍ଧୀଜୀଙ୍କ ସମ୍ବଲପୁର ପରିଦର୍ଶନ

ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପରେ ଗାନ୍ଧୀଜୀ ତିନିଥର ଓଡ଼ିଶା ପରିଦର୍ଶନ କରି ସାରିଥିଲେ ମଧ୍ୟ– ସମ୍ବଲପୁର ପରିଦର୍ଶନ କରି ନଥିଲେ, ସେଥିପାଇଁ ସମ୍ବଲପୁର ଅଧିବାସୀ ଦୁଃଖିତ ହୋଇଥିଲେ । ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପରେ ଓଡ଼ିଶାରେ ପ୍ରଥମେ ସମ୍ବଲପୁର ସ୍କୁଲ ଛାତ୍ରମାନେ ହରତାଳ ପାଳନ କରିଥିଲେ । ଗାନ୍ଧୀଜୀ ଏହା ଶୁଣି ୧୯୨୮ ମସିହା ଡିସେମ୍ବର ୨୨ ତାରିଖରେ ବମ୍ବେରୁ କଲିକତା ଯିବା ବାଟରେ ଝାରସୁଗୁଡ଼ାରେ ଟ୍ରେନରୁ ଓହ୍ଲାଇ ସମ୍ବଲପୁରରେ ୨୨ ତାରିଖରେ ରହିଥିଲେ । ସକାଳେ ମହାନଦୀ ବାଲିରେ ଅନୁଷ୍ଠିତ ସଭାରେ ଗାନ୍ଧୀଜୀ ଉଦ୍‌ବୋଧନ ଦେଇଥିଲେ ଓ ସନ୍ଧ୍ୟାରେ ମହିଳାମାନଙ୍କର ଏକ ବିରାଟ ସଭାରେ ଭାଷଣ ଦେଇଥିଲେ । ଭାଷଣ ପ୍ରସଙ୍ଗରେ ଗାନ୍ଧୀଜୀ ସମ୍ବଲପୁରକୁ ଏକ ଶକ୍ତିଶାଳୀ ଖଦୀ-କେନ୍ଦ୍ର କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସେ କହି-ଥିଲେ ଯେ ଦେଶବନ୍ଧୁ, ଲାଲଜୀ ଓ ଗୋପବନ୍ଧୁ ଏହି ତିନିଜଣ ମହାନ ନେତାଙ୍କ ନିକଟରେ ଓଡ଼ିଶାବାସୀ କୃତଜ୍ଞ । ସେମାନଙ୍କ ସ୍ମୃତିରକ୍ଷା କରିବାକୁ ହେଲେ ମନ ଦେଇ ଓଡ଼ିଶାବାସୀଙ୍କୁ ଖଦୀ-କାମ କରିବାକୁ ହେବ । ତାହେଲେ ପ୍ରକୃତିର ଧ୍ୱଂସ ଓ ମନୁଷ୍ୟର ଶୋଷଣରୁ ଉତ୍କଳକୁ ରକ୍ଷା କରି ହେବ ।

## ଓଡ଼ିଶାରେ ଗାନ୍ଧୀଜୀଙ୍କ ଐତିହାସିକ ହରିଜନ ପଦଯାତ୍ରା ।

୧୯୩୦ ମସିହାରେ ଗାନ୍ଧୀଜୀଙ୍କ ନେତୃତ୍ୱରେ ଦାଣ୍ଡିଠାରେ ଓ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯେଉଁ ଲବଣ ସତ୍ୟାଗ୍ରହ ହେଲା, ସେଥିରେ ଓଡ଼ିଶାରେ ବାଲେଶ୍ୱରର ଇଞ୍ଚୁଡ଼ି ଓ ଅନ୍ୟତ୍ର ସତ୍ୟାଗ୍ରହ ହୋଇଥିଲା । ଓଡ଼ିଶା ଏହି ସତ୍ୟାଗ୍ରହରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଏହାପରେ ଗାନ୍ଧୀଜୀ ସମଗ୍ର ଦେଶରେ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ହରିଜନ ଆନ୍ଦୋଳନରେ ମନୋ-ନିବେଶ କଲେ । ନିଖିଳ ଭାରତ ହରିଜନ ସେବକ ସଂଘର ଶାଖା ଗଠିତ ହୋଇ ଓଡ଼ିଶାରେ ଶ୍ରୀମତୀ ରମାଦେବୀଙ୍କ ନେତୃତ୍ୱରେ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟ ଚାଲିଥିଲା । ଶେଷରେ ମହାତ୍ମାଗାନ୍ଧୀ ଗାଁଗହଳରେ ବୁଲି ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ ଚଳେଇବା ପାଇଁ ସ୍ଥିର କଲେ ଏବଂ ଏହି ଅଭିଯାନ ଓଡ଼ିଶାରୁ

ଆରମ୍ଭ କରିବା ପାଇଁ ନିଷ୍ପତ୍ତି କରିଥିଲେ । ଏପରି ନିଷ୍ପତ୍ତି ସେ କାହିଁକି କଲେ ତା'ର କାରଣ ଦର୍ଶାଇ ପରେ ଏକ ଭାଷଣ ପ୍ରସଙ୍ଗରେ ସେ କହିଥିଲେ–ସମଗ୍ର ଭାରତରେ ଓଡ଼ିଶା ମୋର ଶ୍ରଦ୍ଧାର ଭୂମି । ମୁଁ ଭାରତରେ ପଦାର୍ପଣ କରିବା ପରେ ଓଡ଼ିଶାର ଦାରିଦ୍ର୍ୟ ଓ ଦୁର୍ଭିକ୍ଷ କଥା ମୁଁ ଶୁଣିଥିଲି । ଠକ୍କର ବାପା ଏ ସଂପର୍କରେ ଆସି ସେଠାରେ ଦୁର୍ଭିକ୍ଷଗ୍ରସ୍ତ ଲୋକଙ୍କୁ ସାହାଯ୍ୟ ଦେବା କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ସେ ଉପଲବ୍ଧି କରିଥିଲେ ଯେ ମୁଁ ଯଦି କୌଣସି ମତେ ଓଡ଼ିଶାର ସେବା କରି ପାରିବ ତା'ହେଲେ ତଦ୍ଦ୍ୱାରା ହିଁ ଭାରତର ସେବା କରିବି । ପରେ ଓଡ଼ିଶା ମୋ ପାଇଁ ଏକ ତୀର୍ଥ କ୍ଷେତ୍ରରେ ପରିଣତ ହେଲା– ସେଠାରେ ଜଗନ୍ନାଥଙ୍କ ମନ୍ଦିର ରହିଛି ବୋଲି ଏହା ମୋ ପାଇଁ ତୀର୍ଥକ୍ଷେତ୍ର ହେଲା ତା' ନୁହେଁ, ଏହି ମନ୍ଦିର ହରିଜନଙ୍କ ପାଇଁ ଖୋଲା ନୁହେଁ । ତେଣୁ ମୋ ପାଇଁ ମଧ୍ୟ ଖୋଲା ନୁହେଁ । ଅସ୍ପୃଶ୍ୟତା ନିବାରଣ ପାଇଁ ସମଗ୍ର ଦେଶ ଭ୍ରମଣ କରିବା ପାଇଁ ଏଠାରେ ଏକ ଅଭିନବ ଉପାୟ ଚିନ୍ତା କରିଥିଲି । ଶୁଣିଥିଲି ଯେ ତଥାକଥିତ ସନାତନିମାନେ ମୋର ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକୁ ଭଣ୍ଡୁର କରିବା ପାଇଁ ଉଦ୍ୟମ କରିବେ । ଯଦି ସେମାନେ ତାହା କରିବା ପାଇଁ ଚିନ୍ତା କରୁଛନ୍ତି ତାହାହେଲେ ମୁଁ ଭାବିଛି ଯେ ମୁଁ ରେଳ ବା ମଟର ଗାଡ଼ିରେ ନ ଯାଇ ଚାଲିଚାଲି କରି ଗାଁ-ଗହଳ ଭିତରେ ଯାଇ ସେମାନଙ୍କ କାର୍ଯ୍ୟକୁ ସହଜ କରିଦେବି । ତୀର୍ଥଯାତ୍ରୀମାନେ ଟ୍ରେନ ବା ମଟର ଗାଡ଼ିରେ ଯାଆନ୍ତି ନାହିଁ । ସେମାନେ ଭଗବାନଙ୍କ ନାମ ଡ଼ାକି ଡ଼ାକି ଚାଲି ଯାଆନ୍ତି । ତେଣୁ ହରିଜନ ଯାତ୍ରାର ଅବଶିଷ୍ଟ କାର୍ଯ୍ୟକ୍ରମ ମୁଁ ଚାଲି ଚାଲି କରିବାକୁ ସ୍ଥିର କଲି ।

ଗାନ୍ଧୀଜୀଙ୍କର ଏହି ଐତିହାସିକ ପଦଯାତ୍ରା ୧୯୩୪ ମଇ ମାସ ୯ ତାରିଖ ଠାରୁ ପୁରୀରୁ ଆରମ୍ଭ ହୋଇଥିଲେ ମଧ୍ୟ ତାଙ୍କର ଏହି ଓଡ଼ିଶା ପରିଦର୍ଶନ ମଇମାସ ୫ ତାରିଖଠାରୁ ଆରମ୍ଭ ହୋଇଥିଲା । ଏହା ଥିଲା ତାଙ୍କର ପଞ୍ଚମଥର ଓଡ଼ିଶା ପରିଦର୍ଶନ । ଗାନ୍ଧୀଜୀ ୫ ତାରିଖରେ ଝାରସୁଗୁଡ଼ାଠାରେ ପହଞ୍ଚି ଝାରସୁଗୁଡ଼ା, ସମ୍ବଲପୁର, ଅନୁଗୁଳଠାରେ ସାଧାରଣ ସଭାରେ ଭାଷଣ ଦେଇ କଟକ ଦେଇ ପୁରୀରେ ପହଞ୍ଚିଲେ । ସର୍ବତ୍ର ବିରାଟ ଜନତା ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ଏବଂ ହରିଜନ ସେବା ପାଇଁ ଦାନ କରିଥିଲେ । ପୁରୀଠାରୁ ଗାନ୍ଧୀଜୀ ସବଳ-ବଳେ ୮ ଦିନ ବ୍ୟାପୀ ଏହି ପବିତ୍ର ଯାତ୍ରାରେ ୫୪ ମାଇଲ ରାସ୍ତା ପଦଯାତ୍ରା କରି କଟକ ପର୍ଯ୍ୟନ୍ତ ଯାଇଥିଲେ । ଏହି ପଦ ଯାତ୍ରାରେ ସେ ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳ, କାଦୁଆ ଆଶ୍ରମ, ବୀର ପୁରୁଷୋତ୍ତମପୁର, ବାଣମୁକୁନ୍ଦ ପୁର, ବାଲିଅନ୍ତା, ତେରେଙ୍ଗାପେଣ୍ଠ, କାଜିପାଟଣା, ଏବଂ କଟକଠାରେ ଅବସ୍ଥାନ କରି ଉଦ୍‌ବୋଧନ ଦେଇଥିଲେ । ତା ପରେ କଟକଠାରୁ ପାଟନାଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ଯୋଗ ଦେବା ପାଇଁ ଯାଇଥିଲେ ଏବଂ ପାଟନା-ଠାରୁ ଫେରି ପୁଣି କଟକ ଜିଲ୍ଲାର ବୈରୀଠାରୁ ପଦଯାତ୍ରା ଆରମ୍ଭ କରି ଚଂପାପୁର, ଭେଡ଼ା, ଲେଖନପୁର, ବହୁରୂପ, ପାଟପୁର, ନିଶ୍ଚିନ୍ତକୋଇଲି, କାକଟିଆ, ସାଲର, କେନ୍ଦ୍ରାପଡ଼ା, ବରିମୂଳ, ଇନ୍ଦୁପୁର, ଅଙ୍ଗେଇଛିପୁର, ପୁରୁଷୋତ୍ତମପୁର, କବିରପୁର, ବୁଢ଼ି-ଘାଟ ଓ ଯାଜପୁର ଓ ଯାଜପୁରରୁ ବାଲେଶ୍ୱର ଜିଲ୍ଲାର ଭଣ୍ଡାରୀ-ପୋଖରୀ, ତୋଡ଼ଙ୍ଗା ଓ କବିରପୁର ଓ ଉଦ୍‌ଖ ଠାରେ ଅବସ୍ଥାନ କରି ଲୋକଙ୍କୁ ଉଦ୍‌ବୋଧନ ଦେଇଥିଲେ । ମଇମାସ ୨୧ ଠାରୁ ଜୁନ୍ ୭ ତାରିଖ ପର୍ଯ୍ୟନ୍ତ ଓଡ଼ିଶାରେ ଏହି ପଦଯା... ଗାନ୍ଧୀଜୀ ଅସ୍ପୃଶ୍ୟତା ସମସ୍ୟା ପ୍ରତି ସମଗ୍ର ଦେଶବାସୀ... ଆକର୍ଷଣ କରିଥିଲେ । ଏହି ପଦଯାତ୍ରା ବେଳେ ଠକ୍କର... ଶ୍ରୀମତୀ ମୀରା ବେନ୍, ଜଣେ ଜର୍ମାନୀ ଅଧିବାସୀ ଦୁ... ଓଡ଼ିଶାରୁ ଗୋପବନ୍ଧୁ ଚୌଧୁରୀ, ରାଜକୃଷ୍ଣ ବୋଷ, ... ରମାଦେବୀ ଓ ଅନ୍ୟାନ୍ୟ ବହୁ କର୍ମୀ ଏବଂ ସ୍ଥାନୀୟ ଗ୍ରାମ... ମାନେ ଯାଉଥିଲେ । ଗାନ୍ଧୀଜୀ ଗ୍ରାମକୁ ଯାଇ ସେ... ପହଞ୍ଚିବା ପରେ ଶ୍ରୀମତୀ ରମାଦେବୀଙ୍କ ନେତୃତ୍ୱରେ ... କର୍ମୀ ତଥା ଅନ୍ୟ କର୍ମୀମାନେ ଗାଁ ଭିତରକୁ ଯାଇ ହରିଜ... ସଫା କରିବା ସଙ୍ଗେ ସଙ୍ଗେ ସବର୍ଣ୍ଣମାନଙ୍କୁ ଅସ୍ପୃଶ୍ୟତା ଦୂରୀ... ବିଷୟରେ ବୁଝାଉ ଥିଲେ । ଗାନ୍ଧୀଜୀ ତାଙ୍କ ଗହଣି ... ଅନୁଷ୍ଠିତ ସଭାରେ ଉଦ୍‌ବୋଧନ ଦେଇ କହିଥିଲେ ଯେ ହିନ୍ଦୁ ଶା... ଅସ୍ପୃଶ୍ୟତାର ସ୍ଥାନ ନାହିଁ । ଧର୍ମ ଶାସ୍ତ୍ରରେ କାହାରିକୁ ଅ... ବୋଲି କୁହାଯାଇ ନାହିଁ । ଆମେ ଯଦି ଅସ୍ପୃଶ୍ୟତା ଅଭିଶ... ପରିହାର ନ କରୁ ଏବଂ ଯେଉଁ ଅପରାଧ କରିଛୁ ସେଥି... ପ୍ରାୟଶ୍ଚିତ ନ କରୁ ତା' ହେଲେ ହିନ୍ଦୁଧର୍ମ ଲୋପ ପାଇ... ହିନ୍ଦୁ ଧର୍ମ ବର୍ତ୍ତମାନ ବିପନ୍ନ ତେଣୁ ମୁଁ ସ୍ଥିର ହୋଇ ରହି ପ... ନାହିଁ । ଅସ୍ପୃଶ୍ୟତା ଲୋପ ନ ପାଇଲେ ଦେଶର ସମସ୍ୟା ସମା... ହୋଇ ପାରିବ ନାହିଁ । ହରିଜନମାନଙ୍କୁ ସବର୍ଣ୍ଣଙ୍କ ... ସମାନ ଅଧିକାର ଦେବାକୁ ହେବ । ଏହି ପଦଯାତ୍ରା ଭି... ୧୯୩୪ ଏପ୍ରିଲ ମାସ ୧୪ ତାରିଖରେ ବାଲିଯାତ୍ରା ନିକଟ... ଏକ ଗ୍ରାମରେ କୁଞ୍ଜ ବିହାରୀ ମନ୍ଦିରକୁ ହରିଜନଙ୍କ ପ୍ରବେଶ ... ଗାନ୍ଧୀଜୀ ଖୋଲି ଦେଇଥିଲେ ଏବଂ ସର୍ବତ୍ର ହରିଜନ ସେ... ପାଇଁ ଦାନ ଗ୍ରହଣ କରିଥିଲେ ।

## ବେରବୋଇଠାରେ ଗାନ୍ଧୀ ସେବା ସଙ୍ଘ ଅଧିବେଶନରେ ଗାନ୍ଧୀଜୀଙ୍କ ଯୋଗଦାନ

୧୯୩୮ ମସିହା ମାର୍ଚ୍ଚ ମାସ ୨୫ ତାରିଖରେ ପୁରୀ ଜିଲ୍ଲା... ଡ଼େଲାଙ୍ଗ ଅନ୍ତର୍ଗତ ବେରବୋଇଠାରେ ଅନୁଷ୍ଠିତ ଗାନ୍ଧୀ ସେ... ସଂଘର ଚତୁର୍ଥ ବୈଠକରେ ଯୋଗ ଦେବା ପାଇଁ ମହାତ୍ମା ଗାନ୍ଧୀ... ଓଡ଼ିଶା ଆସିଥିଲେ ଏବଂ ମାର୍ଚ୍ଚ ମାସ ୩୧ ତାରିଖ ପର୍ଯ୍ୟନ୍ତ ଏଠା... ରହିଥିଲେ । ଏହା ଗାନ୍ଧୀଜୀଙ୍କର ଷଷ୍ଠ ଓ ଶେଷ ଓଡ଼ିଶା ପରିଦର୍ଶ... ବୋଲି କୁହାଯାଇପାରେ । ଆଉଥରେ ୧୯୪୬ ଜାନୁଆରୀ ୨... ତାରିଖରେ ଗାନ୍ଧୀଜୀ କଲିକତାରୁ ମାନ୍ଦ୍ରାଜ ଯିବା ବାଟରେ ଓଡ଼ିଶ... ଦେଇ ଯାଇଥିଲେ । ବେରବୋଇଠାରେ ଗାନ୍ଧୀସେବା ସଂ... ଅଧିବେଶନ ସହିତ ଯେଉଁ ପ୍ରଦର୍ଶନୀର ଆୟୋଜନ କରାଯାଇଥି... ତାହା ଉଦ୍‌ଘାଟନ କରି ଗାନ୍ଧୀଜୀ କହିଥିଲେ ଯେ କର୍ମୀମାନେ ... ଏଠାରେ କେବଳ ଓଡ଼ିଶାର କଳା ଓ ଶିଳ୍ପ ପ୍ରଦର୍ଶନ କରିଥିବା ... ଏକ ବିଶେଷତ୍ୱ । ଅନ୍ୟାନ୍ୟ ନିଖିଳ ଭାରତ ପ୍ରଦର୍ଶନୀରେ ... ଏହା ଦେଖିବାକୁ ମିଳେନାହିଁ । ଏଠାରେ ମହୁମାଛି ପାଳନ, ... କାଠକାମ, ପିତଳ କାମ, କଂସାକାମ, ମାଟିକାମରେ ଓଡ଼ିଆଙ୍କ ... କଳା କୌଶଳର ନିପୁଣତା ଦେଖିବାକୁ ମିଳୁଛି । ହାତ ତିଆରି ... କାଗଜ, ଜୋତା ତିଆରି ଓ ସ୍ୱାବଲମ୍ବୀ ଖଦୀ କେନ୍ଦ୍ରମାନ ସ୍ଥାପନ ... କରାଯାଇଛି । ଓଡ଼ିଶାର ଯେଉଁସବୁ ପାରଂପରିକ ହସ୍ତ ଶିଳ୍ପ ... ଏହି ମଧ୍ୟରେ ପୁନରୁଦ୍ଧାର କରାଯାଇଛି ତାହାହିଁ ଏଠାରେ ପ୍ରଦର୍ଶି... ହୋଇଥିବା ଏହାର ବିଶେଷତ୍ୱ । ଅହିଂସାଶିଆ ଅଭ୍ୟାସ, ଆତ୍ମ...

ଓ ଅନ୍ଧ ବିଶ୍ୱାସ ଯୋଗୁଁ ଓଡ଼ିଶା ଏକ ଦରିଦ୍ର ଅଞ୍ଚଳ ରୂପେ ପରିଚିତ । ଏହି ପ୍ରଦର୍ଶନୀରୁ ମୁଁ ଆଶାନ୍ୱିତ ହେଉଛି ଯେ ଓଡ଼ିଶାବାସୀ ଏ ସମସ୍ତ ଦୋଷରୁ ମୁକ୍ତ ହୋଇ ପାରିବେ ଏବଂ ଓଡ଼ିଶା ପୁଣି ଏକ ସୁଖୀ ଓ ସଂପଦଶାଳୀ ରାଜ୍ୟରେ ପରିଣତ ହେବ । ଉତ୍କଳ ଗୌରବ ମଧୁସୂଦନଙ୍କ ଉକ୍ତିରୁ ଉଦ୍ଧାର କରି ଗାନ୍ଧୀଜୀ କହିଥିଲେ ଯେ ମନୁଷ୍ୟ ଓ ପଶୁ ଭିତରେ ପ୍ରଭେଦ ହେଲା ଯେ ମନୁଷ୍ୟର ହାତ ସହିତ ଆଙ୍ଗୁଠି ରହିଛି । ମନୁଷ୍ୟ ତାର ଆଙ୍ଗୁଠିକୁ ବୁଦ୍ଧି ଓ ନିପୁଣତା ସହ ଉପଯୋଗ କରି ପାରିବ । ତେଣୁ କେବଳ କୃଷି ଉପରେ ନିର୍ଭର କଲେ ମନୁଷ୍ୟ ଚଳି ପାରିବ ନାହିଁ । କୃଷି ସହିତ ସେ ତାର ଆଙ୍ଗୁଠି ବ୍ୟବହାରକରି ତାର ଆୟ ବୃଦ୍ଧି କରି ପାରିବ । ତେଣୁ ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ହସ୍ତ ଶିଳ୍ପ ବାଛି ନେଇ ଓଡ଼ିଶାର ଦାରିଦ୍ର୍ୟକୁ ଲୋପ କରନ୍ତୁ ।

୧୧୩ ବାପୁଜୀ ନଗର,
ଭୁବନେଶ୍ୱର ।



ଜାତୀୟ ପୁରସ୍କାର ପ୍ରାପ୍ତ ଶିକ୍ଷକ ମାନଙ୍କୁ
ପ୍ରଧାନମନ୍ତ୍ରୀଙ୍କ ଉଦ୍‌ବୋଧନ .......

ଓଡ଼ିଶା ସରକାରଙ୍କ

# ଫଳ ସଂରକ୍ଷଣ ସଂସ୍ଥା

## ଆପଣଙ୍କ ସେବାରେ ପ୍ରସ୍ତୁତ କରୁଛନ୍ତି

ସପୁରୀ, କମଳା, ଲେମ୍ବୁ, ଆମ୍ବ, ପିଜୁଳି, ବିଲାତିବାଇଗଣ,
ଲଙ୍କା ପ୍ରଭୃତି ଫଳ ଓ ପନିପରିବାମାନଙ୍କରୁ

ସୁଖପାନୀୟ ସ୍କ୍ୱାସ୍, ଜେଲି,
ଜାମ୍, ଆଚାର, ସସ୍ ଓ
ଆହୁରି ଅନେକ କିସମର
ସୁସ୍ୱାଦୁ ଫଳଜାତ ଦ୍ରବ୍ୟ

ବିଶେଷ ଅବଗତି:—

ସାରା ଓଡ଼ିଶାରେ ଏହି
ଫଳଜାତ ଦ୍ରବ୍ୟର ବିକ୍ରୟ
ନିମନ୍ତେ ବିକ୍ରେତା ଆବଶ୍ୟକ ।

ସବିଶେଷ ବିବରଣୀ ନିମନ୍ତେ ଯୋଗାଯୋଗ କରନ୍ତୁ ।

ଉପ କୃଷି ନିର୍ଦ୍ଦେଶକ
(ଫଳ ସଂରକ୍ଷଣ)
ଓଡ଼ିଶା, ଭୁବନେଶ୍ୱର-୯
(ଓ. ଆର୍. ଟି. ସି. ବସ୍‌ଷ୍ଟାଣ୍ଡ ନିକଟରେ)
ଫୋନ୍—୫୦୬୯୩

OGP—MP-VI (I. & P. R.) 39—6,000—19-11-1985

Vol. XLII No. 3 UTKAL PRASANGA Regd. No. O-05/8
Licence No. C. R. N. P. 5—Licensed to post without Pre-Payment



ହରିଜନ ପାଣ୍ଠି ପାଇଁ ଚନ୍ଦା ସଂଗ୍ରହ,

PRINTED AT ORISSA GOVERNMENT PRESS, CUTTACK-10

